# ମହାକବି ଜୟଦେବ ଓ ଗୀତଗୋବିନ୍ଦ

ଡକ୍ଟର ସତ୍ୟନାରାୟଣ ରାଜଗୁରୁ



ଆଶା ପୁସ୍ତକାଳୟ

# ମହାକବି ଜୟଦେବ
# ଓ
# ଗୀତଗୋବିନ୍ଦ

ଡଃ ସତ୍ୟନାରାୟଣ ରାଜଗୁରୁ



# ମହାକବି ଜୟଦେବ ଓ ଗୀତଗୋବିନ୍ଦ

ଡଃ ସତ୍ୟନାରାୟଣ ରାଜଗୁରୁ

ପ୍ରକାଶକ :
ଶ୍ରୀ ବଳଭଦ୍ର ରଥ
ଆଶା ପୁସ୍ତକାଳୟ
ବାରକସ୍, ବ୍ରହ୍ମପୁର-୭୬୦୦୦୧
ପ୍ରଥମ ପ୍ରକାଶ ୧୯୯୫
ପ୍ରଚ୍ଛଦ :
ଶଶିକାନ୍ତ ରାଉତ
ମୁଦ୍ରଣ :
ସନ୍ତୋଷ ପ୍ରିଣ୍ଟର୍ସ, ବ୍ରହ୍ମପୁର-୯
ମୂଲ୍ୟ :
ସାଧା : ଟ ୪୦-୦୦
ବନ୍ଧାଇ : ଟ ୪୫-୦୦

# MAHAKABI JAYADEB O GEETAGOVINDA

**Dr. Satyanarayan Rajguru**

Publisher :
**Sri Balabhadra Rath**
**Asha Pustakalaya**
Barracks, Berhampur-760001
1st Edition-1995
Artist :
**Sashikanta Rout**
Printers :
**Santosh Printers**, Berhampur-9
Price :
Popular : Rs **40-00**
Deluxe : Rs **45-00**

ISBN 81-86189-05-X

# ମୁଖବନ୍ଧ

ଭାରତ ବର୍ଷର ମହାକବି ଜୟଦେବଙ୍କ ରଚିତ ଅପୂର୍ବ ଭକ୍ତିମୂଳକ ସଂସ୍କୃତ କାବ୍ୟ "ଗୀତଗୋବିନ୍ଦ" କେବଳ ଏ ଦେଶର ନୁହେଁ, ପୃଥିବୀର ବିଭିନ୍ନ ଭାଷାରେ ଅନୁବାଦିତ ହୋଇ ଯଥେଷ୍ଟ ଆଦର ଲାଭ କରିଛି । ସେଥିର ସାବଲୀଳ ରାଧାକୃଷ୍ଣଙ୍କ କେଳି ପ୍ରସଙ୍ଗ ଗାନ ମାଧ୍ୟମରେ ସୁଲଳିତ ସଂସ୍କୃତ ଭାଷାରେ ରଚିତ ହୋଇ ଥିବା, ସେ ଭାଷା ଜାଣି ନଥିବା ଲୋକଙ୍କୁ ମୁଗ୍ଧ କରି ଦେଉଥିବା ଜଣାଯାଏ । ଜର୍ମାନୀର ଜଣେ ପ୍ରସିଦ୍ଧ ପଣ୍ଡିତ ଡ଼: ମୌରିସ୍ ଭିଣ୍ଟରନିଜ୍ (Dr. Maurice Winternitz) ଲେଖିଛନ୍ତି;

"It is true that Jayadeva belongs to the greatest poetical genius of India. It is, however, astonishing that he was able to combine so much passion and sentiment of love, so much alliteration in language, that often resounds as pure music in our ears, with such an ornate and yet artificial a form. It is no wonder that in India the poem enjoys unusual popularity and has always found admirers even outside India ❊ "

ଅର୍ଥାତ୍ 'ଏହା ସତ୍ୟ ଯେ, ଜୟଦେବ ଭାରତରେ ଶ୍ରେଷ୍ଠତମ ପ୍ରତିଭାସମ୍ପନ୍ନ କବିରୂପେ ପରିଚିତ ହୁଅନ୍ତି ଯଦିଓ ଏହା ଏକ ଆଶ୍ଚର୍ଯ୍ୟର ବିଷୟ ଯେ, ଅତ୍ୟଧିକ ଅନୁକମ୍ପା ଓ ପ୍ରେମଜନିତ ଭାବ ବିନିମୟରେ ସେ ଯେଉଁ ସୁଲଳିତ-ଯମକ ପୂର୍ଣ୍ଣ-ସୁକୋମଳ ଭାଷା ପ୍ରକାଶ କରିବାକୁ ସମର୍ଥ ହୋଇଛନ୍ତି, ତାହା ଆମମାନଙ୍କ କର୍ଣ୍ଣରେ ବିଶୁଦ୍ଧ ସଙ୍ଗୀତ ପରି ଧ୍ୱନିତ ହୁଏ; ଏବଂ କୃତ୍ରିମ ହୋଇ ମଧ୍ୟ ଅପୂର୍ବ ଆଲଙ୍କାରିକ ଶବ୍ଦାବଳୀ ସମାବେଶରେ ପୂର୍ଣ୍ଣତା ଲାଭ କରେ । ବାସ୍ତବରେ ସେହି ସଙ୍ଗୀତ ଜନସାଧାରଣଙ୍କ ମନରେ ଅପୂର୍ବ ଆନନ୍ଦ ସୃଷ୍ଟି କରୁଛି, ଏବଂ ଏହା ଭାରତ ବାହାରେ, ବିଦେଶରେ ମଧ୍ୟ ତାହା ପ୍ରଶଂସିତ ହେଉଛି ।

---

❊ M. Winternitz, His. Ind. Lit., Vol. III, P. 147

ଜୟଦେବଙ୍କ ପରି ଜଣେ ମହାକବି ଭାରତର କେଉଁ ଅଞ୍ଚଳରେ ଜନ୍ମି ଥିଲେ ଏବଂ ତାଙ୍କ କର୍ମକ୍ଷେତ୍ର କେଉଁ ପୁଣ୍ୟ ଭୂମିରେ ଥିଲା, ସେ ବିଷୟରେ ଅନୁଧ୍ୟାନ କରିବାକୁ ଯାଇ ଅନେକ ଭାରତୀୟ ପଣ୍ଡିତ ଓ ଗବେଷକମାନେ ଏ ସମ୍ବନ୍ଧରେ ଭିନ୍ନ ଭିନ୍ନ ମତ ପ୍ରକାଶ କରିଥିବାରୁ, ମହାକବିଙ୍କ ଜନ୍ମଭୂମି ଓ କର୍ମକ୍ଷେତ୍ରର ସଠିକ୍ ବିବରଣୀ ଏପର୍ଯ୍ୟନ୍ତ ସ୍ଥିର ହୋଇପାରି ନାହିଁ ।

ଭାରତର ବହୁ ପ୍ରସିଦ୍ଧ କବିଙ୍କ ରଚିତ ସଂସ୍କୃତ କାବ୍ୟ, ନାଟକ ପ୍ରଭୃତି ଗ୍ରନ୍ଥମାନଙ୍କରେ ଏବଂ ପୁରାଣମାନଙ୍କରେ ମଧ୍ୟ ପରବର୍ତ୍ତୀକାଳର କବିମାନେ ଯେପରି ନିଜେ ନିଜେ ଲେଖିଥିବା କେତେ ଶ୍ଳୋକ ତଥା ଚରିତ୍ରସମୂହ ପ୍ରକ୍ଷିପ୍ତ କରିଥାନ୍ତି, ସେପରି କବି ଜୟଦେବଙ୍କ 'ଗୀତଗୋବିନ୍ଦ' କାବ୍ୟରେ ଖ୍ରୀ ୧୨ ଶତାବ୍ଦୀର ପରବର୍ତ୍ତୀକାଳରେ କେତେଗୁଡ଼ିଏ ଶ୍ଳୋକ ପ୍ରକ୍ଷିପ୍ତ ହୋଇଥିବାରୁ କବିଙ୍କ ଜୀବନୀ ଓ ତାଙ୍କ କର୍ମକ୍ଷେତ୍ର ସମ୍ପର୍କରେ ବହୁ ତଥ୍ୟ ଅଦ୍ୟାପି ଅଜ୍ଞାତ ହୋଇରହିଛି । 'ଗୀତଗୋବିନ୍ଦ' କାବ୍ୟର 'ଟୀକା' ଓ ଭାଷ୍ୟଗୁଡ଼ିକରୁ କେତେକ ପ୍ରକ୍ଷିପ୍ତ ଶ୍ଳୋକ ଗ୍ରହଣ ହୋଇଥିବା ଜଣାଯାଏ । ତଥାପି ଆଉ କେତୋଟି ପ୍ରକ୍ଷିପ୍ତ ଶ୍ଳୋକ ସମ୍ପର୍କରେ ଅଦ୍ୟାପି ପଣ୍ଡିତମାନଙ୍କର ଧ୍ୟାନକୁ ଆସିପାରି ନାହିଁ । ତେଣୁ ସମସାମୟିକ ଅଭିଲେଖଗୁଡ଼ିକୁ ଆଧାର କରି ଯେଉଁ ଇତିହାସ ସୃଷ୍ଟି ହୋଇପାରିଛି, ତାକୁ ଭିତ୍ତି କରି ସତ୍ୟମୂଳକ ଇତିହାସ ପରିପ୍ରେକ୍ଷୀରେ କବିଙ୍କର ଜୀବନ ଚରିତ ଅନୁଶୀଳନ କରିବା ବାଞ୍ଛନୀୟ । ଏ ଦୃଷ୍ଟିରୁ ବର୍ତ୍ତମାନ ଗବେଷଣାମୂଳକ ଏହି କ୍ଷୁଦ୍ର ପୁସ୍ତକଟି ଲେଖାଗଲା । ଆଶା କରେ, ସୁଧୀବର୍ଗ ମୋର ଏହି କ୍ଷୁଦ୍ର ପୁସ୍ତିକାଟିରୁ କବି ଜୟଦେବଙ୍କ ସମ୍ପର୍କରେ ଯଥାସମ୍ଭବ ଏକ ସ୍ପଷ୍ଟ ଧାରଣା ଉପଲବ୍ଧି କରିପାରିବେ ।

ପୁରୀ

ସତ୍ୟନାରାୟଣ ରାଜଗୁରୁ

# ସୂଚୀପତ୍ର

ରାଜସଭାମାନଙ୍କରେ ପୂର୍ବେ ଯେପରି କବିମାନେ ରହି କାବ୍ୟ ରଚନା କରୁଥିଲେ, ସେପରି ଜୟଦେବ ଚୋଡ଼ଗଙ୍ଗଙ୍କ ସଭାରେ ଶ୍ରେଷ୍ଠ କବି ରୂପେ ସମ୍ମାନିତ ହୋଇଥିଲେ । (୧୦) 'ଗୀତ ଗୋବିନ୍ଦ' ଶାସ୍ତ୍ରୀୟ ପଦ୍ଧତିର ରାଗ ଓ ତାଳ ସମ୍ବଳିତ ୨୩ ଟି ଗାନ ଥିବା ଦେଖାଯାଏ । (୧୧) ଭାରତରେ ଓ ପାଶ୍ଚାତ୍ୟ ଦେଶମାନଙ୍କରେ ଗୀତ ଗୋବିନ୍ଦର ପ୍ରଶଂସା (୧୨) 'ଗୀତ ଗୋବିନ୍ଦ' ଲେଖା ହେବା ପୂର୍ବରୁ ଓ ପରବର୍ତ୍ତୀ କାଳରେ ସେଥିରେ ଅନୁରୂପ ସାହିତ୍ୟ ଓ ସଙ୍ଗୀତର ପ୍ରଚଳନ । (୧୩) ମିଥିଳାରୁ ପ୍ରାପ୍ତ "ପୀତବସନ" କାବ୍ୟ (୧୪) କବି କମଳଲୋଚନ (ଖଡ଼ଗରାୟ)ଙ୍କ ସମ୍ବନ୍ଧରେ ଭୁଲ ଧାରଣା (୧୫) 'ଗୀତ ଗୋବିନ୍ଦ' ଗୋଟିଏ ଯାତ୍ରା ବା ସ୍ବାଙ୍ଗ, କେତେକ ବଙ୍ଗୀୟ ଲେଖକ ଭୁଲରେ ତାହା ଏକ 'ପ୍ରବନ୍ଧ' ବୋଲି କହିଛନ୍ତି । (୧୬) 'ଗୀତ ଗୋବିନ୍ଦ' ଖ୍ରୀ ୧୧୫୦ ପୂର୍ବରୁ ରଚିତ ହୋଇଥିବା ପ୍ରମାଣ (୧୭) 'ଗୀତ ଗୋବିନ୍ଦ' ଅନୁକରଣରେ ରଚିତ କେତେକ ଗ୍ରନ୍ଥ (୧୮) ଓଡ଼ିଶାର ରାଜା ପ୍ରତାପରୁଦ୍ରଙ୍କ ରାଜତ୍ବକାଳରେ ଶ୍ରୀ ଚୈତନ୍ୟଙ୍କ ନାମ ସଙ୍କୀର୍ତ୍ତନ ପ୍ରଚାର । (୧୯) ରାଜା ପୁରୁଷୋତ୍ତମ ଦେବଙ୍କ 'ଅଭିନବ ଗୀତଗୋବିନ୍ଦ' ପ୍ରତ୍ୟାଖ୍ୟାତ । (୨୦) ଭୁବନେଶ୍ବରସ୍ଥ ମନ୍ଦିରମାନଙ୍କ ଗାତ୍ରରେ ନୃତ୍ୟରତା ରମଣୀମାନଙ୍କ ବିଗ୍ରହରେ ପ୍ରଦର୍ଶିତ ନୃତ୍ୟଭଙ୍ଗୀ 'ଗୀତ ଗୋବିନ୍ଦ'ରେ ରହିଥିବା ଅନୁମେୟ ·(୨୧) ବଙ୍ଗର ରାଜା ଲକ୍ଷ୍ମଣ-ସେନଙ୍କ ସମୟରେ 'ବାଉଲ୍ ଗାନ' ସେଠାରେ ପ୍ରଚଳିତ ଥିଲା । (୨୨) ପୁରୀର ଆଧୁନିକ ନୃସିଂହ ମନ୍ଦିର ସୋମବଂଶୀ ମହାରାଜା ଯଯାତି ନିର୍ମାଣ କରିଥିଲେ । ·ଚୋଡ଼ଗଙ୍ଗ ସେଥିରେ ଦଧିବାମନ ମୂର୍ତ୍ତି ସ୍ଥାପନା କଲେ ଏବଂ ଶ୍ରୀ ପୁରୁଷୋତ୍ତମଙ୍କୁ ୧୮ ଶ ଗୋପାଳ ମନ୍ତ୍ରରେ ପୂଜା କରାଗଲା ।

## ତୃତୀୟ ପରିଚ୍ଛେଦ

୩୩-୪୨

(୧) ଗୀତ ଗୋବିନ୍ଦରେ ବର୍ଣ୍ଣିତ ବିଷୟ ଓ ରାଧାକୃଷ୍ଣଙ୍କ କେଳି, ମଧ୍ୱାଚାର୍ଯ୍ୟଙ୍କ ଦ୍ୱୈତ ମତ ପ୍ରଚାରକ, ଜଣିତ କାଳ (ଖ୍ରୀ ୧୨୩୮-୧୩୧୭) ମଧ୍ୟରେ ଲେଖା ହୋଇଥିବା ସମ୍ଭବ । (୨) 'ବ୍ରହ୍ମବୈବର୍ତ୍ତ-ପୁରାଣ' ଅନୁସାରେ । ଗୀତ ଗୋବିନ୍ଦ ରଚିତ ହୋଇଥିଲା (୩) ସର୍ବପ୍ରଥମେ ଶ୍ରୀ ପୁରୁଷୋତ୍ତମ ମନ୍ଦିର ସମ୍ମୁଖରେ ନାଟକଟି ଅଭିନୀତ ହୋଇଥିବା ଜଣାଯାଏ । କାରଣ ଏହା ଏକ ପ୍ରାଚୀନ ରୀତି । (୪) ଭାରତରେ ସର୍ବତ୍ର 'ଗୀତ ଗୋବିନ୍ଦ'ର ଆଦର ବଢିବାରୁ ବହୁ ପଣ୍ଡିତ ସେଥିର ଟୀକା ଲେଖିଛନ୍ତି । ସେଥିମଧ୍ୟରୁ ୨୮ ଟୀକାର ତାଲିକା ଯାହାକି ଖ୍ରୀ ୧୮ ଶ

ଶତାବ୍ଦ ପର୍ଯ୍ୟନ୍ତ ଲେଖା ହୋଇଥିଲା । (୫) ଗୀତ ଗୋବିନ୍ଦର ଏକ ପ୍ରକ୍ଷିପ୍ତ ଶ୍ଳୋକରେ ଉମାପତିଧର, ଜୟଦେବ, ଶରଣ, ଗୋବର୍ଦ୍ଧନାଚାର୍ଯ୍ୟ ଓ ଧୋୟି କବିମାନଙ୍କ ନାମ ଲେଖି, ସେମାନେ ରାଜା ଲକ୍ଷ୍ମଣସେନଙ୍କ ସଭାପଣ୍ଡିତ ଥିଲେ ବୋଲି ପ୍ରଚାର କରାଯାଉଛି । ଏ ସମ୍ପର୍କରେ ବିସ୍ତୃତ ଆଲୋଚନା । (୬) 'ସପ୍ତଶତୀ' ନାମକ ଗ୍ରନ୍ଥ "ଗୋବର୍ଦ୍ଧନାଚାର୍ଯ୍ୟ" ତାଙ୍କ ଭ୍ରାତା କବି ଉଦୟନଙ୍କ ସାହାଯ୍ୟରେ ଲେଖିଥିଲେ । ଉଦୟନାଚାର୍ଯ୍ୟ ଉତ୍କଳର ଓ କଳିଙ୍ଗର କେତେକ ଶିଳାଲେଖରେ ପ୍ରକଟିତ ହୋଇ ଅଛନ୍ତି ଏ ସମ୍ବନ୍ଧେ ବିବରଣୀ । (୭) 'ଶୃଙ୍ଗାର ରସ' ପାଇଁ ଜୟଦେବ ଗୋବର୍ଦ୍ଧନାଚାର୍ଯ୍ୟଙ୍କ ଆଶ୍ରୟ ନେଇ ତାଙ୍କୁ ଅଭିନନ୍ଦିତ କରିବା ଅଦୌ ସଙ୍ଗତ ନୁହେଁ । ଏ ସମ୍ପର୍କରେ ବିଶେଷ ଆଲୋଚନା ।

## ଚତୁର୍ଥ ପରିଚ୍ଛେଦ — ୪୩-୫୬

(୧) "ଗୀତ ଗୋବିନ୍ଦ"ରେ ଲେଖାଥିବା "ବାଚଃ ପଲ୍ଲବୟତି କବି ଉମାପତି ଧରଃ" ଇତ୍ୟାଦି ଶ୍ଳୋକ ଯେ ନିଶ୍ଚିତ ଭାବେ ପ୍ରକ୍ଷିପ୍ତ ହୋଇଥିବ, ସେଥିର ସମାଲୋଚନା । (୨) 'ସଦୁକ୍ତି କର୍ଣ୍ଣାମୃତ' ନାମକ ଗୋଟିଏ ସଙ୍କଳିତ ଗ୍ରନ୍ଥ ସମ୍ପର୍କରେ ଆଲୋଚନା । (୩) 'ଶେଖ ଶୁଭୋଦୟ' ନାମକ ହଲାୟୁଧ ମିଶ୍ରଙ୍କ ଗ୍ରନ୍ଥରେ ଲକ୍ଷ୍ମଣସେନ ଓ ତାଙ୍କ ପତ୍ନୀ ଉମାପତି ଧରଙ୍କ ହୀନ ଚରିତ୍ର ବର୍ଣ୍ଣନା । (୪) ବକ୍ତିୟାର୍ ଖିଲ୍‌ଜିଙ୍କ ଖ୍ରୀ ୧୨୦୫ ରେ ନଦିଆ (ରାଜଧାନୀ) ଅଧିକାର । (୫) ଚୋଡ଼ଗଙ୍ଗଙ୍କର ମିତ୍ରରାଜା ରୂପେ ଲକ୍ଷ୍ମଣ-ସେନଙ୍କ ପିତାମହ ଥିଲେ ବୋଲି 'ବଲ୍ଲାଳ ଚରିତମ୍' ଗ୍ରନ୍ଥରେ ଲେଖାଅଛି । (୬) ବଲ୍ଲାଳ ସେନଙ୍କ ରଚିତ ସ୍ମୃତି ଗ୍ରନ୍ଥ 'ଦାନସାଗର' ଉତ୍କଳର ରାଜା ଅନଙ୍ଗଭୀମ ଦେବ (୩ୟ) ଙ୍କ ରାଜତ୍ୱ କାଳରେ ଉତ୍କଳରେ ପ୍ରଚଳିତ ହେଉଥିଲା । (୭) ଲକ୍ଷ୍ମଣ ସେନଙ୍କ ରାଜତ୍ୱ ଆରମ୍ଭ କାଳ ନିରୂପଣ । ଏ ସମ୍ବନ୍ଧେ ବିଭିନ୍ନ ଐତିହାସିକଙ୍କର ମତ । (୮) ବକ୍ତିୟାର ଖିଲିଜିଙ୍କ ନଦିଆ ଅଧିକାର ସମ୍ପର୍କରେ ବିଶେଷ ବିବରଣୀ । (୯) ଲକ୍ଷ୍ମଣ ସେନଙ୍କ ପୁତ୍ର ବିଶ୍ୱରୂପ ସେନଙ୍କ ଗୌଡ଼ ଦେଶକୁ ପଳାୟନ । (୧୦) ମୁସଲମାନଙ୍କ ବାରମ୍ବାର ଉତ୍କଳ ଅଧିକାର କରିବାକୁ ଚେଷ୍ଟା ଓ ସେଥିର ବିଫଳତା । (୧୧) ସୁଲତାନ୍ ଘିଆସୁଦ୍ଦିନ୍‌ଙ୍କ ସଙ୍ଗେ ଉତ୍କଳ ରାଜା (୨ୟ ଭାନୁଦେବ)ଙ୍କ ଭୀଷଣ ଯୁଦ୍ଧ ଓ ସୁଲତାନଙ୍କ ଶୋଚନୀୟ ପରାଜୟ । ଏ ବିଷୟ ପରେ ଅଧିକ ବର୍ଣ୍ଣିତ ହେବ । (୧୨) ବଙ୍ଗଦେଶରୁ ଉଠି ଆସିଥିବା ବହୁ ବ୍ରାହ୍ମଣଙ୍କୁ ଓଡ଼ିଶା ରାଜା ଅନଙ୍ଗଭୀମ ଓ ତାଙ୍କ ପରବର୍ତ୍ତୀ

ରାଜାମାନଙ୍କ ଶାସନ ଦାନ । (୧୩) ଉତ୍କଳର ମହାରାଜ ନରସିଂହ ଦେବ (୧ମ)ଙ୍କ ରାଢ଼ ଓ ବରେନ୍ଦ୍ର ଆକ୍ରମଣ । (୧୪) ବଙ୍ଗର ମୁସଲମାନମାନଙ୍କ ଆକ୍ରମଣକୁ ପ୍ରତିରୋଧ କରି ସେଠାରୁ ଉଠି ଆସିଥିବା ବ୍ରାହ୍ମଣମାନଙ୍କୁ ଶାସନ ଦାନ କରିବାକୁ ରାଜା ନରସିଂହ ଦେବ (୨ୟ) ବାଲେଶ୍ୱର ଜିଲ୍ଲାସ୍ଥିତ ରେମୁଣା କଟକରେ କିଛି କାଳ ଅବସ୍ଥାନ କରିଥିଲେ । ସେଠାରେ ହଲାୟୁଧ ନାମକ ଜଣେ ବ୍ରାହ୍ମଣଙ୍କୁ ଶାସନ ଦାନ କରିଥିଲେ ଖ୍ରୀ ୧୨୯୪ରେ । (୧୫) ଘିଆସୁଦ୍ଦିନଙ୍କ ସଙ୍ଗେ ଭାନୁଦେବ (୨ୟ)ଙ୍କ ଯୁଦ୍ଧ ଓ ବିଜୟ ।

## ପଞ୍ଚମ ପରିଚ୍ଛେଦ — ୪୮-୭୩

(୧) ଜୟଦେବ ଯେଉଁ ଅନ୍ୟ ଚାରିଜଣ କବିଙ୍କ ସମସାମୟିକ ରୂପେ "ବାଚଃ ପଲ୍ଲବୟତି କବି ଉମାପତି ଧରଃ ... ..." ଇତ୍ୟାଦି ଶ୍ଳୋକରେ ବର୍ଣ୍ଣିତ ହୋଇଛନ୍ତି, ସେମାନଙ୍କ ଜୀବିତ କାଳ ନିର୍ଣ୍ଣୟ । (୨) ଏହି ଶ୍ଳୋକରେ ବର୍ଣ୍ଣିତ ଉମାପତିଧର ଉତ୍କଳର କେତେକ ଅଭିଲେଖରେ କବି ଉମାପତି ହୋଇ ନଥିବା ସମ୍ଭବ । (୩) ଲକ୍ଷ୍ମଣ ସେନଙ୍କ ରାଜ୍ୟାଭିଷେକର ୪୦ ବର୍ଷ ପରେ ଅର୍ଥାତ୍ ୧୨୦୬ ଖ୍ରୀଷ୍ଟାବ୍ଦରେ "ସଦୁକ୍ତି କର୍ଣ୍ଣାମୃତ" ଗ୍ରନ୍ଥ ସଂପୂର୍ଣ୍ଣ ହୋଇଥିଲା ସେଥିରେ 'ଗୀତ ଗୋବିନ୍ଦ'ର ୭୨ଟି ଶ୍ଳୋକ ଉଦ୍ଧୃତ ହୋଇଅଛି । ଗୀତ ଗୋବିନ୍ଦର ପ୍ରକ୍ଷିପ୍ତ ଶ୍ଳୋକ ସମ୍ବନ୍ଧରେ ଆଲୋଚନା । କାରଣ ସେତେବେଳେ (୧୨୦୫) ଲକ୍ଷ୍ମଣସେନ ପୂର୍ବରେ ଆଶ୍ରୟ ନେଇଥିବାରୁ ତାହା ସେଠାରେ ବୋଧହୁଏ ଗୀତଗୋବିନ୍ଦରୁ ଉଦ୍ଧୃତ ହୋଇଥିବ । (୪) 'ଗୀତ ଗୋବିନ୍ଦ'ରେ ପ୍ରକ୍ଷିପ୍ତ ଶ୍ଳୋକଗୁଡ଼ିକ ସମ୍ବନ୍ଧରେ ଅନ୍ୟ ପଣ୍ଡିତମାନଙ୍କ ଆଲୋଚନା । (୫) "ଆର୍ଯ୍ୟା ସପ୍ତଶତୀ"ରେ ଗୋବର୍ଦ୍ଧନାଚାର୍ଯ୍ୟ 'ସେନ କୁଳତିଲକ ଭୂପତି' ରୂପେ ଯାହାଙ୍କର ସ୍ତୁତିଗାନ କରିଛନ୍ତି, ସେ ହେଉଛନ୍ତି ବିଜୟ ସେନ । ତାଙ୍କ ପୁତ୍ର ଲକ୍ଷ୍ମଣସେନ ନୁହଁନ୍ତି । ଏ ସମ୍ପର୍କରେ ଆଲୋଚନା । ସେ ଖ୍ରୀ ୩ୟ ଶତାବ୍ଦୀର କବି ହାଲଙ୍କ ସମସାମୟିକ ବାକାଟକ ବଂଶୀୟ ରାଜା ପ୍ରବରସେନ 'ସେନ କୁଳତିଲକ' ହୋଇଥିବା ମଧ୍ୟ ସମ୍ଭବ । (୬) ଶୃଙ୍ଗାର ରସଜ୍ଞ ରୂପେ ଗୋବର୍ଦ୍ଧନାଚାର୍ଯ୍ୟଙ୍କୁ ସ୍ତୁତି କରିବା କବି ଜୟଦେବଙ୍କ ପକ୍ଷରେ ଅସମ୍ଭବ । ଏ ସମ୍ବନ୍ଧରେ ଆଲୋଚନା । (୭) ବଙ୍ଗରେ ସେନ ରାଜାମାନଙ୍କ ରାଜତ୍ୱକାଳ । ବିଜୟ ସେନଙ୍କ ବୀରତ୍ୱ ଓ ରାଜ୍ୟମାନ ଜୟ କରିଥିବା ପ୍ରସଙ୍ଗ । ତାଙ୍କ ପ୍ରଶସ୍ତି ଶ୍ଳୋକର ପ୍ରକୃତ

(ଗୋପୀନାଥ) ମନ୍ଦିର ଶିଳାଲିପି ଏବଂ ଉତ୍କଳରେ ଗୋପୀନାଥଙ୍କ ଆରାଧନା । (୩) କପିଳେନ୍ଦ୍ରଙ୍କ ପ୍ରଭାବରେ ହିନ୍ଦୁ ଧର୍ମର ସୁରକ୍ଷା ଏବଂ ଶ୍ରୀ ଜଗନ୍ନାଥ ମନ୍ଦିର ଶିଳାଲିପରେ ତାଙ୍କର ମହାପ୍ରଭୁଙ୍କ ପ୍ରତି ଭକ୍ତି ଓ ବିଶ୍ୱାସ । (୪) ସୂର୍ଯ୍ୟବଂଶୀୟ ରାଜାମାନଙ୍କ ସମୟରେ ସଂସ୍କୃତ ଏବଂ ଓଡ଼ିଆ ସାହିତ୍ୟରେ ବିକାଶ । (୫) ଶ୍ରୀମନ୍ଦିରରେ ପୁରୁଷୋତ୍ତମ ଦେବଙ୍କ ରଚିତ 'ଅଭିନବ ଗୀତଗୋବିନ୍ଦ' ପ୍ରତ୍ୟାଖ୍ୟାନ ହେବା କିମ୍ବଦନ୍ତୀ । (୬) କାଞ୍ଚି ଅଭିଯାନ ଆଖ୍ୟାନ । (୭) ପୁରୁଷୋତ୍ତମଙ୍କ ଦାକ୍ଷିଣାତ୍ୟ ଅଭିଯାନ ସମ୍ପର୍କରେ ତାମ୍ରଶାସନ । (୮) କର୍ଣ୍ଣାଟର (ବିଜୟନଗର) ରାଜା କୃଷ୍ଣଦେବ ରାୟଙ୍କ ଉତ୍କଳ ବିରୁଦ୍ଧରେ ଅଭିଯାନ । (୯) ପ୍ରତାପରୁଦ୍ରଙ୍କ ରାଜତ୍ୱ କାଳରେ ଉତ୍କଳର ଦକ୍ଷିଣ ଏବଂ ପୂର୍ବଦିଗରେ ସଙ୍କଟ । (୧୦) ନଦିଆରୁ ଶ୍ରୀ ଚୈତନ୍ୟଙ୍କ ଉତ୍କଳକୁ ଆଗମନ ଏବଂ ରାଜା ପ୍ରତାପରୁଦ୍ର ତାଙ୍କଠାରୁ ଗୌଡ଼ୀୟ ବୈଷ୍ଣବ ଧର୍ମ ଗ୍ରହଣ କରିବା ଏବଂ ଶ୍ରୀମନ୍ଦିରରେ "ଗୀତଗୋବିନ୍ଦ" ଗାନ ତେଲେଙ୍ଗା ସଂପ୍ରଦାୟଠାରୁ ଶିକ୍ଷା କରି ବୈଷ୍ଣବ ସମ୍ପ୍ରଦାୟ ଗାନ କରିବା ନିର୍ଦ୍ଦେଶ, ମନ୍ଦିର ଗାତ୍ରରେ ଅଭିଲେଖ ଖୋଦନ । (୧୧) ଶ୍ରୀ ଜଗନ୍ନାଥ ଦାସଙ୍କ ଓଡ଼ିଆ ଭାଗବତ ଶ୍ରୀ ଚୈତନ୍ୟଙ୍କ ପୂର୍ବରୁ ଉତ୍କଳରେ ପ୍ରସାର ଲାଭ କରିଥିବା ପ୍ରସଙ୍ଗ । (୧୨) ଓଡ଼ିଶାରେ ଜଗନ୍ନାଥ ଦାସଙ୍କ ସମେତ 'ପଞ୍ଚସଖା'ଙ୍କ ଅଭ୍ୟୁଦୟ ଓ ସେମାନଙ୍କର ଧର୍ମଗ୍ରନ୍ଥ । (୧୩) ବୌଦ୍ଧ ଧର୍ମର ଶାଖାରୂପେ ନାଥ ସମ୍ପ୍ରଦାୟ ଏବଂ ସିଦ୍ଧାଚାର୍ଯ୍ୟ-ମାନଙ୍କ ଧର୍ମ-ସିଦ୍ଧାନ୍ତ ଓ ତାନ୍ତ୍ରିକ-ବୈଷ୍ଣବ ମତ ପ୍ରଚାର । (୧୪) ବଲ୍ଲଭା-ଚାର୍ଯ୍ୟଙ୍କ 'ଅଚିନ୍ତ୍ୟ ଭେଦାଭେଦ' ମତ ପ୍ରସାର, ତାଙ୍କ ପୂର୍ଣ୍ଣ ପ୍ରଜ୍ଞା-ଭାଗ୍ୟ ଓ ଜ୍ଞାନାମୃତ ସାର (ସଂହିତା) । (୧୫) ଶ୍ରୀ ଚୈତନ୍ୟଙ୍କ 'ନାମ ସଙ୍କୀର୍ତ୍ତନ' ପ୍ରସାର ଏବଂ ସେ ସାକ୍ଷାତ ଶ୍ରୀକୃଷ୍ଣଙ୍କ ଅଂଶ ରୂପେ ପୂଜିତ ହେଉଥିଲେ । (୧୬) ଶ୍ରୀ ଚୈତନ୍ୟଙ୍କ ଶିଷ୍ୟମାନେ 'ପ୍ରେମଭକ୍ତିର' ପ୍ରସାର ପାଇଁ ଗ୍ରନ୍ଥମାନ ଲେଖିଥିଲେ । (୧୭) ସାମରିକ କ୍ଷେତ୍ରରେ ଉତ୍କଳର ଦୁର୍ବଳତା । (୧୮) ରାମାନନ୍ଦ ରାୟଙ୍କ ବୈଷ୍ଣବ ଧର୍ମ ପ୍ରୀତି ଓ ରାଜନୀତି କ୍ଷେତ୍ରରୁ ତାଙ୍କର ଅପସାରଣ ଓ 'ଜଗନ୍ନାଥ ବଲ୍ଲଭ ନାଟକ' ପ୍ରଣୟନ । (୧୯) କୃଷ୍ଣଦେବ ରାୟଙ୍କ ଦକ୍ଷିଣ ଓଡ଼ିଶା ମନ୍ଦିରମାନଙ୍କରେ ଉପାସନା ଏବଂ ପ୍ରତାପରୁଦ୍ରଙ୍କ ପୁତ୍ର ବୀରଭଦ୍ରଙ୍କୁ ବନ୍ଦୀ କରିବା ଓ ରାଜକୁମାରୀ ରୁକ୍ମିଣୀ (ଦୁର୍ଗା)ଙ୍କୁ ବିବାହ କରିବା ଘଟଣା । (୨୦) ଉତ୍କଳକୁ ଶ୍ରୀ ଚୈତନ୍ୟଙ୍କ ଆଗମନ ଖ୍ରୀ ୧୫୧୦ ପୂର୍ବରୁ ପ୍ରତାପରୁଦ୍ରଙ୍କ ଯେଉଁ ଶକ୍ତି ଓ ସାମର୍ଥ୍ୟ ଥିଲା, ତାହା ସେ ଗୌଡ଼ୀୟ-ବୈଷ୍ଣବ ଗ୍ରହଣ ପରେ ହରାଇଥିଲେ । (୨୧) ବୈଷ୍ଣବ କବି କର୍ଣ୍ଣପୁରଙ୍କ 'ଚୈତନ୍ୟ ଚନ୍ଦ୍ରୋଦୟ' ନାଟକ ଖ୍ରୀ ୧୨ଶ

ଶତାବ୍ଦୀ ମଧ୍ୟଭାଗରେ ଲେଖା ହୋଇ ସେଥିରେ ଦେବତାମାନଙ୍କ ସଙ୍ଗେ ନାଟକୀୟ ଭୂମିକାରେ ରାଜା ପ୍ରତାପରୁଦ୍ରଙ୍କୁ ମଧ୍ୟ ଉପସ୍ଥାପିତ କରାଯାଇ-ଥିବାରୁ ସେ ନିଷ୍ଠିତଭାବେ ଧର୍ମ କାର୍ଯ୍ୟରେ ପୁରାପୁରି ଅଭିଳପ୍ତ ହୋଇଥିଲେ । (୨) ଶ୍ରୀ ଚୈତନ୍ୟଙ୍କ ପ୍ରଭାବ ହେତୁ ଓଡ଼ିଶା ତାର ସାମରିକ ଶକ୍ତି ହରାଇଲା ବୋଲି ଐତିହାସିକମାନେ ମତବ୍ୟକ୍ତ କରିଛନ୍ତି ।

## ଅଷ୍ଟମ ପରିଚ୍ଛେଦ — ୯୯-୧୧୦

(୧) ସୂର୍ଯ୍ୟବଂଶୀୟ ରାଜାମାନଙ୍କ ସମୟରେ ଓଡ଼ିଶାର କବିମାନଙ୍କ ରାଧା-କୃଷ୍ଣ-କେଳି ଓ ଭକ୍ତି ସଙ୍ଗୀତ ସମ୍ବଳିତ କାବ୍ୟ ଲେଖକମାନଙ୍କ ସଂକ୍ଷିପ୍ତ ପରିଚୟ । (୨) କବି ଜୟଦେବଙ୍କ 'ଗୀତ ଗୋବିନ୍ଦ'କୁ ଅନୁସରଣ କରି ସଙ୍ଗୀତ ମାଧ୍ୟମରେ ଓଡ଼ିଆ ସାହିତ୍ୟକୁ ସେହି ଗ୍ରନ୍ଥଗୁଡ଼ିକ ସମୃଦ୍ଧି କରିଥିଲା । ସେହି ଗ୍ରନ୍ଥଗୁଡ଼ିକ ଖ୍ରୀ ୧୬ଶ ଶତାବ୍ଦ ମଧ୍ୟରେ ଲେଖାଯାଇଥିବା ଜଣାଯାଏ । (୩) ଶାସ୍ତ୍ରୀୟ ସଙ୍ଗୀତକୁ 'ଓଡ଼ିଶୀ ସଙ୍ଗୀତ' ନାମରେ ଅଭିହିତ କରି ସେହି ଓଡ଼ିଶାର ଗାନଗୁଡ଼ିକ ଅଦ୍ୟାବଧି ପ୍ରଚଳିତ ହେଉଛି ।

## ପରିଶିଷ୍ଟ — ୧୧୧-୧୩୬

ଏଥିରେ 'ଗୀତ ଗୋବିନ୍ଦ'ର ୨୩ଟି ଗାନ ଓ ସେଥିର ରାଗ ଏବଂ ତାଳ-ଗୁଡ଼ିକ ଉଦ୍ଧାର କରି ଦ୍ୱାଦଶ-ସର୍ଗରୁ ପ୍ରତ୍ୟେକ ଗାନ ଉଦ୍ଧାର କରାଯାଇଛି ।



# ପ୍ରଥମ ପରିଚ୍ଛେଦ

## କଳିଙ୍ଗର ସାମ ସଂପ୍ରଦାୟ ଓ ଐତିହାସିକ ପୃଷ୍ଠଭୂମି

ଖ୍ରୀ: ୭ମ ଶତାବ୍ଦୀ ପୂର୍ବରୁ ଗଙ୍ଗାବଂଶୀୟ ରାଜାମାନେ କଳିଙ୍ଗରେ ରାଜତ୍ୱ କରୁଥିଲେ । ସେମାନଙ୍କ ରାଜ୍ୟ ବିଭିନ୍ନ ସମୟରେ ପ୍ରସାରିତ ଓ ସଙ୍କୁଚିତ ହେଉଥିଲା । ଦକ୍ଷିଣରେ ସିଂହାଚଳଠାରୁ ଉତ୍ତରରେ ଋଷିକୁଲ୍ୟା ନଦୀ ମଧ୍ୟରେହିଁ ତାହା ସୀମିତ ହୋଇଥିଲା । ତାଙ୍କ ରାଜ୍ୟର କେନ୍ଦ୍ରରେ ଥିଲା ବିଶାଳ ମହେନ୍ଦ୍ର ପର୍ବତମାଳା । ମହେନ୍ଦ୍ରର ଶିଖରଦେଶରେ ସେହି ଗଙ୍ଗ ରାଜାମାନଙ୍କ ଇଷ୍ଟଦେବତା ଗୋକର୍ଣ୍ଣେଶ୍ୱରଙ୍କ ଶିବ ମନ୍ଦିର ପ୍ରତିଷ୍ଠା ଲାଭ କରିଥିଲା । ବୋଧହୁଏ ଗୁପ୍ତଯୁଗରେ କଳିଙ୍ଗ ସାମ୍ରାଜ୍ୟରେ ଆଧିପତ୍ୟ ବିସ୍ତାର କରିଥିବା ମାଠର ବଂଶୀୟ ରାଜାମାନେ ତାହା ନିର୍ମାଣ କରିଥିଲେ । ସେହି ମାଠର ବଂଶର କେତେକ ରାଜା ବୈଷ୍ଣବ ଧର୍ମ ଗ୍ରହଣ କରି ମହେନ୍ଦ୍ରଗିରି ଶିଖରରେ ନାରାୟଣଙ୍କ ପାଇଁ ମଧ୍ୟ ଅନ୍ୟ ଏକ ମନ୍ଦିର ନିର୍ମାଣ କରିଥିଲେ । ସେମାନଙ୍କର ରାଜଧାନୀର ନାମ ଥିଲା ସିଂହପୁର । କିନ୍ତୁ ସେହି ରାଜବଂଶର ପତନ ପରେ କଳିଙ୍ଗର ପ୍ରାଚୀନ-ଗଙ୍ଗ ବଂଶୀୟ ରାଜାମାନେ ବଂଶଧାରା ତଟବର୍ତ୍ତୀ କଳିଙ୍ଗ-ନଗରରେ ତାଙ୍କ ରାଜଧାନୀ ସ୍ଥାପନା କଲେ । ଅଦ୍ୟାପି ତାହା ଆନ୍ଧ୍ର ପ୍ରଦେଶରେ ଶ୍ରୀକାକୁଲମ୍ ଜିଲ୍ଲାର "ନଗରୀ କଟକ" ନାମରେ ଅଭିହିତ ହେଉଛି । ସେହି ଗ୍ରାମକୁ ଲାଗି ମୁଖଲିଙ୍ଗମ୍ ନାମକ ଅନ୍ୟ ଏକ ଗ୍ରାମରେ ମଧୁକେଶ୍ୱର ଶିବ ମନ୍ଦିର ଖ୍ରୀ: ୧୦ମ ଶତାବ୍ଦୀରେ ଗଙ୍ଗାବଂଶୀୟ ମହାରାଜା ମଧୁକାମାର୍ଣ୍ଣବଙ୍କ ରାଜତ୍ୱ କାଳରେ ନିର୍ମିତ ହୋଇଥିଲା । କଳିଙ୍ଗ-ନଗର ନିକଟରେ ସେହି ମନ୍ଦିରଟି ରହିଥିବାରୁ ସେଥିର ସେବକମାନେ କାଳିଙ୍ଗୀ-ଜାତିରୁ ନିଯୁକ୍ତ ହୋଇଥିଲେ । ସେମାନେ ପ୍ରାଚୀନ କଳିଙ୍ଗର ବ୍ରାହ୍ମଣ ବୋଲି ଦାବି କରନ୍ତି । ✻

ମଧୁକେଶ୍ୱର ମନ୍ଦିର ଗଠିତ ହେଲା ପରେ ରାଜା ମଧୁକାମାର୍ଣ୍ଣବଙ୍କ ପୁତ୍ର ବଜ୍ରହସ୍ତଦେବ ସେହି ଶୈବ ପୀଠର ବିଭିନ୍ନ ଉନ୍ନତିକର କାର୍ଯ୍ୟ ସଂପାଦନ କରିବାକୁ ଯାଇ ମଧୁକେଶ୍ୱର ମନ୍ଦିରର ସମସ୍ତ ମଠ ନିସ୍ୱର୍ଣ୍ଣିତ କରିଥିଲେ । ତାଙ୍କର ମାତୁଳାଳୟ

---

✻ ମହାଭାରତ 'କର୍ଣ୍ଣପର୍ବ'ରେ ଲେଖାଅଛି, କଳିଙ୍ଗ ଏକ ଅପବିତ୍ର ଦେଶ । ସେଠାରେ ବାସ କରିଥିବା ବ୍ରାହ୍ମଣମାନେ ବେଦପାଠ କରନ୍ତି ନାହିଁ ।

ଦକ୍ଷିଣ ଭାରତର ବୈଦୁମ୍ବ ରାଜ ପରିବାର ହୋଇଥିବାରୁ ସେ ଅଞ୍ଚଳର କେତେକ ନର୍ତ୍ତକ ନର୍ତ୍ତକୀଙ୍କୁ ଆଣାଇ କଳିଙ୍ଗରେ ସେମାନଙ୍କୁ ଗ୍ରାମଦାନ କରିଥିବା ପ୍ରସଙ୍ଗ ତାଙ୍କ ତାମ୍ରଶାସନମାନଙ୍କରୁ ଉପଲବ୍ଧି ହୁଏ । କ୍ରମେ ସେହି ନର୍ତ୍ତକୀମାନଙ୍କ ବଂଶ ବୃଦ୍ଧିଲାଭ କରି କଳିଙ୍ଗନଗରଠାରୁ ପ୍ରାୟ ୧୬ ମାଇଲ ଦୂରସ୍ଥ ସିନ୍ଧୁତଟରେ ଅବସ୍ଥିତ ଶ୍ରୀକୂର୍ମ ପାଟକ ଗ୍ରାମରେ ସେହି ନର୍ତ୍ତକୀମାନଙ୍କ ପାଇଁ ବସ୍ତି ନିର୍ମାଣ କରାଯାଇଥିଲା । ସେଠାରେ ଶ୍ରୀକୂର୍ମ ଅବତାର ବିଷ୍ଣୁଙ୍କ ମନ୍ଦିର ମଧ୍ୟ ଅବସ୍ଥିତ । ତେଣୁ ଦକ୍ଷିଣ ଭାରତରୁ ଉଠି ଆସିଥିବା ଶ୍ରୀବୈଷ୍ଣବ ସମ୍ପ୍ରଦାୟ ସେହି ମନ୍ଦିରରେ ରହି ଛାତ୍ରମାନଙ୍କୁ ସଂସ୍କୃତ-ସାହିତ୍ୟ ଓ ଧର୍ମଶାସ୍ତ୍ର ଶିକ୍ଷା ଦେଉଥିଲେ । 'ସାନି' ବା ନର୍ତ୍ତକୀମାନଙ୍କ ଶିକ୍ଷା ପାଇଁ ମଧ୍ୟ ସେଠାରେ ଏକ ସଂଗୀତ ଶାଳାର ବ୍ୟବସ୍ଥା ହୋଇଥିଲା । 'ନୃତ୍ୟ-ସଂଗୀତ' ପଞ୍ଚମ ବେଦରୂପେ ଉପଯୁକ୍ତ ଗୁରୁମାନେ ସେଥିରେ ନିଯୁକ୍ତ ହୋଇଥିଲେ । ପ୍ରାଚୀନ ଗଙ୍ଗା-ବଂଶୀୟ ରାଜାମାନେ କଳିଙ୍ଗରେ ଦୀର୍ଘ ୪୦୦ ବର୍ଷ ରାଜତ୍ୱ କଲାପରେ, ସେହି ବଂଶରେ ବଜ୍ରହସ୍ତଙ୍କ ପୌତ୍ର ପ୍ରବଳ ପରାକ୍ରାନ୍ତ ଚୋଡଗଙ୍ଗ ଦେବ ଜନ୍ମଲାଭ କଲେ । ତାଙ୍କ ପିତା ମହାରାଜା ଦେବେନ୍ଦ୍ରବର୍ମା ରାଜରାଜଦେବ ଏକଦା କାଞ୍ଚିର ଚୋଳବଂଶୀୟ ମହାରାଜା କୁଲୋତୁଙ୍ଗ (୧ମ) ରାଜେନ୍ଦ୍ର ଚୋଳଙ୍କୁ ଯୁଦ୍ଧରେ ପରାସ୍ତ କରି ତାଙ୍କ କନ୍ୟା ରାଜସୁନ୍ଦରୀଙ୍କ ପାଣିଗ୍ରହଣ କରିଥିଲେ । ରାଜସୁନ୍ଦରୀଙ୍କ ଗର୍ଭରୁ ଦୁଇଟି ପୁତ୍ର ସନ୍ତାନ ଜନ୍ମିଲା ପରେ ୧୦୭୭ ଖ୍ରୀଷ୍ଟାବ୍ଦରେ ରାଜରାଜଦେବଙ୍କ ଅକାଳମୃତ୍ୟୁ ହେଲା । ତାଙ୍କ ପ୍ରଥମ ପୁତ୍ର ଚୋଳଗଙ୍ଗଦେବଙ୍କ ବୟସ ୫ ବର୍ଷ ମାତ୍ର ଏବଂ ଦ୍ୱିତୀୟପୁତ୍ର ପରମାର୍ଦ୍ଦିଙ୍କ ବୟସ ପ୍ରାୟ ଦୁଇ ବା ତିନି ବର୍ଷରୁ ଅଧିକ ହୋଇନଥିଲା ।

ରାଜରାଜଙ୍କ ମୃତ୍ୟୁ ପରେ କଳିଙ୍ଗ ଦେଶ ଅରାଜକ ହେବା ଦେଖି ବିଭିନ୍ନ ଅଞ୍ଚଳରୁ ଶତ୍ରୁରାଜାମାନେ ସେହି ବିଭବପୂର୍ଣ୍ଣ ରାଜ୍ୟଟି ଅଧିକାର କରିବାକୁ ଉଦ୍ୟୋଗ କଲେ । ତେଣୁ ଶତ୍ରୁମାନଙ୍କ ହସ୍ତରୁ ରାଜ୍ୟ ଓ ଶିଶୁ ସନ୍ତାନମାନଙ୍କୁ ରକ୍ଷା କରିବା ପାଇଁ ବିଧବା ରାଣୀ ରାଜସୁନ୍ଦରୀ ଆକୁଳ ହୋଇ ସ୍ୱୀୟ ଭ୍ରାତା ବୀରଚୋଡ଼ଙ୍କ ସାହାଯ୍ୟ ଭିକ୍ଷା କଲେ । ସେତେବେଳେ ବୀରଚୋଡ଼ ଥିଲେ ବେଙ୍ଗି ରାଜ୍ୟର ଶାସନ କର୍ତ୍ତା । ସେ ନିଜ ଭଗ୍ନି ରାଜସୁନ୍ଦରୀଙ୍କ ଅନୁରୋଧକ୍ରମେ କଳିଙ୍ଗ-ନଗରକୁ ଆସି ସର୍ବପ୍ରଥମେ କଳିଙ୍ଗ-ସିଂହାସନରେ ସ୍ୱୀୟ ଭାଗିନେୟ ଶିଶୁ ଚୋଡ଼ଗଙ୍ଗଙ୍କର ରାଜ୍ୟାଭିଷେକ ଆଡମ୍ବର ସହକାରେ ସମ୍ପନ୍ନ କଲେ । ଦକ୍ଷିଣରେ ପ୍ରଚଳିତ ମାଉଳକନ୍ୟା ବିବାହ ନିୟମକୁ ମାନି ସେ ନିଜର ଶିଶୁକନ୍ୟା ଗୁଣ୍ଡିଚୋଡ (ପରେ କସ୍ତୁରୀ-କାମୋଦିନୀ)ଙ୍କୁ ଚୋଡ଼ଗଙ୍ଗଙ୍କ ସଙ୍ଗେ ବିବାହ କରି ଦେଇ, ରାଜ୍ୟଟି ଅରାଜକ ନୁହେଁ ବୋଲି ପ୍ରଚାର କଲେ । ତେଣୁ ଖ୍ରୀ: ୧୦୭୭ ସାଲରେ କଳିଙ୍ଗର ଖଣ୍ଡପାଳମାନେ ବହୁ ଉପଢୌକନ ସହ ରାଜଧାନୀକୁ ଆସି କଳିଙ୍ଗର ନବୀନ ରାଜା ଓ ରାଣୀଙ୍କୁ ଉପହାର ଦେଇ ଆନୁଗତ୍ୟ ସ୍ୱୀକାର କଲେ । ବୀର ଚୋଡ ଜଣେ ପରାକ୍ରମଶାଳୀ ରାଜନୀତିଜ୍ଞ ହୋଇଥିବାରୁ ସେ ତାଙ୍କର ଉଭୟ

ଭଗିନୀମାନେ ଓ କନ୍ୟାଙ୍କର ଶିକ୍ଷା ପାଇଁ ଉପଯୁକ୍ତ ପଣ୍ଡିତଙ୍କୁ ନିଯୁକ୍ତ କରି ନିଜେ ରାଜ୍ୟର ଶାସନ ଭାର ବହନ କରିଥିଲେ । (୧)

ଚୋଡ଼ଗଙ୍ଗ ବିଭିନ୍ନ ବିଦ୍ୟାରେ ପାରଦର୍ଶିତା ଲାଭ କରି ଯେତେବେଳେ ଯୌବନରେ ପଦାର୍ପଣ କଲେ, ସେତେବେଳେ ସେ କଳିଙ୍ଗର ସାମରିକ ଶକ୍ତିକୁ ଯଥେଷ୍ଟ ପରିମାଣରେ ସମୃଦ୍ଧ କରି ଶତ୍ରୁ ରାଜାମାନଙ୍କୁ ପ୍ରଥମେ ନିଶ୍ଚିହ୍ନ କରିବା ଉଦ୍ଦେଶ୍ୟରେ ପୂର୍ବ ଓ ପଶ୍ଚିମ ଦିଗର ଦୁଇଟି ଶତ୍ରୁ ରାଜ୍ୟ ଯଥାକ୍ରମେ ବଙ୍ଗ ଓ ବେଙ୍ଗି ଦେଶ ପ୍ରତି ଦଣ୍ଡଯାତ୍ରା କଲେ ।

କଳିଙ୍ଗର ପୂର୍ବଦିଗରେ ଅବସ୍ଥିତ ଉତ୍କଳରାଜ୍ୟ ସେତେବେଳେ ସୋମବଂଶୀ ରାଜା କର୍ଣ୍ଣଦେବଙ୍କ ଅଧୀନରେ ପରିଚାଳିତ ହେଉଥିଲା । ଚୋଡ଼ଗଙ୍ଗ ପ୍ରଥମେ ସେହି ରାଜ୍ୟଟି ଆକ୍ରମଣ କରି ସେଠାର ରାଜଧାନୀ ମହାନଦୀ କୂଳରେ ଥିବା ଯଯାତି ନଗରକୁ ଅଧିକାର କଲେ । ସେଠାରେ ଯେଉଁ ଯୁଦ୍ଧ ସଂଗଠିତ ହେଲା, ତାହା ଫଳରେ ଉତ୍କଳର ସୋମବଂଶ ନିଶ୍ଚିହ୍ନ ହୋଇଗଲା । ଉତ୍କଳ ଜୟ କଲାପରେ କଳିଙ୍ଗର ପଶ୍ଚିମ ଦିଗରେ ଅବସ୍ଥିତ ବେଙ୍ଗିର ଚାଲୁକ୍ୟ ବଂଶୀୟ ରାଜାଙ୍କୁ ପରାସ୍ତ କରି ତାଙ୍କ ରାଜ୍ୟ ମଧ୍ୟ କଳିଙ୍ଗରେ ମିଶାଇ ଦେବାରୁ ପୂର୍ବ ଦିଗରେ ଗଙ୍ଗାନଦୀ ଠାରୁ ପଶ୍ଚିମରେ ଗୋଦାବରୀ ପର୍ଯ୍ୟନ୍ତ ସମସ୍ତ ସାମ୍ରାଜ୍ୟ କଳିଙ୍ଗର ଅନ୍ତର୍ଭୁକ୍ତ ହେଲା । ଏହା ଫଳରେ ପ୍ରଚୁର ଧନ ସମ୍ପଦ ଉଭୟ ରାଜ୍ୟରୁ ବୋହିଆଣି ବହୁ ସଂଖ୍ୟାରେ ଧର୍ମକାର୍ଯ୍ୟ ତଥା ମନ୍ଦିର ନିର୍ମାଣରେ ତାହା ବ୍ୟୟ କରିଥିଲେ । ସେତେବେଳେ ତାଙ୍କର ଉପାଧି ଥିଲା "ନବ ନବତି ସହସ୍ର କୁଞ୍ଜରାଧୀଶ୍ୱର" । ବହୁ ସଂଖ୍ୟାରେ ଦୁର୍ଗମାନ ନିର୍ମାଣ କରି ସେ ନିଜ ସାମ୍ରାଜ୍ୟକୁ ସୁରକ୍ଷିତ କରିପାରିଥିଲେ । ତାଙ୍କ ପ୍ରଶସ୍ତିରେ ନିମ୍ନୋକ୍ତ ଶ୍ଳୋକଟି ଲେଖା ହେଲା—

"ପୂର୍ବସ୍ୟାଂ ଦିଶି ପୂର୍ବମୁତ୍କଳପତିଂ ରାଜ୍ୟେ ନିଧାୟାଦ୍‌ଭୁତଂ
ପଶ୍ଚାତ୍ ପଶ୍ଚିମ ଦିକ୍‌ତଟେ ବିଘଟିତଂ ବେଙ୍ଗୀଶମପ୍ୟେତୟୋଃ
ଲକ୍ଷ୍ମୀବିନ୍ଦନ ମାଳିକାମିବ ଜୟ ଶ୍ରୀତୋରଣ ସ୍ତମ୍ଭୟୋ-
ର୍ବଧ୍ନାତି ସ୍ମ ସମିଦ୍ଧ କୀର୍ତ୍ତି ବିଭବଃ ଶ୍ରୀଗଙ୍ଗଚୂଡ଼ାମଣି ।"

୧୧୧୨ ଖ୍ରୀଷ୍ଟାବ୍ଦରେ ଚୋଡ଼ଗଙ୍ଗଙ୍କ ସାମ୍ରାଜ୍ୟ ପ୍ରସାରିତ ହେବାରୁ ସେ ନିଜ ରାଜଧାନୀ କଳିଙ୍ଗନଗରରୁ ଉଠାଇ ଆଣି ମହାନଦୀ ତଟରେ ସ୍ଥାପନ କଲେ ଓ ସେଥିର ନାମ ଦେଲେ 'ବାରାଣସୀ କଟକ' ।

---

୧ । O. H. R. J., Vol. V No. 1 pp 1—100 ff.

ଉତ୍କଳର ସୋମବଂଶୀ ରାଜା କର୍ଣ୍ଣଦେବ ଦୁର୍ବଳ ହୋଇଥିବାରୁ ବଙ୍ଗର ପ୍ରବଳ ପରାକ୍ରାନ୍ତ ପାଳ ବଂଶୀୟ ମହାରାଜା ରାମପାଳଙ୍କ 'ସାମନ୍ତ ଚକ୍ର'ର ସେ ଜଣେ ସାମନ୍ତ ହୋଇଥିବାର ଜଣାଯାଏ । ତେଣୁ ତାଙ୍କ ସପକ୍ଷରେ ରାମପାଳ କଳିଙ୍ଗ ବିରୁଦ୍ଧରେ ଅଭିଯାନ କରିବାକୁ ଉଦ୍ୟତ ହେଲେ । ଏଣୁ ଚୋଡଗଙ୍ଗ ବଙ୍ଗରାଜାଙ୍କ ବିରୁଦ୍ଧରେ ଅଭିଯାନ ଚଳାଇ ଗଙ୍ଗା ତଟବର୍ତ୍ତୀ ଆରମ୍ୟାନଗର (ଆଧୁନିକ ଆରାମବାଗ୍) ଅଧିକାର କରି ସେଠାରୁ ମନ୍ଦାରଗଡ ଅବରୋଧ କଲେ । ସେଠାରେ ମନ୍ଦାରର ରାଜାଙ୍କୁ ଯୁଦ୍ଧରେ ସେ ନିହତ କରିଥିବା ପ୍ରସଙ୍ଗ ନିମ୍ନୋକ୍ତ ଶ୍ଳୋକ (ପ୍ରଶସ୍ତି)ରୁ ପ୍ରମାଣିତ ହୋଇଛି—

"ଆରମ୍ୟା ନଗରନ୍ତ୍ରୁ କଳିଙ୍ଗଜବଳ ପ୍ରଥୁ ଭ୍ରଭଗ୍ନୀକୃତ
ପ୍ରାକାରାସ୍ୟୁତ ତୋରଣା ପ୍ରଭୃତନୋ ଗଙ୍ଗା ତଟସ୍ଥାଦ୍ଧତଃ ।
ପାର୍ଥା ତ୍ରୈଯିଁଧ୍ୱ ଜନ'ସ୍ୱକୃତ ଲସଦ୍ରାଧେୟ-ଗାଧାକୃତ
ର୍ମନ୍ଦରାଧିପତ ଗ'ତୋ ରଣଭୂବୌ ଗଙ୍ଗେଶ୍ୱରନୁଦ୍ରୁତଃ ॥" (୧)

ଏଥିରୁ ସ୍ପଷ୍ଟ ପ୍ରମାଣିତ ହୁଏ ଯେ, ବଙ୍ଗର ମହାରାଜା (ମନ୍ଦରାଧିପତି) ପାଳ ବଂଶୀୟ ମହାରାଜାଙ୍କୁ ସେ ନିହତ କରି ପଶ୍ଚିମ ବଙ୍ଗର ଆଧୁନିକ ହୁଗୁଳିଜିଲ୍ଲା ଅଧିକାର କରିଥିଲେ । କାରଣ ସେଠାରେ ଅବସ୍ଥିତ ଆରାମବାଗ୍ ଏବଂ ମନ୍ଦାରଗଡ ଧ୍ୱଂସ କଲା ପରେ ବୋଧହୁଏ ସେନବଂଶୀୟ ମହାରାଜ ବିଜୟସେନଙ୍କୁ ସେ ସାହାଯ୍ୟ କରିଥିଲେ ।

ବିଜୟସେନଙ୍କ ରାଜତ୍ୱ ପ୍ରାପ୍ତ ୧୧୧୯ ଖ୍ରୀଷ୍ଟାବ୍ଦରେ ଶେଷ ହୋଇଥିଲା । ତେଣୁ ଚୋଡଗଙ୍ଗଙ୍କର ବଙ୍ଗ ବିଜୟ ସେତିକିବେଳେ ସମ୍ପନ୍ନ ହୋଇଥିବା ସମ୍ଭବ । ବିଜୟ ସେନ ନିଜକୁ "ଚୋଡ଼ଗଙ୍ଗ ସଖା" ବୋଲି ଗର୍ବ କରୁଥିବା ଜଣାଯାଏ । ଏହା ଦେଓପାରା ତାମ୍ର-ଶାସନରୁ ପ୍ରମାଣିତ ହୋଇଛି । (୨)

ଚୋଡ଼ଗଙ୍ଗ ଉତ୍କଳ ଓ ବଙ୍ଗ ଜୟକରି ତାଙ୍କ ରାଜ୍ୟ ଗଙ୍ଗାନଦୀ ପର୍ଯ୍ୟନ୍ତ ବିସ୍ତାର କରିଥିଲେ ସୁଦ୍ଧା, ଅଧିକୃତ ଅଞ୍ଚଳରେ ଶାନ୍ତି ଓ ସ୍ଥିରତା କିଛି କାଳ ପର୍ଯ୍ୟନ୍ତ ପ୍ରତିଷ୍ଠିତ ହୋଇପାରି ନଥିଲା । ତେଣୁ ମହାନଦୀତଟ ସ୍ଥିତ ବାରଣସି-କଟକରେ କଳିଙ୍ଗର କେତେକ ସୈନ୍ୟଙ୍କୁ ରଖାଇ ନିଜେ ସପରିବାରେ କଳିଙ୍ଗ ନଗରସ୍ଥ ପୈତୃକ ରାଜଧାନୀରେ ୧୧୨୭ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ବାସ କରିଥିବା ଅନୁମିତ ହୁଏ । ଅଭିଲେଖମାନଙ୍କରୁ

---

୧ । O. H. R. J., Vol. V. Nos. 1 and 2, pp 12-13

୨ । Deopara Inscription, 19th verse, Ins. of Bengal, Vol. III, p 480 f.

ଜଣାଯାଇଛି ଯେ ତାଙ୍କ ଅନ୍ତଃପୁରରେ ଅନ୍ୟୂନ ପଞ୍ଚବିଂଶ ସଂଖ୍ୟାରେ ରାଣୀମାନେ ଥିବାରୁ ରାଜପ୍ରାସାଦଟି ଉତ୍ସବ କୋଲାହଳରେ ମୁଖରିତ ହେଉଥିଲା । ଚୋଡ଼ଗଙ୍ଗ ନିଜେ 'ପରମ ମାହେଶ୍ୱର', 'ପରମ ବୈଷ୍ଣବ' ଓ 'ପରମ ବ୍ରାହ୍ମଣ୍ୟ' ଉପାଧି ବ୍ୟବହାର କରିଥିବାରୁ ସେ ଶୈବ, ବୈଷ୍ଣବ ଓ ଶାକ୍ତ ଗୁରୁମାନଙ୍କଠାରୁ ମନ୍ତ୍ରଦୀକ୍ଷା ଗ୍ରହଣ କରିଥିଲେ । ତାଙ୍କର ଶୈବ ଗୁରୁଥିଲେ, ମୁଖଲିଙ୍ଗସ୍ଥିତ ମଧୁକେଶ୍ୱର-ମନ୍ଦିରରେ ଜଣେ ସାଧୁ ଏବଂ ବୈଷ୍ଣବ ତଥା ବ୍ରାହ୍ମଣ୍ୟ ଗୁରୁମାନେ ରହୁଥିଲେ, ଶ୍ରୀକୂର୍ମକ୍ଷେତ୍ରସ୍ଥ ବିଷ୍ଣୁ ମନ୍ଦିରରେ । ତେଣୁ ସେହି ସେହି ମନ୍ଦିରଗୁଡ଼ିକରେ ପର୍ବ-ପର୍ବାଣି ଯଥାବିହିତ ଭାବେ ପାଳିତ ହେଉଥିଲା ।

ଚୋଡ଼ଗଙ୍ଗ ସର୍ବପ୍ରଥମେ ସପରିବାରେ ଉତ୍କଳର ବାରାଣସୀ-କଟକସ୍ଥ ରାଜପ୍ରାସାଦରେ ୧୧୨୭ ଖ୍ରୀଷ୍ଟାବ୍ଦରେ ବାସ କରିଥିବା ସମ୍ଭବ । କାରଣ ସେତେବେଳେ ରାଜ୍ୟରେ ଶାନ୍ତି ଓ ସ୍ଥିରତା ଦେଖା ଦେଇଥିଲା । ତାଙ୍କର ସର୍ବପ୍ରଥମ 'ଅଙ୍କ' ପ୍ରଚଳିତ ହେଲା, ଶ୍ରୀକ୍ଷେତ୍ର (ପୁରୀ)ରେ ଶ୍ରୀ ପୁରୁଷୋତ୍ତମଙ୍କ ସମ୍ମୁଖରେ ୧୦୫୦ ଶକାବ୍ଦ (୧୧୨୮ ଖ୍ରୀଷ୍ଟାବ୍ଦ)ରେ । ଏ ଉପଲକ୍ଷରେ ଶ୍ରୀ ପୁରୁଷୋତ୍ତମଙ୍କ ପାଇଁ ଏକ 'ଅମୁଣିଆ ଭୋଗ' ସେ ଦାନ କରିଥିବା ପ୍ରସଙ୍ଗ ମୁକ୍ତିମଣ୍ଡପ ନିକଟସ୍ଥ ନୃସିଂହ ମନ୍ଦିରର ଏକ ଶିଳାଲିପିରେ ଖୋଦିତ ହୋଇଅଛି । (୧)

ଚୋଡ଼ଗଙ୍ଗଙ୍କ ମୁଖ୍ୟ ବୈଷ୍ଣବ ଗୁରୁଙ୍କ ସଂଜ୍ଞା ଥିଲା "ଶ୍ରୀପାଦ" । ଏକଦା ସେ ୧୧୩୪ ଖ୍ରୀଷ୍ଟାବ୍ଦରେ, ଅର୍ଥାତ୍ ଚୋଡ଼ଗଙ୍ଗଙ୍କ ୬୫ ଅଙ୍କରେ, କାର୍ତ୍ତିକ ପୂର୍ଣ୍ଣିମା ପୁଣ୍ୟତିଥିରେ ଗଙ୍ଗାସ୍ନାନ କରି ଫେରି ଆସିଲା ପରେ ଚୋଡ଼ଗଙ୍ଗ ସ୍ୱୀୟ ଗୁରୁଙ୍କ ସମ୍ମାନାର୍ଥେ କଳିଙ୍ଗର ବହାର ବାଡ଼ ଅଞ୍ଚଳରେ 'ଆଗ୍ରୁର୍ଘ-ଭୋଗ' ନାମକ ଭୂମିଦାନ ତାଙ୍କୁ ଦାନ କରିଥିବା ବିଷୟ ଏକ ତେଲୁଗୁ ଶିଳାଲେଖରୁ ଜଣାଯାଇଛି । ନିମ୍ନରେ ତାହା ଉଦ୍ଧୃତ ହେଲା—

> "ଶ୍ରୀମଦନନ୍ତ ବର୍ମ ଦେବର ପ୍ରବର୍ଦ୍ଧମାନ ବିଜୟ ରାଜ୍ୟ ସଂବତ୍ସରଂବୁଲୁ ୬୫ଗୁ ଶ୍ରାହି ରୁଳା ଶୁକ୍ଲ କାର୍ତ୍ତିକ ପୂର୍ଣ୍ଣମୀୟୁ ଗୁରୁବାର ମୁନ ବହାର ବାଡ଼ବାଟ ଶ୍ରୀ ପାଦମୁଲୁ ଗଙ୍ଗା ସ୍ନାନମୁ ସେୟୁନା ଅବସର ମୁନା ଅଲ୍ଲିଂ (?) ଚୋଡ଼ଗଙ୍ଗ ରାଜୁ ଶ୍ରୀପାଦମୂଲକୁ ବିନୟମୁସେସି X X X ଆଗ୍ରୁର୍ଘ ଭୋଗମୁ ପୁଚ୍ଛେପ୍ରୁଲୁ X X X" (୨)

ଏଥିରୁ ସ୍ପଷ୍ଟ ପ୍ରମାଣିତ ହେଉଛି ଯେ, ୧୧୨୭—୧୧୩୪ ଖ୍ରୀଷ୍ଟାବ୍ଦ ମଧ୍ୟରେ ଚୋଡ଼ଗଙ୍ଗ ଅଧିକୃତ ସାମ୍ରାଜ୍ୟ ଗଙ୍ଗାନଦୀ ପର୍ଯ୍ୟନ୍ତ ଜୟପଦ ହୋଇଥିଲା । ତେଣୁ ସେ ମହାନଦୀ ତଟବର୍ତ୍ତୀ ବାରାଣସୀ-କଟକରେ ସପରିବାରେ ବାସ କରିବାକୁ ଲାଗିଲେ ।

---

୧ । J. T. P. O. S.J, P. 5

୨ । I. O., Vol. III, Pt. I, PP 200—201 ff

ତାଙ୍କ ପୁତ୍ରମାନଙ୍କ ମଧ୍ୟରେ ଜ୍ୟେଷ୍ଠପୁତ୍ର କାମାର୍ଣ୍ଣବ ଦେବଙ୍କର ମୂର୍ଦ୍ଧାଭିଷେକ ଶ୍ରୀକ୍ଷେତ୍ରସ୍ଥ ଶ୍ରୀ ପୁରୁଷୋତ୍ତମଙ୍କ ସମ୍ମୁଖରେ ସମ୍ପନ୍ନ କରି ପୁତ୍ର ହସ୍ତରେ ରାଜ୍ୟ-ଭାର ସମର୍ପଣ କଲେ ଏବଂ ନିଜେ ଶ୍ରୀକ୍ଷେତ୍ରସ୍ଥ ରାଜ ପ୍ରାସାଦରେ ରହି ଶ୍ରୀପୁରୁଷୋତ୍ତମଙ୍କ ସେବାରେ ଜୀବନର ଅବଶିଷ୍ଟ କାଳ କଟାଇ ଦେବାକୁ ଲାଗିଲେ ।

ଏଠାରେ କହିବା ଆବଶ୍ୟକ ଯେ, ଚୋଡ଼ଗଙ୍ଗଙ୍କ ଶୈଶବ ଅବସ୍ଥାରେ ଉପଯୁକ୍ତ ଗୁରୁଙ୍କଠାରୁ ସେ ସଂସ୍କୃତ ସାହିତ୍ୟରେ ପାଣ୍ଡିତ୍ୟ ଲାଭ କରିଥିଲେ । ଏଣୁ ତାଙ୍କ ପ୍ରଶସ୍ତି-ଲେଖକମାନେ ତାଙ୍କୁ "କପଟ କାଳିଦାସ" ବୋଲି ଶିଳାଲିପିରେ ଉଲ୍ଲେଖ କରି ଅଛନ୍ତି । ସେ କେବଳ ସାହିତ୍ୟରେ ନୁହେଁ, ଧର୍ମଶାସ୍ତ୍ର, ରାଜନୀତି ଓ ଦର୍ଶନ ଶାସ୍ତ୍ରରେ ମଧ୍ୟ ଯଥେଷ୍ଟ ଜ୍ଞାନ ଲାଭ କରିଥିବାରୁ ତାତ୍କାଳୀନ ପଣ୍ଡିତମାନେ ତାଙ୍କ ସଙ୍ଗେ ତର୍କରେ ପରାଜିତ ହେଉଥିଲେ । ନୃସିଂହ ମନ୍ଦିରର ଦ୍ୱାରଦେଶରେ ତାଙ୍କର ଏହି ଗୁଣାବଳୀ ସମ୍ବଳିତ ଏକ ଦୀର୍ଘ ପ୍ରଶସ୍ତି ଶିଳାଲେଖରେ ଖୋଦିତ ହୋଇଅଛି । ନିମ୍ନରେ ସେଥିର ଏକ ଅଂଶ ଉଦ୍ଧୃତ ହେଲା—

> ଶ୍ରୀ ପରମମାହେଶ୍ୱର—ପରମଭଟ୍ଟାରକ—ଗଙ୍ଗକୁଳତିଳକ—ତ୍ରିକଳିଙ୍ଗ ଅଧିପତି ବୀର ରାଜାଣ-ଦର୍ପଦଳନାପର—ପରମେଶ୍ୱର ସଖ୍ୟ—ସାକାଂକ୍ଷୋପକାଂକ୍ଷରତା ପ୍ରାବୈଦ୍ୟ—ବିପକ୍ଷ ପ୍ରତିବାଦ—ବାରଣ—କେଶରୀ—ବିକଳ୍ପ—ମୀମାଂସା—କଳା—କଳାପ ବିବରଣାଭିନବ ଜଗଦେକ ପୂର୍ଣ୍ଣାବତାରଃ ସକଳ—କାବ୍ୟ କଳା ମଧୁରାଳାପ କଳାଷାରୂପ—ନିପୁଣ—କପଟ କାଳିଦାସଃ ରାଜନୀତି—ନବନିରୂପଣ—କଳି କାଳାବତାରଃ ବର୍ଣ୍ଣାଶ୍ରମାସ୍ତ୍ରଗୁରୁକୋପାଧି—ବିଦିତ ଶ୍ରୌତ—ସ୍ମାର୍ତ୍ତ କର୍ମୀ ଧୃଷ୍ଟ—ଦିକ୍‌ପାଳ—ଚନସ୍ୱାବତାରଃ । ପ୍ରସ୍ତୋକ୍ତକୃତ କୀର୍ତ୍ତି ସମ୍ପାଦନ ଦାଶରଥି—ଭଗୀରଥ୍ୟାଦି ମହୀକ୍ଷିତୀ......ଶ୍ରୀ ଚୋଡ଼ଗଙ୍ଗ-ଦେବଃ ମହୀପତି ପୁରନ୍ଦର ହିରଣ୍ୟରୁ ଶ୍ରୀରାମ ସମସ୍ୟ ଶାସ୍ୟତୌ ଯଶଃ......" (୩)

ସାଧାରଣତଃ ରାଜପ୍ରଶସ୍ତିମାନଙ୍କରେ ଅତିରିକ୍ତ ଭାବେ ପ୍ରଶଂସା କରାଯାଇଥାଏ । ତଥାପି ସେଥିରେ ବର୍ଣ୍ଣିତ ହୋଇଥିବା ସମସ୍ତ ଅଂଶ ପ୍ରତ୍ୟାଖ୍ୟାନ କରାଯାଇ ନପାରେ । ଚୋଡ଼ଗଙ୍ଗଙ୍କର ପ୍ରଶସ୍ତିରେ କିଛି ଅତିଶୟୋକ୍ତି ବର୍ଣ୍ଣିତ ହୋଇଥିଲେ ହିଁ ରାଜନୀତି ଓ ଧର୍ମଶାସ୍ତ୍ରରେ ତାଙ୍କର ପାରଦର୍ଶିତାକୁ ଆମେ ଅସତ୍ୟ ବୋଲି କହି ନପାରୁ । ସେ ମହାବୀର ହୋଇ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ରାଜ୍ୟ ବିସ୍ତାର କରିଥିଲେ ହିଁ ସଂସ୍କୃତ, ସାହିତ୍ୟ ଏବଂ ଧର୍ମଶାସ୍ତ୍ରରେ ସେ ଅଗାଧ ଜ୍ଞାନ ପାଇଥିବା ସୁନିଶ୍ଚିତ ।

---

୩ । Inscription of temples of Puri & origin of Sri Jagannath Vol. I PP 92.

ତେଣୁ ସେ ଉତ୍କଳରେ ତାଙ୍କ ରାଜଧାନୀ ପ୍ରତିଷ୍ଠା କରି ଯେତେବେଳେ ସିଂହାସନରେ ବସିଲେ, ସେତେବେଳେ ଉତ୍କଳର ପ୍ରାଚୀନ ପଣ୍ଡିତ ଏବଂ କଳିଙ୍ଗରୁ ତାଙ୍କ ସଙ୍ଗେ ଆସିଥିବା ଦରବାରି ପଣ୍ଡିତମାନଙ୍କ ମଧ୍ୟରେ ଗୁରୁତର ବିଭେଦ ସୃଷ୍ଟି ହୋଇଥିବା ସମ୍ଭବ । କାରଣ ଉତ୍କଳର ଅଧିକାଂଶ ପ୍ରାଚୀନ ପଣ୍ଡିତ ଥିଲେ ଶଙ୍କରାଚାର୍ଯ୍ୟଙ୍କ ଅଦ୍ୱୈତ-ମତର ସମର୍ଥକ । କିନ୍ତୁ ଦକ୍ଷିଣରୁ ଚୋଡ଼ଗଙ୍ଗଙ୍କ ସଙ୍ଗେ ରାଜଦରବାରରେ ଆସନ ପାଇଥିବା ପଣ୍ଡିତମାନେ ଅଧିକାଂଶ ରାମାନୁଜଙ୍କ ଦ୍ୱୈତା ଦ୍ୱୈତ ମତକୁ ସମର୍ଥନ କରୁଥିଲେ । ଏଣୁ ବେଦାନ୍ତର 'ବ୍ରହ୍ମସୂତ୍ର'ର ବିଭିନ୍ନ ଭାଷ୍ୟକୁ ଅବଲମ୍ବନ କରିଥିବା ପଣ୍ଡିତମାନଙ୍କ ମଧ୍ୟରେ ତର୍କ ବିତର୍କ ସୃଷ୍ଟି ହୋଇଥିବା ଅନୁମେୟ । ଏହା ବ୍ୟତୀତ, ରାଜ୍ୟରେ ଦେବତାଙ୍କ ଉପାସନାକୁ ଭିତ୍ତି କରି ଶୈବ, ଶାକ୍ତ, ବୈଷ୍ଣବମାନଙ୍କ ମଧ୍ୟରେ ବିଭେଦ ସୃଷ୍ଟି ହୋଇଥିବ । ଏହା ବ୍ୟତୀତ ଶୈବମାନେ କେତେକ ବୈଦିକ ଧର୍ମୀ ଓ ଆଉ କେତେକ ଲକୁଲୀଶ-ପନ୍ଥୀ ବା ତାନ୍ତ୍ରିକ ଶୈବ ହୋଇ ବେଦକୁ ପ୍ରତ୍ୟାଖ୍ୟାନ କରୁଥିଲେ । ସେପରି ବୈଷ୍ଣବମାନଙ୍କ ମଧ୍ୟରେ ମତଭେଦ ସୃଷ୍ଟି ହୋଇ କେତେକ ଶ୍ରୀରାମଙ୍କ ଉପାସକ ଏବଂ ଆଉ କେତେକ ନାରାୟଣ ବା ନୃସିଂହ ଉପାସକ ହୋଇଥିଲେ । ସେମାନଙ୍କ ମଧ୍ୟରେ ଅଧିକାଂଶ ଥିଲେ 'ଭାଗବତ ଧର୍ମୀ' ଅର୍ଥାତ୍ ଗୋପାଳକୃଷ୍ଣଙ୍କ ଉପାସକ । ଏପରିଭାବେ ହିନ୍ଦୁ ସମାଜର ବିଭିନ୍ନ ଗୋଷ୍ଠୀ ପରସ୍ପର ମଧ୍ୟରେ ବିଭେଦ ସୃଷ୍ଟି କରିଥିଲେ । ଏହା ବ୍ୟତୀତ ବୌଦ୍ଧ ଧର୍ମାବଲମ୍ବୀମାନେ ଏକ ସ୍ୱତନ୍ତ୍ର ଗୋଷ୍ଠୀରୂପେ ବେଦାଧ୍ୟାୟୀ ବ୍ରାହ୍ମଣ ତଥା ଯଜ୍ଞରେ ପଶୁବଳୀ ବିରୁଦ୍ଧରେ ଲଢ଼ୁଥିଲେ । ଏହାଫଳରେ ବ୍ରାହ୍ମଣ ପଣ୍ଡିତମାନେ ପରସ୍ପର ବାଦ-ବିବାଦରେ ଲିପ୍ତ ହେବାରୁ ରାଜସଭାରେ ଅଶାନ୍ତି ଦେଖାଦେଲା । ଯେଉଁ ବ୍ରାହ୍ମଣ-ମାନେ ଶାସନ କାର୍ଯ୍ୟରେ ନିଯୁକ୍ତ ହୋଇ ସାମ୍ରାଜ୍ୟର ରାଜନୀତି ସୁପରିଚାଳନା କରୁଥିଲେ, ସେମାନଙ୍କୁ ଏକତା ପାଶରେ କିପରି ଆବଦ୍ଧ କରାଯିବ, ଏହି ଚିନ୍ତା ନିଶ୍ଚୟ ମହାରାଜା ଚୋଡଗଙ୍ଗଙ୍କୁ ବିବ୍ରତ କରିଥିବ । ତେଣୁ ସେ 'ବିକଳ୍ପ ମୀମାଂସା' ଉତ୍ତମରୂପେ ଅଧ୍ୟୟନ କରି ନିଜେ 'ନବ ରାଜନୀତି' ରାଜ୍ୟରେ ପ୍ରଚଳନ କଲେ । କେବଳ ସେତିକି ନୁହେଁ ଶ୍ରୀମନ୍ଦିରରେ ପ୍ରତିଷ୍ଠିତ ଶ୍ରୀ ପୁରୁଷୋତ୍ତମଙ୍କ ସଙ୍ଗେ ଶ୍ରୀ ସଙ୍କର୍ଷଣ ଏବଂ ଦେବୀ ସୁଭଦ୍ରାଙ୍କ ଦାରୁମୂର୍ତ୍ତି ସେ ସ୍ଥାପନ କରି ବୈଷ୍ଣବ ବିଗ୍ରହ ସହିତ ଶିବରୂପୀ ସଙ୍କର୍ଷଣ (ବଳଭଦ୍ର) ଓ ଦେବୀରୂପିଣୀ ସୁଭଦ୍ରାଙ୍କ ମୂର୍ତ୍ତି ପ୍ରତିଷ୍ଠା କରି ସମସ୍ତ ଧର୍ମର ଏକତ୍ରୀକରଣ କଲେ । ଏଥିରେ ପଣ୍ଡିତମାନଙ୍କ ସଙ୍ଗେ ବେଦାନ୍ତଶାସ୍ତ୍ର ନିଜେ ଆଲୋଚନା କରି, ସମସ୍ତଙ୍କର ସମର୍ଥନ ପାଇ ପାରିଥିବା ଜଣାଯାଏ । କେବଳ ହିନ୍ଦୁ ସମାଜ ନୁହେଁ, ବୌଦ୍ଧସମାଜକୁ ମଧ୍ୟ ଏକତ୍ରିତ କରିବା ନିମନ୍ତେ ବୁଦ୍ଧଦେବଙ୍କୁ 'ଦଶାବତାର' ମଧ୍ୟରେ ପୂର୍ବରୁ ଯୋଗ କରାଯାଇଥିଲା । ତାହା ସ୍ପଷ୍ଟ ରୂପେ ପ୍ରକାଶ କରିବା ପାଇଁ ଶ୍ରୀ ପୁରୁଷୋତ୍ତମଙ୍କ ମନ୍ଦିର ଗାତ୍ରରେ ଦଶାବତାର-ମୂର୍ତ୍ତିଗୁଡିକ ସ୍ଥାପିତ ହେଲା । ସବୁ ବିଗ୍ରହଙ୍କ କେନ୍ଦ୍ରରେ

ଶ୍ରୀ ପୁରୁଷୋତ୍ତମ, ଶ୍ରୀ ବଳଭଦ୍ର ଓ ଦେବୀ ସୁଭଦ୍ରାଙ୍କୁ ମନ୍ଦିର ଗର୍ଭରେ ସ୍ଥାପନ କରି ପୂଜା କରାଗଲା । ଏହାଫଳରେ ବିଭିନ୍ନ ମତବାଦୀ ଏବଂ ସମ୍ପ୍ରଦାୟ ଏକତ୍ରିତ ହୋଇ ଶ୍ରୀ ମନ୍ଦିରକୁ ଏକ 'ସର୍ବ ସମନ୍ୱୟ' (ଧର୍ମ) ପବିତ୍ର ଅନୁଷ୍ଠାନ ରୂପେ ଗ୍ରହଣ କଲେ ।

ମହାରାଜା ଚୋଡ଼ଗଙ୍ଗ ତାଙ୍କର ସେହି ମହାନ୍ କୀର୍ତ୍ତିକୁ ଅଧିକ ଜନପ୍ରିୟ କରିବା ସକାଶେ ଗୋଟିଏ ବିଶାଳ ପ୍ରାସାଦ ଶ୍ରୀକ୍ଷେତ୍ରରେ ଗଠନ କଲେ । ଉପଯୁକ୍ତ ଶିଳ୍ପୀ ତଥା କର୍ମକାରମାନଙ୍କୁ ନବନିର୍ମିତ ମନ୍ଦିର ଗଠନ କାର୍ଯ୍ୟରେ ନିଯୁକ୍ତ କରି ନିଜେ ସେଥିର ଉଦ୍‌ଘାଟନ ପାଇଁ ଶ୍ରୀକ୍ଷେତ୍ରସ୍ଥ ରାଜପ୍ରାସାଦରେ ରହି ଶେଷଜୀବନ କଟାଇବାକୁ ସ୍ଥିର କଲେ । ତେଣୁ ସେ ବୃଦ୍ଧ ବୟସରେ ରାଜ୍ୟର ଶାସନଭାର ପୁତ୍ର ହସ୍ତରେ ଛାଡ଼ି ଦେବାକୁ ସ୍ଥିର କରିଥିବା ଯୁକ୍ତିଯୁକ୍ତ । ଗଙ୍ଗରାଜାମାନଙ୍କ ଦାନପତ୍ର (ତାମ୍ର ଶାସନ) ମାନଙ୍କରେ ଏ ସମ୍ପର୍କରେ ନିମ୍ନୋକ୍ତ ଶ୍ଳୋକଟି ଲେଖା ହୋଇଥିବା ଦେଖିବାକୁ ମିଳେ—

"ବେଦର୍ତ୍ତୁ ବ୍ୟୋମଚନ୍ଦ୍ର ପ୍ରମିତ ଶକସମାଃ ପ୍ରାପ୍ତକାଳେ ଦିନେଶେ
ବୃଷପ୍ରେଽନ୍ୟ ଗହ୍ନୋପେ କଳିବିତରିପୁଷ୍ଟୁ ପ୍ରଭୁତ୍ୱଂ ପ୍ରାପ୍ତବତ୍ସୁ ।
ଅସ୍ମିନ୍ ମୂର୍ଦ୍ଧାଭିଷିକ୍ତେ ନୃପବରତନୟେ ସର୍ବଲୋକୈକନାଥେ
ଶ୍ରୀମତ୍ କାମାର୍ଣ୍ଣବେଶେ ଜଗଦଭିବନ୍ଦନଂ ତଦ୍‌ଦାନନ୍ଦ ପୂର୍ଣ୍ଣମ୍ ॥" *

ଅର୍ଥାତ୍ ବେଦ=୪, ଋତୁ=୬, ବ୍ୟୋମ=୦, ଚନ୍ଦ୍ର=୧ । ତାତ୍‌କାଳୀନ ଅଙ୍କ ପଦ୍ଧତି ଅନୁସାରେ ଏକକ ସଂଖ୍ୟା ବାମ ଦିଗରୁ ଆରମ୍ଭ ହେଉଥିଲା (ଅଙ୍କାନାଂ ବାମତୋ ଗତିଃ) ସୁତରାଂ ଏହା ୧୦୬୪ ଶକାବ୍ଦ, ଅର୍ଥାତ୍ ୧୧୪୨ ଖ୍ରୀଷ୍ଟାବ୍ଦ ସଙ୍ଗେ ସମାନ । ସେ ବର୍ଷ ବୃଷମାସ (ଜୁନ୍) ଏକ ପୁଣ୍ୟତିଥିରେ ଚୋଡ଼ଗଙ୍ଗଙ୍କ ଜ୍ୟେଷ୍ଠପୁତ୍ର କାମାର୍ଣ୍ଣବ ଦେବଙ୍କର ମୂର୍ଦ୍ଧାଭିଷେକ ଶ୍ରୀ ପୁରୁଷୋତ୍ତମ (ପୁରୀ)ରେ ଅନୁଷ୍ଠିତ ହୋଇଥିଲା । ସେତେବେଳେ ରାଜ୍ୟର ବଳବାନ୍ ଶତ୍ରୁମାନଙ୍କର କ୍ଷୟ ହୋଇଥିଲା । ତେଣୁ ପ୍ରଜାମାନେ ଶାନ୍ତି ସୁଖରେ ରହିଥିଲେ ।

ପୁତ୍ର ହସ୍ତରେ ରାଜ୍ୟଭାର ଦେବା ତିନିବର୍ଷ ଆଗରୁ (ଅର୍ଥାତ୍ ୧୧୩୯ ଖ୍ରୀଷ୍ଟାବ୍ଦରେ ଚୋଡ଼ଗଙ୍ଗଦେବ ତାଙ୍କ ଗୁରୁ ଶ୍ରୀପାଦଙ୍କ ସହିତ ପବିତ୍ର କାର୍ତ୍ତିକ ପୌର୍ଣ୍ଣମୀ ଦିନ ଗଙ୍ଗାସ୍ନାନ କରିସାରି ସେଠାରେ ଗୁରୁଙ୍କ ହସ୍ତରେ "ଅଗ୍ରହାର ଭୋଗ" ନାମକ ଭୂ-ଦାନ ଅର୍ପଣ କରିଥିବା ପ୍ରସଙ୍ଗ ବିଜୟନଗରସ୍ଥ ମହାରାଜ କଲେଜରୁ ମିଳିଥିବା ଦୁଇଟି ଶିଳାଲେଖରୁ ପ୍ରକଟିତ ହୋଇଛି ।

* Vide S. I. I., Vol X No 690, I. O., Vol III, Pt. I, PP 200-201

ଏଣୁ ୧୧୩୫ ଖ୍ରୀଷ୍ଟାବ୍ଦ ପୂର୍ବରୁ ତାଙ୍କର ବଙ୍ଗ ବିଜୟ ସମ୍ପୂର୍ଣ୍ଣ ହୋଇଥିଲା । ବଙ୍ଗର ବଳବତ୍ତରିପୁ ଥିଲେ, ରାମପାଳ ଓ ତାଙ୍କ ସାମନ୍ତ ରାଜାମାନେ ।

ଚୋଡ଼ଗଙ୍ଗଙ୍କ ଅପୂର୍ବ ରାଜନୀତି ଓ ଧର୍ମନୀତି ହେତୁ ପାୟ ୩୦୦ ବର୍ଷରୁ ଊର୍ଦ୍ଧ୍ୱ କାଳ ତାଙ୍କ ବଂଶଧରମାନେ ତ୍ରିକଳିଙ୍ଗ ସାମ୍ରାଜ୍ୟରେ ସ୍ୱାଧୀନ ସମ୍ରାଟ ରୂପେ ରାଜତ୍ୱ କରିପାରିଥିଲେ । ସେହି ରାଜାମାନଙ୍କର ପ୍ରଧାନ ଇଷ୍ଟଦେବତା ରୂପେ ଶ୍ରୀ ପୁରୁଷୋତ୍ତମ-ଜଗନ୍ନାଥ ପ୍ରତିଷ୍ଠା ଲାଭ କରିଥିଲେ । ତେଣୁ ମହାରାଜା ଚୋଡ଼ଗଙ୍ଗଙ୍କର ଅବସର କାଳରେ ଯେଉଁ ତିନି ଠାକୁରଙ୍କ ପ୍ରତିମା ଶ୍ରୀକ୍ଷେତ୍ରରେ ସ୍ଥାପିତ ହୋଇଥିଲା, ସେଥିର ମନ୍ଦିରଟି (ଆଧୁନିକ ନୃସିଂହ ମନ୍ଦିର) କ୍ଷୁଦ୍ର ଓ ଜୀର୍ଣ୍ଣ ହୋଇଥିବା ଦୃଷ୍ଟିରୁ ଗୋଟିଏ ବିରାଟ ମନ୍ଦିର ସେଥି ନିକଟରେ ଗଠିତ ହେଲା । କିନ୍ତୁ ସେଥିର ନିର୍ମାଣ କାର୍ଯ୍ୟ ପୂର୍ଣ୍ଣ ହୋଇ ନଥିବାରୁ ସେହି ପ୍ରତିଷ୍ଠିତ ତିନି ଠାକୁରଙ୍କୁ ନୂତନ ମନ୍ଦିରରେ ସ୍ଥାପନ କରାଯାଇ ନଥିଲା । ତଥାପି ପ୍ରାଚୀନ କାଳର କଳିଙ୍ଗର ମଧୁକେଶ୍ୱର, ଶ୍ରୀକୂର୍ମ, ଶ୍ରୀ ବରାହନୃସିଂହ (ସିଂହାଚଳ) ମନ୍ଦିରମାନଙ୍କରେ ଯେଉଁ ପଦ୍ଧତିରେ ଦେବାରାଧନା ସଂପନ୍ନ ହୁଏ, ସେହି ନିୟମ ରକ୍ଷାକରି ପୁରୀର ଶ୍ରୀମନ୍ଦିରରେ ମଧ୍ୟ ସେ ତାହା ପ୍ରବର୍ତ୍ତିତ କଲେ ।

ମନ୍ଦିରମାନଙ୍କରେ ଦୈନିକ ଧୂପ ଓ ଶିଙ୍ଗାର ବେଶ ପରେ ଦେବଦାସୀଙ୍କ ନୃତ୍ୟ ସଙ୍ଗେ ଭକ୍ତି ସଙ୍ଗୀତ ଗାନ ହେବା ଏକ ପ୍ରାଚୀନ ପଦ୍ଧତି ରହିଥିଲା । କଳିଙ୍ଗର ପ୍ରାଚୀନ ମନ୍ଦିରମାନଙ୍କରେ "ସାନି ସମ୍ପ୍ରଦାୟ" ଅର୍ଥାତ୍ "ଗୁଡି ସାନି" ※ ନୃତ୍ୟ ସଙ୍ଗୀତ କର୍ମରେ ନିଯୁକ୍ତ ହୋଇଥିବାରୁ ସେମାନଙ୍କ ଭରଣ ପୋଷଣ ପାଇଁ ଓଡ଼ିଶାର ଗଙ୍ଗବଂଶୀୟ ରାଜାମାନେ ଦାନଶାସନ ସେହି ସେହି ମନ୍ଦିରର ଶିଳାଗାତ୍ରରେ ଖୋଦିତ କରାଇଥିବା ଦେଖାଯାଏ । ସେଥିର ଏକ ଉଦାହରଣ ଦ୍ୱିତୀୟ ଭାନୁଦେବ (୧୩୦୮-୧୩୨୮) ଖ୍ରୀଷ୍ଟାବ୍ଦଙ୍କ ରାଜତ୍ୱକାଳରେ ସିଂହାଚଳ ମନ୍ଦିରରେ ପୋଟ୍ନୁରୁ କଟକରେ ବାସ କରୁଥିବା 'କଳିଙ୍ଗ-ପରୀକ୍ଷା' ପାତ୍ର ଶ୍ରୀ କୋଟିନାଥ ପଣ୍ଡା ନାମକ ଜଣେ ଓଡ଼ିଆ କର୍ମଚାରୀ, "ସାନି ସମ୍ପ୍ରଦାୟ"ଙ୍କ ନୃତ୍ୟ-ସଂଗୀତ ସକାଶେ ଗୋଟିଏ 'ବୃତ୍ତି' ନିରୂପଣ କରି ଓଡ଼ିଆ ଭାଷାରେ ଏକ ଶିଳାଲିପି ନିମ୍ନ ପ୍ରକାରେ ଲେଖାଇଥିବା ଦେଖିବାକୁ ମିଳେ :—

"ଶ୍ରୀ ବୀରଧୀରବର ଭାନୁ (ଭାନୁ) ଦେବସ୍ୟ ପ୍ରବର୍ଦ୍ଧମାନ ବିଜୟରାଜ୍ୟ ସମ୍ବତ୍ସରଂ ବୃଳୁ ସୁରୁଶାହ ମକର କୃଷ୍ଣ ୧୧ଯୁ ଶନିବାର ମୁନାଂଡୁ ପୋଟ୍ନୁରୁ-

※ ତେଲେଙ୍ଗୀ ଭାଷାରେ । ଗୁଡି—ମନ୍ଦିର; ସାନି—ନର୍ତ୍ତକୀ ।

କଟକାନନୁ ✻ କଳିଙ୍ଗ ପରୀକ୍ଷା ପାତ୍ର ଶ୍ରୀ କୋଟିନାଥ ପଣ୍ଡାଙ୍କର ମାଂଙ୍କ ସମସ୍ତ ବେହରଣ ବିଦ୍ୟମାନ ଶ୍ରୀ ନରସିଂହନାଥ ଦେବଙ୍କର ସାନୁ (ନ) ସମ୍ପ୍ରଦାୟର ନଟ୍ଟୁବ-ବୃତ୍ତିକ କଲ୍ଲା(ଲ) ନିର୍ଣ୍ଣୟ ଶିଳାଶାସନ । ଚନ୍ଦନମୋହର ଉପାର୍ଜ୍ଜିଂ ଟଳା ବୃତ୍ତି ନଚ୍ଛୁବା ବୃତ୍ତି ତନଖ୍ତା ଚନ୍ଦନମୋଶର ଅର୍ଜ୍ଜିଲ ନ୍ୟାୟେ ଏହାଙ୍କୁ ଅଧିକା ଭଗେ ୫ଏନ (?) କରି ଏହାଙ୍କୁ ଦୁଇଭଗ ( । ) ଏ ପାଞ୍ଚ ଭଗକୁ ଚବୁହି ଯେ ଯାହାର ଭଗେ ସ୍ତ୍ରାହ ସ୍ତ୍ରାହ ସାର୍ଦ୍ଧିବି । ଏ । ଏହାଙ୍କର ମୁଟରେପଣ— ବୃତ୍ତି ଏ ପାଞ୍ଚ ମଧ୍ୟେ କେ (ଯେ) ଝଡଶୋସ୍ଥି ସେ ଚରୁବର୍ତ୍ତିନ ଭୋଗ କରିବାକେ ତଲଗ୍ରନ୍ଥି ଦ୍ରବ୍ୟ ଖୀ ନ (?) ଏହାଙ୍କର ବସ (ଧସ୍ତ) ଅନ୍ୟୋନ୍ୟ ଲିଖନ ପଚମାନ ସବୁ ସୋଦ (ଶୋଧ୍ୟ) ସଙ୍ଗବାଦ ସମ୍ପ୍ରୀତ ପଣ କଲ ନିର୍ଣ୍ଣୟ ଏହା ପଜ ବେ (ବ୍ୟ) ବସ୍ଥା ( ।। ) ଏସବୁ ଖଣ୍ଡି (ଟି) ବାଏ ଚନ୍ଦ୍ରିର ସଙ୍ଗସତ୍ତ୍ୱ ବାଂଧି ଗେହ (?) ଏ । ଏ ବେ (ବ୍ୟ) ବସ୍ଥାକୁ କେ (ଯେ) ବା ଅତିକ୍ରମ କଲ୍ଲେ (ଲେ) ରାଜାଙ୍କ ଅପରାଧୀ ହୋଇ ତାହାର ବୃତ୍ତି ଅଂସ (ଶ) କୋସ୍ଥ ହୋଇ [ । ] ଏ ଅର୍ଥବନ୍ଧ ବେ (ବ) ବରଣ ସାକ୍ଷି । । ] ଏହାଙ୍କର ଅଂଶକାରଙ୍କ ଶାସନ ସମ୍ମତ । ଏଇ ନ୍ୟାୟକୁ ସ୍ୱାମି ସାକ୍ଷି । ଶ୍ରୀ ଶ୍ରୀ ଶ୍ରୀ ।" (I.O; Vol V, Pt II, P 382-3ff)

କଳିଙ୍ଗରେ ଥିବା ଦେବମନ୍ଦିରମାନଙ୍କରେ ଯେଉଁ "ସାନ-ସମ୍ପ୍ରଦାୟ"ର ନର୍ତ୍ତକ-ନର୍ତ୍ତକୀମାନେ ନୃତ୍ୟ ସଙ୍ଗୀତ ପରିବେଷଣପାଇଁ ନିଯୁକ୍ତ ହୋଇଥିଲେ ସେମାନେ ପ୍ରାୟ ଏକ ପରିବାରର ଭାଇ ଓ ଭଉଣୀ ହୋଇଥିଲେ ହିଁଙ୍କା ପ୍ରତ୍ୟେକଙ୍କ ଭରଣ ପୋଷଣ ପାଇଁ ଗଙ୍ଗବଂଶୀୟ ମହାରାଜା ଦ୍ୱିତୀୟ ଭାନୁଦେବଙ୍କ ପକ୍ଷରୁ କଳିଙ୍ଗ-ପରୀକ୍ଷା ପାତ୍ର ଶ୍ରୀ କୋଟିନାଥ ପଣ୍ଡା ନାଟ୍ୟବୃତ୍ତି ସମ୍ବନ୍ଧ ବଣ୍ଟନ କରି ତାହା 'ଅର୍ଥ ବନ୍ଧ' (Revenue Record)ରେ ଲେଖି ରଖିଥିଲେ । ସମସ୍ତଙ୍କର ଅବଗତି ନିମନ୍ତେ ଶିଳାଲିପି ମଧ୍ୟ ଖୋଦନ କରାଇ ନିର୍ଦ୍ଦିଷ୍ଟ ମନ୍ଦିର ଗାତ୍ରରେ ସଂଲଗ୍ନ କରି ଦେଇଥିଲେ । ଏହି ନିୟମ ଚୋଡ଼ଗଙ୍ଗ ଓ ତାଙ୍କ ବଂଶଧରମାନଂକ ରାଜତ୍ୱକାଳରେ ଓଡ଼ିଶାର ମୁଖ୍ୟ ଶ୍ରୀମନ୍ଦିରରେ ମଧ୍ୟ ପ୍ରଚଳିତ ହୋଇଥିଲି କହିଲେ ଅଯୁକ୍ତ ହେବ ନାହିଁ ।

ଚୋଡଗଙ୍ଗଙ୍କର ଉତ୍କଳ ଜୟପୂର୍ବରୁ ସୋମବଂଶୀୟ ରାଜାମାନଂକ ରାଜତ୍ୱ କାଳରେ ନିର୍ମିତ କେତେକ ମନ୍ଦିରରେ ମଧ୍ୟ 'ଦାରିକା' ଓ 'ବୈଶ୍ୟା'ମାନେ ନୃତ୍ୟ ପରିବେଷଣ ପାଇଁ ନିଯୁକ୍ତ ହେଉଥିଲେ । ଉଦାହରଣ ସ୍ୱରୂପ, ମହାରାଜା ଉଦ୍ୟୋତ

✻ ଏପର୍ଯ୍ୟନ୍ତ ତେଲେଙ୍ଗୀ ଭାଷାରେ ଲେଖା ହୋଇ ପରେ ଓଡ଼ିଆ ଭାଷାରେ ଶିଳାଲେଖଟି ପୂର୍ଣ୍ଣ ହୋଇଥିଲି । କିନ୍ତୁ ମଧ୍ୟେ ମଧ୍ୟେ ଅଳ୍ପ କେତୋଟି ତେଲୁଗୁ ଶବ୍ଦ ସେଥିରେ ମିଶିଛୁ ।

କେଶରୀଙ୍କ ମାତା ଓ ଯଯାତି ମହାଶିବଗୁପ୍ତଙ୍କର ରାଣୀ କୋଲାବତୀ ଦେବୀ ଭୁବନେଶ୍ୱର-ଠାରେ ବ୍ରହ୍ମେଶ୍ୱରଙ୍କ ମନ୍ଦିର ନିର୍ମାଣ କରାଇ ସେଥିରେ ନୃତ୍ୟ ସଙ୍ଗୀତ ପରିଚାଳନା ସକାଶେ ଅନେକଣ ରତ୍ନାଲଙ୍କାର ଭୂଷିତା 'ଦାରିକା'ଙ୍କୁ ନିଯୁକ୍ତ କରିଥିଲେ । ସେହି ମନ୍ଦିର ସଲଗ୍ନ ଏକ ଶିଳାଲେଖରେ ଏ ସଂପର୍କରେ ନିମ୍ନୋକ୍ତ ଶ୍ଳୋକଟି ଖୋଦିତ ହୋଇଥିବା ଦେଖାଯାଏ :—

> "ରତ୍ନାଲଂକୃତ ଭୂଷିତାଙ୍ଗ ସୁଭଗମାଦେବୀପ୍ୟମାନାଦ୍ଭୁତ ଗୀତା (ନୃତ୍ୟ) ସୁନ୍ଦରତଃ ସ୍ଥିରାଇବ କୁଚଶ୍ରେଣୀଭର ବ୍ୟାକୁଳାଃ (ସୁନ୍ଦରୀଯୌବନ) କନୀନିକା ଇବ ଦୃଶ୍ୟା ମନ୍ତ୍ରଃ ପ୍ରବିଷ୍ଟା ନୃତ୍ୟମସ୍ତେ ଚଞ୍ଚଳ ନେତ୍ରାନାଭିନୟନା ଦତ୍ତାସ୍ତସ୍ୟା-ଦାରିକାଃ ।" ※

ସେହି ମନ୍ଦିରଟି ମହାରାଜା ଉଦ୍ୟୋତକେଶରୀଙ୍କ ରାଜତ୍ୱର ୧୮ଶ ବର୍ଷରେ ଖୋଦିତ ହୋଇଥିଲା । ସୁତରାଂ ଚୋଡ଼ଗଙ୍ଗ ଉତ୍କଳ ଜୟ କଲାପରେ ଶ୍ରୀ ପୁରୁଷୋତ୍ତମଙ୍କ ପବିତ୍ର ଶ୍ରୀମନ୍ଦିରରେ ନୃତ୍ୟ-ସଙ୍ଗୀତ ପରିଚାଳନା ସକାଶେ ବାରବନିତା 'ଦାରିକା'ମାନଙ୍କୁ ନିଯୁକ୍ତ ନକରି କଳିଙ୍ଗରୁ ସଙ୍ଗୀତ ବିଦ୍ୟାରେ ପାରଦର୍ଶିତା ଲାଭ କରିଥିବା "ସାନି-ସମ୍ପ୍ରଦାୟ"ର କେତେକ ପରିବାରଙ୍କୁ ଶ୍ରୀକୂର୍ମପାଟକରୁ ଆଣାଇ ଶ୍ରୀକ୍ଷେତ୍ରରେ ସେମାନଙ୍କ ସକାଶେ ସ୍ଥାୟୀ ବ୍ୟବସ୍ଥା କରିଥିଲେ । ସେହି ସାନି-ସମ୍ପ୍ରଦାୟର ନର୍ତ୍ତକୀମାନଙ୍କୁ ତେଲେଙ୍ଗା ଭାଷାରେ 'ଗୁଡ଼ି-ସାନି' ବା 'ଗୁଡ଼ି ସେଟି' କୁହାଯାଉଥିଲା । ତେଲେଙ୍ଗା ଭାଷାରେ 'ଗୁଡ଼ି' ଶବ୍ଦର ଅର୍ଥ 'ମନ୍ଦିର' ଏବଂ 'ସାନି' ଶବ୍ଦର ଅର୍ଥ ନର୍ତ୍ତକୀ । ସେହି 'ଗୁଡ଼ିସାନି'ମାନଙ୍କୁ 'ଦେବଗଣିକା' ସଂଜ୍ଞାରେ ମଧ୍ୟ ଅଭିହିତ କରାଯାଉଥିଲା । ତେଣୁ ସେମାନେ 'ଦାରିକା'ଙ୍କ ପରି 'ବାରବନିତା' (ବେଶ୍ୟା) ବୃତ୍ତି କରୁନଥିଲେ । ସିଂହାଚଳ ମନ୍ଦିରରୁ ପ୍ରାପ୍ତ ଦ୍ୱିତୀୟ ଭାନୁଦେବଙ୍କ ରାଜତ୍ୱକାଳର ଯେଉଁ ଶିଳାଲେଖଟି ଉପରେ ଉଦ୍ଧୃତ ହୋଇଛି, ସେଥିରୁ ଜଣାଯାଇଛି ଯେ, ସାନି ସଂପ୍ରଦାୟର ଷାଠିଏ ଜଣ ରମଣୀ ସମସ୍ତେ ମିଶି ଦେବମନ୍ଦିରରେ ନୃତ୍ୟ ସଙ୍ଗୀତ ପରିଚାଳନା କରୁଥିଲେ । ଆଉ ମଧ୍ୟ ସେମାନଙ୍କ ମାତୃଭାଷା 'ତେଲେଙ୍ଗା' ହୋଇଥିଲେ ସୁଦ୍ଧା ଓଡ଼ିଆ ଭାଷା ସେମାନେ ଉତ୍ତମ ରୂପେ ବୁଝିପାରୁଥିଲେ । ତେଣୁ ଦେବମନ୍ଦିରରେ ସେମାନେ ଉଭୟ ଭାଷାରେ ଭକ୍ତିସଙ୍ଗୀତ ଗାନ କରିବା ସମ୍ଭବ ହେଲେ ମଧ୍ୟ ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ଚୋଡ଼ଗଙ୍ଗଙ୍କ ପରି ଜଣେ ନୈଷ୍ଠିକ ବିଷ୍ଣୁଭକ୍ତ ପଣ୍ଡିତ ପ୍ରାକୃତ ଭାଷାରେ ଭକ୍ତି-ସଙ୍ଗୀତ ଗାନ କରିବା

※ ଏହି ପ୍ରଶସ୍ତିର ଲେଖକଙ୍କ ନାମ 'ପୁରୁଷୋତ୍ତମ' । ସୁତରାଂ ସେ ବା ତାଙ୍କ ପିତା ସମ୍ଭବତଃ ବିଷ୍ଣୁଭକ୍ତ ହୋଇ ଶ୍ରୀପୁରୁଷୋତ୍ତମଙ୍କୁ ଆରାଧନା କରୁଥିଲେ ।

(I.O., Vol IV, PP 244-252 ff)

ପରିବର୍ତ୍ତେ ଶୁଦ୍ଧ ସଂସ୍କୃତ ଭାଷାରେ ସଂଗୀତ ପରିବେଷଣ କରିବା ନିମନ୍ତେ ବ୍ୟବସ୍ଥା କରିଥିଲେ । ଚୋଡ଼ଗଙ୍ଗ ରାଜତ୍ୱକାଳରେ କୌଣସି ପ୍ରାକୃତ ଭାଷା ରାଜକାର୍ଯ୍ୟରେ ବ୍ୟବହାର କରାଯାଉ ନଥିଲା । ସଂସ୍କୃତ ଭାଷାରେ କବି ଜୟଦେବଙ୍କ ରଚିତ "ଗୀତ ଗୋବିନ୍ଦ" ସର୍ବପ୍ରଥମେ ସେହି ସାନ ସମ୍ପ୍ରଦାୟଙ୍କ ଦ୍ୱାରା ଶ୍ରୀମନ୍ଦିରରେ ପରିବେଶ କରାଯାଇଥିବା ସମ୍ଭବ । ତେଣୁ ସେହି ପଦ୍ଧତି ବହୁକାଳ ପର୍ଯ୍ୟନ୍ତ ଶ୍ରୀମନ୍ଦିରରେ ଏକ ମୁଖ୍ୟନୀତି ରୂପେ ପରିଚାଳିତ ହୋଇଥିବା ଜଣାଯାଏ । କଳିଙ୍ଗର ସେହି 'ସାନ-ସମ୍ପ୍ରଦାୟ' ତଥା 'ମନ୍ଦିର-ନର୍ତ୍ତକୀ'ମାନଙ୍କ ସଙ୍ଗେ କବି ଜୟଦେବଙ୍କ ସହଯୋଗ ସମ୍ପର୍କରେ ଅଧିକ ଆଲୋଚନା ପରବର୍ତ୍ତୀ ପରିଚ୍ଛେଦରେ କରାଯିବ ।

ଚୋଡ଼ଗଙ୍ଗ ଯେଉଁ ପ୍ରାଚୀନ ମନ୍ଦିରରେ ଦାରୁମୂର୍ତ୍ତିଙ୍କୁ ସ୍ଥାପିତ କରିଥିଲେ ସେଥି ସମ୍ମୁଖରେ ନାଟ୍ୟଶାଳା ନିର୍ମିତ ହୋଇନଥିଲା । ତେଣୁ ଦେବନର୍ତ୍ତକୀମାନଙ୍କ ନୃତ୍ୟ-ସଙ୍ଗୀତ ପରିଚାଳନ ପାଇଁ ସେହି ମନ୍ଦିର ସମ୍ମୁଖରେ ଶାସ୍ତ୍ରୋକ୍ତ ପଦ୍ଧତିରେ ଗୋଟିଏ ଅସ୍ଥାୟୀ ନୃତ୍ୟମଣ୍ଡପ ନିର୍ମିତ ହୋଇଥିଲା । ଚୋଡ଼ଗଙ୍ଗ କଳିଙ୍ଗରେ ରାଜ୍ୟାଭିଷେକ ପୂର୍ବରୁ ସେଠାରେ ଅବସ୍ଥିତ ପାର୍ଶ୍ୱ ଗ୍ରାମରେ ପ୍ରତିଷ୍ଠିତ ଦୁର୍ଗାଦେବୀଙ୍କ ମନ୍ଦିର ସମ୍ମୁଖରେ ଗୋଟିଏ ନାଟ୍ୟଶାଳା ନିର୍ମିତ ହୋଇଥିବା ସେ ଦେଖିଥିଲେ । ସେହି ଦୁର୍ଗାମନ୍ଦିରରେ ସଂଲଗ୍ନ ଏକ ଶିଳାଲେଖରେ ନିମ୍ନୋକ୍ତ ଶ୍ଳୋକରୁ ଏହା ଜଣାଯାଏ ।

"ଦୁର୍ଗାଦେବ୍ୟାଲୟସ୍ୟ ସ୍ୟା ଉତ୍ତରସିବପୁର ସ୍ଥାପସ୍ୟାମାସ ଗୁର୍ବୀଂ
ଶ୍ରୀମାନ୍ ଶ୍ରୀନାଥସାର୍ଯ୍ୟଃ ସଗିତ ଦଶଦଶା ନାଟ୍ୟଶାଳାଚ୍ଛନେକ ।" ✻

ଚୋଡ଼ଗଙ୍ଗ ଯେଉଁ ଅସ୍ଥାୟୀ 'ନାଟ୍ୟ-ମଣ୍ଡପ' ସେଠାରେ ନିର୍ମାଣ କରିଥିଲେ, ତାହା ଶାସ୍ତ୍ରୋକ୍ତ ଶିଳ୍ପ-ପଦ୍ଧତିରେ ସମ୍ପନ୍ନ ହୋଇଥିବା ସମ୍ଭବ । ଭରତଙ୍କ 'ନାଟ୍ୟ-ଶାସ୍ତ୍ର'ରେ ଲେଖାଅଛି ଯେ ନାଟ୍ୟଶାଳା ତିନିଭାଗରେ ବିଭକ୍ତ, ଯଥା—(୧) ଜ୍ୟେଷ୍ଠ, (୨) ମଧ୍ୟ ଏବଂ (୩) ଅବର । ପ୍ରଥମୋକ୍ତ ନାଟ୍ୟଶାଳା ଆକାରରେ ଚତୁରସ୍ର, ଯେଉଁଠାରୁ ଦେବ-ବିଗ୍ରହଙ୍କ ପାଇଁ ନାଟ୍ୟ ପ୍ରଦର୍ଶିତ ହୁଏ । ସେପରି ଏକ 'ନାଟ୍ୟଶାଳାକୁ ବିକୃଷ୍ଟ' କୁହାଯାଏ । ଯଥା—

"ବିକୃଷ୍ଟ ଚତୁରସ୍ରଶ୍ଚ ତ୍ର୍ୟସ୍ରଶ୍ଚୈବ ମଣ୍ଡପଃ ।
ତେଷାଂ ତ୍ରୀଣି ପ୍ରମାଣାନି ଜ୍ୟେଷ୍ଠଂ, ମଧ୍ୟଂ ତଥା ବରମ୍ ॥
ପ୍ରମାଣ ମେଷାଂ ନିର୍ଦ୍ଦିଷ୍ଟଂ ହସ୍ତ-ଦଣ୍ଡ ସମାଶ୍ରୟଂ ।
ଶତଂ ଚାଷ୍ଟୌ ଚତୁଃ ଷଷ୍ଟିର୍ହସ୍ତା ଦ୍ୱାତ୍ରିଂଶଦେବ ବା ॥"

✻ Vide ASS VII, 1351-61

ଅଷ୍ଟାଧିକଂ ଶତଂ ଜ୍ୟେଷ୍ଠଂ ଚତୁଃଷଷ୍ଟି ସ୍ତୁ ମଧ୍ୟମମ୍ ।
କନୀୟସ୍ତୁ ତଥା ବେଶ୍ମ ହସ୍ତା ଦ୍ୱାତ୍ରିଂଶଦପ୍ୟତେ ।"

ଅର୍ଥାତ୍ ନୃତ୍ୟଶାଳା ବା ନୃତ୍ୟମଣ୍ଡପର ବିସ୍ତୃତ ତିନିଭାଗରେ ବିଭକ୍ତ । ଯଥା—୧୦୮ ହସ୍ତ, ୬୪ ହସ୍ତ ଏବଂ ୩୨ ହସ୍ତ ମାପରେ ପର୍ଯ୍ୟବସିତ । ଆଉ ମଧ୍ୟ ଯେଉଁ ସ୍ଥାନରେ ନୃତ୍ୟାଭିନୟ କରାଯାଏ ତାକୁ 'ରଙ୍ଗ ପୀଠ' କୁହାଯାଏ । ସେଥିର ଚତୁର୍ଦ୍ଦିଗରେ କାଷ୍ଠ କିମ୍ବା ଇଷ୍ଟକରେ ମଞ୍ଚା ନିର୍ମିତ ହୋଇ ଦର୍ଶକମାନଙ୍କ ପାଇଁ ଆସନ ରହିଥାଏ । ତାହା 'ପ୍ରେକ୍ଷ-ମଣ୍ଡପ' ନାମରେ ଅଭିହିତ ହୁଏ ।

'ଶିଳ୍ପରତ୍ନ' ଗ୍ରନ୍ଥରେ ଉଲ୍ଲେଖ ଅଛି, ରାଜପ୍ରାସାଦ ସମ୍ମୁଖରେ ଯେଉଁ 'ନାଟ୍ୟ ମଣ୍ଡପ' ନିର୍ମିତ ହୋଇଥାଏ, ସେଥିରେ ନୃତ୍ୟାଦି ପ୍ରଦର୍ଶନ ପାଇଁ ସର୍ବୋପରିରୂପେ ରାଜାଙ୍କ ଆସନ ଓ ତାଙ୍କର ପାର୍ଷଦ, ପଣ୍ଡିତ, ମନ୍ତ୍ରୀ, ସେନାଧ୍ୟକ୍ଷ, କବି, ସନ୍ଥ ଏବଂ ଅନ୍ୟ ସାଧାରଣ ଦର୍ଶକ ବସିବା ପାଇଁ ସ୍ଥାନଗୁଡ଼ିକ କିପରି ନିରୂପିତ ହୋଇଥାଏ, ସେଥିର ବିଶଦ୍ ବିବରଣୀ "ସଙ୍ଗୀତ ରତ୍ନାକର" ଗ୍ରନ୍ଥରେ ବର୍ଣ୍ଣିତ ହୋଇଅଛି । *

ଆଧୁନିକ ନୃସିଂହ ମନ୍ଦିର ସମ୍ମୁଖରେ ଯେଉଁ ଅସ୍ଥାୟୀ "ନାଟ୍ୟ ମଣ୍ଡପ" ଗଠିତ ହୋଇଥିଲା, ତାହା ବୋଧହୁଏ ଉପରୋକ୍ତ ନିୟମରେ ନିର୍ମିତ ହୋଇଥିଲା । କିନ୍ତୁ ବହୁକାଳ ପରେ ସେହି ଅସ୍ଥାୟୀ ନୃତ୍ୟ-ମଣ୍ଡପ ସ୍ଥାନରେ ଆଧୁନିକ 'ମୁକ୍ତିମଣ୍ଡପ' ଗଠିତ ହୋଇଥିବା ଜଣାଯାଏ ।



* I. H. Q. Vol. XIII, PP 480-99 ff

# ଦ୍ୱିତୀୟ ପରିଚ୍ଛେଦ

## ସାନି ସଂପ୍ରଦାୟ ଓ ସାଧୁ ଜୟଦେବ

ପ୍ରଥମେ କୁହାଯାଇଛି ଯେ, ଶ୍ରୀକୂର୍ମପାଟକରେ 'ସାନି-ସମ୍ପ୍ରଦାୟ'ଙ୍କ ଏକ ସ୍ୱତନ୍ତ୍ର ବସତିଥିଲା । ସେଠାରେ ଶାସ୍ତ୍ରୀୟ ସଙ୍ଗୀତ ଓ ନୃତ୍ୟ ଶିକ୍ଷା ପାଇଁ ବ୍ୟବସ୍ଥା ହୋଇଥିଲା । ଅଧିକ ମଧ୍ୟ ବିଶିଷ୍ଟ ପଣ୍ଡିତମାନେ ସେହି ପୁଣ୍ୟକ୍ଷେତ୍ରରେ ରହି ବିଦ୍ୟାର୍ଥୀ-ମାନଙ୍କୁ ସଂସ୍କୃତ ସାହିତ୍ୟ ସଙ୍ଗେ ଧର୍ମଶାସ୍ତ୍ର ଓ ଦର୍ଶନ ଶାସ୍ତ୍ରରେ ଶିକ୍ଷା ଦେଉଥିଲେ । ସୁତରାଂ ଦେଶ ବିଦେଶରୁ ଛାତ୍ରମାନେ ଶ୍ରୀ କୂର୍ମେଶ୍ୱରଙ୍କ ମନ୍ଦିରରେ ରହି ବିଦ୍ୟାଭ୍ୟାସ କରୁଥିଲେ । ସେମାନଙ୍କ ମଧ୍ୟରେ ଜୟଦେବ ଥିଲେ ଜଣେ ଅତି ମେଧାବୀ ଛାତ୍ର । ସେ ସଂସ୍କୃତ ସାହିତ୍ୟରେ ଯଥେଷ୍ଟ ଜ୍ଞାନ ଅର୍ଜନ କଲାପରେ ଶାସ୍ତ୍ରୀୟ ସଂଗୀତ ଓ ନୃତ୍ୟ ଶିକ୍ଷା କରି ନିଜେ ସଂସ୍କୃତରେ ଗୀତ ରଚନା କରିବାକୁ ଲଗିଲେ । ତାଙ୍କର ଅଧିକାଂଶ ଗୀତ ରାଧାକୃଷ୍ଣଙ୍କ ଲୀଳା ବିଷୟକ ଶୃଙ୍ଗାର ରସାତ୍ମକ ହୋଇଥିବାରୁ ତାହା ଶିକ୍ଷା କରିବାକୁ ସେଠାର ସାନି-ସଂପ୍ରଦାୟ ଉତ୍ସାହିତ ହେଲେ । ତଦ୍‌ବଧି ସେ କବି ଜୟଦେବ ନାମରେ ପରିଚିତ ହୋଇଥିବା ସମ୍ଭବ । ଜୟଦେବ ନିଜେ ବୈଦିକ ବ୍ରାହ୍ମଣ କୁଳରେ ଜନ୍ମିଥିବାରୁ ସାହିତ୍ୟ ଓ ସଙ୍ଗୀତରେ ସୁନାମ ଅର୍ଜନ କରିଥିଲେ । ଜନ୍ମ ସାଧୁ ଉପାଧି ଗ୍ରହଣ କରି ସେ ଅଞ୍ଚଳରେ ବାସ କରିଥିବା 'ସାନି-ସଂପ୍ରଦାୟ'ଙ୍କ ମଧ୍ୟରେ ପରମାରାଧ୍ୟ ଗୁରୁରୂପେ ସମ୍ମାନିତ ହୋଇଥିଲେ । ତେଣୁ ସେ ନିମ୍ବାର୍କ ଓ ମଧ୍ୱାଚାର୍ଯ୍ୟଙ୍କ ମତାନୁସାରେ ଭକ୍ତି ସଙ୍ଗୀତମାନ ସର୍ବସାଧାରଣରେ ପ୍ରଚାର କରିବାକୁ ଯାଇ 'ଗୀତ ଗୋବିନ୍ଦ' ନାମକ ନାଟ୍ୟଲୀଳା ରଚନା କରିଥିବା ସମ୍ଭବ । ତାହା ନାଟ୍ୟଶାଳାମାନଙ୍କରେ ପ୍ରଦର୍ଶନ କରିବା ଉଦ୍ଦେଶ୍ୟରେ ଏକ 'ନାଟ୍ୟ-ଦଳ' ମଧ୍ୟ ସେ ଗଠନ କରିଥିବା ସମ୍ଭବ । ସେହି ନାଟ୍ୟଦଳର ଖ୍ୟାତି ଏବଂ 'ଗୀତ-ଗୋବିନ୍ଦ'ର ଅପୂର୍ବ ରାଧାକୃଷ୍ଣ ଲୀଳା ସର୍ବତ୍ର ପ୍ରଚାରିତ ହୋଇଥିଲା । ଏଣୁ ସେହି ନାଟ୍ୟଦଳ ସଙ୍ଗେ ଜୟଦେବଙ୍କୁ ଶ୍ରୀକୂର୍ମପାଟକରୁ ନିମନ୍ତ୍ରଣ କରି ଶ୍ରୀ ପୁରୁଷୋତ୍ତମ କ୍ଷେତ୍ରରେ ଶ୍ରୀମନ୍ଦିର ସମ୍ମୁଖସ୍ଥ ଅସ୍ଥାୟୀ ନାଟ୍ୟ-ମଣ୍ଡପରେ 'ଶ୍ରୀ ଗୀତ ଗୋବିନ୍ଦ' ନାମକ ପରିବେଷିତ କରାଇବାକୁ ଚୋଡ଼ଗଙ୍ଗ ଉତ୍ସାହିତ ହୋଇଥିବେ । ଏହା ଆମର ଏକ ଯୁକ୍ତିଯୁକ୍ତ କଳ୍ପନା ହୋଇଥିଲେ ମଧ୍ୟ, ସାଧୁ ଜୟଦେବଙ୍କ ସଙ୍ଗେ 'ସାନି-ସଂପ୍ରଦାୟ'ର ସମ୍ପର୍କ ତଥା ସାହଚର୍ଯ୍ୟ ଭୁବନେଶ୍ୱରସ୍ଥ ଶ୍ରୀ ଲିଙ୍ଗରାଜ ମନ୍ଦିର ଭିତ୍ତି ସଂଲଗ୍ନ ନିମ୍ନୋକ୍ତ ଶିଳାଲେଖରୁ ଚୋଡ଼ଗଙ୍ଗଙ୍କ ଦ୍ୱିତୀୟ ପୁତ୍ର ରାଘବଦେବଙ୍କ ରାଜତ୍ୱକାଳ (୧୧୫୭-୧୧୭୦ ଖ୍ରୀ: ମଧ୍ୟରେ) ଖୋଦିତ ହୋଇଥିଲା—

✲ "ସ୍ୱସ୍ତି ଶ୍ରୀରାଘବଦେବସ୍ୟ......ସ୍ତୁ ...ଡ ୧୦ ବାରେ ବୁଧେ ଶ୍ରୀ କାର୍ତ୍ତିବାସେଶ୍ୱରସ୍ୟ ପ୍ରୀତୟେ ମେଡମଦେବ୍ୟା ସଦାତ୍ୟାଦଖ ଧ୍ରାକ୍ଷବର୍ତ୍ତିସ୍ୟା ମାତାପିତରେ କୋମିନାୟକନ୍ କୃର୍ତ୍ତିବାସେଶ୍ୱରସ୍ୟ ପ୍ରୀତୟେ ଦୀପଂ ଦତ୍ୟାତ୍ । କୂର୍ମପାଟକ ପ୍ରବର ସାଧୁ ପ୍ରଧାନ ✲ ଜୟଦେବ ସମବାୟ ଦେବଧର ଗ୍ରାମ ଦାସପୁର ଶେଠୀ ହସ୍ତାତ୍ କୀତ୍ୱା ବାହେଡ଼ା ଖଣ୍ଡକ୍ଷେତ୍ର ସର୍ବ(ସ)ତ୍ୱ କାର୍ତ୍ତିବାସେଶ୍ୱରସ୍ୟ ଧିଲ ।"

ଏଥିର ସଂକ୍ଷିପ୍ତ ଅର୍ଥ ହେଉଛି, ଶ୍ରୀ ରାଘବଦେବଙ୍କର ରାଜତ୍ୱକାଳରେ ଶ୍ରୀ କାର୍ତ୍ତିବାସେଶ୍ୱର (ଶ୍ରୀ ଲିଙ୍ଗରାଜ)ଙ୍କ ପ୍ରୀତି ସମ୍ପାଦନ ପାଇଁ ମେଡମ ଦେବୀ ଏବଂ ତାଙ୍କ ମାତା ଓ ପିତା କୋମିନାୟକ ସମସ୍ତେ ମିଶି ପ୍ରତ୍ୟେକ ଗୋଟିଏ ଲେଖାରେ ଅଖଣ୍ଡଦୀପ ଦାନ କରିଥିଲେ । ସେତେବେଳେ କୂର୍ମପାଟକର ସୁପ୍ରସିଦ୍ଧ (ପ୍ରବର) ସାଧୁ ପ୍ରଧାନ ଜୟଦେବଙ୍କ (ସମବାୟ)ଙ୍କ ଠାରୁ କ୍ରୟ କରି ବାହେଡ଼ାଖଣ୍ଡ କ୍ଷେତର ସମସ୍ତ ସ୍ୱତ୍ୱ କାର୍ତ୍ତିବାସେଶ୍ୱରଙ୍କୁ ଦାନ କରାଗଲା ।

ମେଡମଦେବୀଙ୍କ ପିତା କୋମିନାୟକ ଚୋଡ଼ଗଙ୍ଗଙ୍କ ରାଜତ୍ୱର ୩୭ ଶାଙ୍କ (ଅଙ୍କ) ଅର୍ଥାତ୍ ୧୧୧୩ ଖ୍ରୀଷ୍ଟାବ୍ଦରେ ଗୋଟିଏ ଅଖଣ୍ଡ ଦୀପ ମୁକ୍ତେଶ୍ୱରଙ୍କଠାରେ ମଧୁକେଶ୍ୱର ମନ୍ଦିରରେ ଦାନ କରିଥିବା ପ୍ରସଙ୍ଗ ସେଠାର ଏକ ଶିଳାଲେଖରେ ଖୋଦିତ ହୋଇଅଛି । (Vide S. I. I.,Vol I, No 1029 I. O., Vol III, Pt I P. 60) ଚୋଡ଼ଗଙ୍ଗଙ୍କ ରାଜତ୍ୱକାଳରେ କୋମିନାୟକଙ୍କର ଉପାଧିଥିଲା 'ପସାଇତ' ବା ଦେବ-ସେବକ । ତାଙ୍କ ପତ୍ନୀଙ୍କ ନାମ 'ନଙ୍ଗମା' ଏବଂ ଉପାଧି 'ଗୁଡ଼ି-ସାନି' (ମନ୍ଦିର-ନର୍ତ୍ତକୀ) । ନଙ୍ଗମାଙ୍କ ମାତା ଓ ପିତାଙ୍କର ନାମଥିଲା ଯଥାକ୍ରମେ ଏରକମ୍ମା ଓ ବେନ୍ନମପେଗ୍‌ଗଡ଼ । ନିମ୍ନରେ ମେଡ଼ମଙ୍କ (ଦେବୀ) ବଂଶ ପରିଚୟ ଦିଆଗଲା—

ବେନ୍ନମ ପେଗ୍‌ଗଡ଼=ଏରକମ୍ମା (ଗୁଡ଼ିସାନି)
|
| (କନ୍ୟା)
(ପସାଇତ) କୋମିନାୟକ=ନଙ୍ଗମା (ଗୁଡ଼ିସାନି)
|
| (କନ୍ୟା)
ମେଡମ ଦେବୀ

✲ O. H. R. J., Vol. V, No 4 PP 179-182 ff.

✲ ଡ଼ା. ଦିନେଶଚନ୍ଦ୍ର ସର୍କାର । 'ସାଧୁ-ପ୍ରଧାନ'ର ଅର୍ଥ ମୁଖ୍ୟ ବ୍ୟାପାରୀ ବୋଲି ଅର୍ଥ କରିଛନ୍ତି । ଏହା ଏକ ଅସାର ପରିକଳ୍ପନା କହିଲେ ଅତ୍ୟୁକ୍ତି ହେବ ନାହିଁ । ବୋଧହୁଏ ଡ଼ା. ସର୍କାର ସୁହାନ୍ତି କବି ଜୟଦେବଙ୍କୁ କୂର୍ମପାଟକରୁ ଏଡ଼ାଇ ଦେବେ । କିନ୍ତୁ ମେଡମଦେବୀ 'ସାନି-ସମ୍ପ୍ରଦାୟ'ର ଜଣେ ମହିଳା, ଏହା ତ ଠିକ୍ ।

ଚୋଡ଼ଗଙ୍ଗଙ୍କ ୫୩ ଶାବ୍ଦ (ଅଙ୍କ) ଅର୍ଥାତ୍ ୧୧୬୮ ଖ୍ରୀଷ୍ଟାବ୍ଦରେ କୋମିନାୟକ ଓ ନଙ୍ଗମା ଉଭୟେ ମିଶି ମଧୁକେଶ୍ୱର ମନ୍ଦିରରେ ଏକ ଅଖଣ୍ଡ ଦୀପ ଦାନ କରିଥିବା ବିଷୟ ଅନ୍ୟ ଏକ ଶିଳାଲେଖରୁ ଜଣାଯାଏ । ଏଥିର ଏକ ଅଂଶ ଉଦ୍ଧୃତ ହେଲା—

"... ...ଶ୍ରୀମଦ୍ ଚନ୍ଦ୍ରବର୍ମଦେବର ପ୍ରବର୍ଦ୍ଧମାନ ବିଜୟରାଜ୍ୟ ସମ୍ବତ୍ସର ୫୩ ଶାବ୍ଦ ମକରମାସମ୍ବନ୍ଧ ଶୁକ୍ଳ ଦ୍ୱିତୀୟା ଗୁରୁବାର ମୂନା ଦ୍ୟୁତପାତନାଣ୍ଡୁ ଦେନ୍ନମ ପେଣ୍ଡଗଡ଼ଲ ଏରକମ୍ମା କୁଂରୁରୁ ଗୁଡ଼ିସାନି ପଗ୍ରାଇଣ୍ଡ କୋମି-ନାୟକୁଳ ପେପ୍ଲମ୍ମ ନଙ୍ଗମା ଶ୍ରୀ ମଧୁକେଶ୍ୱର ଦେବରକ୍କୁ ପେଟ୍ଟିନା ଅଖଣ୍ଡବର୍ତ୍ତି ଦୀପମୁ......*

ଏଥିରୁ ସ୍ପଷ୍ଟ ପ୍ରମାଣ ମିଳୁଛି ଯେ ମେଡ଼ମଦେବୀଙ୍କ ମାତା ନଙ୍ଗମା ଏବଂ ଆଇ ଏରକମ୍ମା 'ଗୁଡ଼ିସାନି' (ମନ୍ଦିର ନର୍ତ୍ତକୀ) ଉପାଧିରେ ଭୂଷିତ ହୋଇ ଚୋଡ଼ଗଙ୍ଗଙ୍କ ରାଜତ୍ୱର ୫୩ ଶାବ୍ଦ, ଅର୍ଥାତ୍ ୧୧୬୮ ଖ୍ରୀଷ୍ଟାବ୍ଦରେ ଶ୍ରୀ କୂର୍ମପାଟକ ନିକଟବର୍ତ୍ତୀ ମଧୁକେଶ୍ୱର ମନ୍ଦିରରେ ଅଖଣ୍ଡଦୀପଦାନ କରିଥିଲେ । ତେଣୁ ଆମ୍ଭେ କହିପାରୁ ଯେ, କବି ଜୟଦେବ ମେଡ଼ମଦେବୀଙ୍କ ମାତାଙ୍କୁ ସଙ୍ଗୀତ ଓ ନୃତ୍ୟଶିକ୍ଷା ଦେଇଥିବାରୁ ମେଡ଼ମଦେବୀ ତାଙ୍କୁ ସମ୍ମାନିତ ପରମଗୁରୁ ରୂପେ ଭକ୍ତି ସହକାରେ 'ସାଧୁପ୍ରଧାନ' ବୋଲି ସମ୍ମାନିତ "କୂର୍ମ ପାଟକ ପ୍ରବର" ଓ 'ସାଧୁ ପ୍ରଧାନ'ରୂପେ ଅଭିହିତ କରିଛନ୍ତି । ସେହି ଲିଙ୍ଗରାଜ ମନ୍ଦିରରେ ମେଡ଼ମଦେବୀ ଓ ତାଙ୍କ ପିତା ଦୀପଦାନ କଲାବେଳେ ସାଧୁ ପ୍ରଧାନ ଜୟଦେବଙ୍କ ବୟସ ପ୍ରାୟ ୭୦ ବର୍ଷ ହେଉଥିବା ସମ୍ଭବ । କାରଣ ଚୋଡ଼ଗଙ୍ଗ ତାଙ୍କୁ ଓ ତାଙ୍କ ଦଳର ନର୍ତ୍ତକମାନଙ୍କୁ ଶ୍ରୀକୂର୍ମପାଟକରୁ ଶ୍ରୀକ୍ଷେତ୍ରକୁ ନିମନ୍ତ୍ରଣ କରିବା ସମୟ ଲିଙ୍ଗରାଜ ମନ୍ଦିର ଅଭିଲେଖର ଅନ୍ୟୂନ ୨୦ ବର୍ଷ ପୂର୍ବରୁ ହୋଇଥିଲା ସେତେବେଳେ ଜୟଦେବଙ୍କ ବୟସ ପ୍ରାୟ ୫୦ ବର୍ଷ ହେବା ସମ୍ଭବ ।

କୂର୍ମପାଟକକୁ ଯେ ଗୁରୁ ହିସାବରେ ଯାଇ ସେଠାରେ ଶାସ୍ତ୍ରୀୟ ସଙ୍ଗୀତ ଶିକ୍ଷା କରି ନିଜେ ନୃତ୍ୟକଳାରେ ପାରଦର୍ଶିତା ଲାଭ କରି ନଥିଲେ ବିଭିନ୍ନ ରାଗରେ ସଂସ୍କୃତ ଗୀତ ରଚନା କରିବା ସମ୍ଭବ ହୋଇ ନଥାଆନ୍ତା ।

ଏଠାରେ କହିବା ଆବଶ୍ୟକ ଯେ, କଳିଙ୍ଗରେ ସଙ୍ଗୀତ ଖ୍ରୀଷ୍ଟପୂର୍ବ ଯୁଗରୁ ପ୍ରାଧାନ୍ୟ ବିସ୍ତାର କରିଥିଲା । ସେହି ଗାନ୍ଧର୍ବବିଦ୍ୟାକୁ "ପଞ୍ଚମ-ବେଦ" ବୋଲି କୁହାଯାଉ ଥିଲା । ଭାରତ ବର୍ଷରେ ସଙ୍ଗୀତ ପରିଚାଳନା ସର୍ବପ୍ରଥମ ନିଦର୍ଶନ ଖ୍ରୀଷ୍ଟପୂର୍ବ ଯୁଗରେ କଳିଙ୍ଗ ସମ୍ରାଟ ଖାରବେଳଙ୍କ ଉଦୟଗିରି ଶିଳାଲେଖରେ ଖୋଦିତ ହୋଇଥିବା

* S. I. I., Vol V, No 1102; I. O., Vol III. Pt-I, P. 109

ଦେଖାଯାଏ । ଖାରବେଳ ତାଙ୍କ ରାଜତ୍ୱର ତୃତୀୟ ବର୍ଷରେ "ଗାନ୍ଧର୍ବ-ବେଦବିତ୍"-ମାନଙ୍କ ଦ୍ୱାରା ନୃତ୍ୟ-ଗୀତ-ବାଦ୍ୟରୂପକ ସଙ୍ଗୀତ ପରିବେଷଣ କରାଇ ନଗରବାସୀଙ୍କ ଆନନ୍ଦବର୍ଦ୍ଧନ କରିଥିଲେ—

"ତତିୟେ ପୁନବସେ ଗଂଧବ-ବେଦ-ବୁଧୋ ଦଂପ ନତ-ଗୀତବାଦିତ
ସଦସନାହି ଉସବ ସମାଜକାରା-ପନାହି ଚ କୀଡାପୟତି ନାଗରୀ" †

ଭରତଙ୍କ ନାଟ୍ୟଶାସ୍ତ୍ର ଏଥିର ପ୍ରାୟ ୪୦୦ ବର୍ଷ ପରେ ଲେଖା ହୋଇଥିବା ପଣ୍ଡିତମାନଙ୍କ ମତରୁ ଜଣାଯାଇଛି † ଚେଦି କଳିଙ୍ଗ ସମ୍ରାଟ ଖାରବେଳ ଯେ 'ଗାନ୍ଧର୍ବ ବିଦ୍ୟା' ପ୍ରସିଦ୍ଧ ସଙ୍ଗୀତଜ୍ଞମାନଙ୍କୁ ନିଜ ରାଜଧାନୀରେ ରଖାଇ ନଗର ଅଧିବାସୀମାନଙ୍କର ସାଂସ୍କୃତିକ ଅଭ୍ୟୁଦୟ ଘଟାଇଥିଲେ, ଏଥିରେ ଆଦୌ ସନ୍ଦେହ ନାହିଁ । (୧) ପରବର୍ତ୍ତୀ କାଳରେ ଭରତମୁନିଙ୍କ ଦ୍ୱାରା ନାଟ୍ୟଶାସ୍ତ୍ର ଲେଖାହୋଇ ଏ ଅଞ୍ଚଳରେ ନିଜସ୍ୱ ପ୍ରଚଳିତ ହୋଇ 'କଳିଙ୍ଗ ସଙ୍ଗୀତ' ନାମଧାରଣ କରିଥିଲା । ସେହି ସଙ୍ଗୀତ ପଦ୍ଧତିର କ୍ରମବିକାଶ ହିଁ ଜୟଦେବଙ୍କ 'ଗୀତଗୋବିନ୍ଦ'ରେ ଆତ୍ମପ୍ରକାଶ କରିଛି ।

'ଗୀତଗୋବିନ୍ଦ'ରେ ସଙ୍ଗୀତର ପରିପ୍ରକାଶ କେଉଁ ଦେଶରୁ ପ୍ରଥମେ ପ୍ରକଟିତ ହୋଇଥିଲା, ଏଥିର ଅନୁସନ୍ଧାନ କରିବାକୁ ଯାଇ ସାର୍ ଉଇଲିୟାମ୍ ଜୋନ୍ସ (Sir William Jones) କଲିକତାଠାରେ 'Asiatic Research Society Journal' ନାମକ ଗବେଷଣା ପତ୍ରିକାର ଖ୍ରୀ ୧୭୯୯ ସଖ୍ୟାରେ (Vol. III, PP. 190-207) ଗୋଟିଏ ସାର୍ଦ୍ଧ ପ୍ରବନ୍ଧରେ ଲେଖିଛନ୍ତି—

"The loves of Krisna and Radha XXX on the subject of the little pastoral at drama, entitled 'Gita Govinda', it was the work of Jayadeva, who flourished, it is said before Kalidash (?) and was born at Kenduli, which may believe to be in Kalinga, but there is a town of similar name, the nation of it insists that the first 'lyical poet of India was their countryman and celebrated in honour of him an annual festival (Vide 'Preface to 'Gita Govinda' by Sir W. Jones (Published by Upendralal Das, Calcutta, 1894).

---

† J. B. O. R. S., Vol. VI, P. 364 ff

(୧) A. B. Keith, Sanskrit Drama (Oxford, 1924) P. 292 f

ସାର୍ ଉଇଲିୟାମ୍ ଜୋନ୍ସ ଖ୍ରୀ: ୧୮ଶ ଶତାବ୍ଦୀର ଶେଷ ଭାଗରେ କଲିକତାରେ ପ୍ରତିଷ୍ଠିତ ଉଚ୍ଚନ୍ୟାୟାଳୟର ମୁଖ୍ୟ ନ୍ୟାୟାଧୀଶ ଥିଲେ । ସେ ସର୍ବପ୍ରଥମେ ବୈଜ୍ଞାନିକ ପଦ୍ଧତିରେ ଇତିହାସ ଗବେଷଣା ନିମନ୍ତେ Asiatic Research Society Journal ଇଂରାଜୀ ପତ୍ର ଜାରି ଶୁଭଦେଇ ନିଜେ କେତେକ ଗବେଷଣାମୂଳକ ପ୍ରବନ୍ଧ ପ୍ରକାଶ କରିଥିଲେ । ଭାରତୀୟ ସଙ୍ଗୀତର ମୂଳଦୁଆ ଖୋଜିବା ପାଇଁ ସେ ନେପାଳ, ଉତ୍ତର ଓ ପଶ୍ଚିମ ଭାରତର ଗୁଜୁରାଟ, ମହାରାଷ୍ଟ୍ର ପ୍ରଭୃତି ଦେଶ ଭ୍ରମଣ କରିଥିଲେ । କିନ୍ତୁ ସେଠାରୁ ସେ ଖବର ସଂଗ୍ରହ କରିଥିଲେ ଯେ ଭାରତୀୟ ସଙ୍ଗୀତ ପ୍ରଥମେ କଳିଙ୍ଗରେ ହିଁ ପ୍ରକାଶ ହୋଇଥିଲା । ତେଣୁ ଜୟଦେବଙ୍କ ସଙ୍ଗୀତ ତାଙ୍କ ଜନ୍ମଭୂମି କେନ୍ଦୁଲି ନାମକ ଗ୍ରାମସ୍ଥିତ କଳିଙ୍ଗ ଦେଶରେ ଆତ୍ମପ୍ରକାଶ କରିଥିଲା ବୋଲି ସେ ତାଙ୍କ ପ୍ରବନ୍ଧରେ ଉଲ୍ଲେଖ କରିଛନ୍ତି । ଏଠାରେ କହିବା ବାହୁଲ୍ୟ ଯେ, ସାର୍ ଉଇଲିୟାମ୍ ଜୋନ୍ସଙ୍କ ସମୟରେ ଓଡ଼ିଶା ଇଂରାଜୀ ଶାସନାଧୀନ ହୋଇନଥିଲା । ତେଣୁ ସେ ଓଡ଼ିଶାର ନାମ ଉଲ୍ଲେଖ ନକରି କଳିଙ୍ଗ ବୋଲି କହିଥିବା ସମ୍ଭବ ।

ପ୍ରାଚୀନ କଳିଙ୍ଗର ଗଙ୍ଗାବଂଶୀୟ ରାଜାମାନେ ସଙ୍ଗୀତ ଓ ନୃତ୍ୟ ପରିବେଷଣ ସକାଶେ ଗୋଟିଏ 'ନଟ-ଶ୍ରେଣୀ' ନିଯୁକ୍ତ କରିଥିବା ପ୍ରସଙ୍ଗ ସେମାନଙ୍କର କେତେକ ତାମ୍ରଶାସନରେ ଉଲ୍ଲେଖ ହୋଇଅଛି । ମହାରାଜା ଦେବେନ୍ଦ୍ରବର୍ମା ଗଙ୍ଗାବ୍ଦ ୧୮୩ (ଖ୍ରୀ: ୭୮୧)ରେ କଳିଙ୍ଗ ନଗରଠାରୁ ଘୋଷିତ କରିଥିବା ଗୋଟିଏ ତାମ୍ରଶାସନଟି ରାଜାଙ୍କଠାରୁ ଆଦିଷ୍ଟହୋଇ ଅପୂର୍ବ ନଟବଂଶୀୟ ମାତୃଚନ୍ଦ୍ରଙ୍କ ପୁତ୍ର ପଲ୍ଲବଚନ୍ଦ୍ର ଲେଖିଥିଲେ । ଯଥା—

> "ଅପୂର୍ବ-ନଟ ବଂଶେନ ମାତୃଚନ୍ଦ୍ରସ୍ୟ ସୁନୁନା ।
> ଲିଖିତଃ ପଲ୍ଲବଚନ୍ଦ୍ରେଣ ଶାସନଂ ସ୍ୱମୁଖାଜ୍ଞୟା ।।" †

ଦେବେନ୍ଦ୍ରବର୍ମାଙ୍କ ୧୮୪ ଗଙ୍ଗାବ୍ଦରେ ଏବଂ ୧୯୨ ଗଙ୍ଗାବ୍ଦରେ ଦାନ କରାଯାଇଥିବା ଅନ୍ୟ ଦୁଇଟି ଶାସନରେ ମଧ୍ୟ ପଲ୍ଲବଚନ୍ଦ୍ରଙ୍କ ନାମ ଲେଖକରୂପେ ଖୋଦିତ ହୋଇଅଛି । (୧)

କିନ୍ତୁ ତାଙ୍କର ୧୯୫ ଗଙ୍ଗାବ୍ଦର ଅନ୍ୟ ଏକ ଦାନଶାସନର ଲେଖକରୂପେ ସେହି ଅପୂର୍ବ-ନଟ ବଂଶୀୟ ମାତୃଚନ୍ଦ୍ରଙ୍କ ଅନ୍ୟ ଜଣେ ପୁତ୍ର ମଦନାଙ୍କୁର ପଲ୍ଲବଙ୍କ

---

† EP. Ind., Vol. III. PP. 130-134 ff

୧ J. A. H. R. S., Vol. II, PP. 275-6 ff and I. H. Q., Vol. XI, PP. 300-3 ff

ନାମ ଗୋଚିତ ହୋଇଥିବା ଦେଖାଯାଏ । (୧) ଏଥିରୁ ସ୍ପଷ୍ଟ ଜଣାଯାଉଛି ଯେ, କଳିଙ୍ଗରେ 'ଅପୂର୍ବ-ନଟବର୍ଣ୍ଣ' ନାମରେ ଏକ ନୃତ୍ୟ ବଣାବିଦ ଜାତି ଖ୍ରୀ: ୭ମ ଶତାବ୍ଦୀରେ କିମ୍ବା ତା ପୂର୍ବରୁ ସୃଷ୍ଟି ହୋଇଥିଲା । ସେହି ନଟବର୍ଣ୍ଣରେ ମାତୃଚନ୍ଦ୍ରଙ୍କ ଦୁଇପୁଅ ପଲ୍ଲବଚନ୍ଦ୍ର ଓ ମଦନାଙ୍କୁର ପଲ୍ଲବ ରାଜାଙ୍କ ଦ୍ୱାରା ନିଯୁକ୍ତ ହୋଇ ତାମ୍ରଶାସନଗୁଡ଼ିକର ଲେଖକ ରୂପେ ମଧ୍ୟ ପ୍ରସିଦ୍ଧି ଲାଭ କରିଥିଲେ । ଏଣୁ ଖ୍ରୀ: ୭ମ ଶତାବ୍ଦୀରେ 'ନଟବର୍ଣ୍ଣୀୟ'ମାନେ ସ୍ୱୀୟ ବଂଶକୁ 'ଅପୂର୍ବ' ଅର୍ଥାତ୍ ପୂର୍ବ ପ୍ରଚଳିତ ବ୍ୟଭିଚାରବିହୀନ ନଟବର୍ଣ୍ଣୀୟ (୨) ବୋଲି ତାମ୍ରଶାସନମାନଙ୍କରେ ନିଜ ନିଜର ପରିଚୟ ଦେଇଥିବା ସମ୍ଭବ । ପଲ୍ଲବଚନ୍ଦ୍ର ନିଜର ପରିଚୟ ଦେବାକୁଯାଇ ଗୋଟିଏ ଶ୍ଳୋକ ମଧ୍ୟ ରଚନା କରିଥିଲେ । ଅବଶ୍ୟ ଛନ୍ଦଦୃଷ୍ଟିରୁ ସେହି ଶ୍ଳୋକଟି ଶୁଦ୍ଧ ନହେଲେ ମଧ୍ୟ, ସଂସ୍କୃତ ସାହିତ୍ୟରେ ତାଙ୍କର ଜ୍ଞାନ ଥିବା ଏଥିରୁ ପ୍ରମାଣିତ ହୁଏ ।

ବାସ୍ତବରେ ଅତି ପ୍ରାଚୀନକାଳରୁ ଆରମ୍ଭ କରି କଳିଙ୍ଗର ରାଜାମାନେ ସଙ୍ଗୀତ ଶାସ୍ତ୍ରରେ ପାଣ୍ଡିତ୍ୟଲାଭ କରିବା ନର୍ତ୍ତକ-ନର୍ତ୍ତକୀମାନଙ୍କୁ ରାଜସଭାରେ ସ୍ଥାନ ଦେଉଥିଲେ । କାଳକ୍ରମେ ସେହି 'ନଟବର୍ଣ୍ଣ'କୁ କଳିଙ୍ଗରେ 'ସାନି ସମ୍ପ୍ରଦାୟ' ବୋଲି କୁହାଗଲା । ରାଜାମାନଙ୍କ ଉତ୍ସବ ତଥା ଦୈନିକ ନୀତିରେ 'ସାନି ସମ୍ପ୍ରଦାୟ'ଙ୍କ ଦ୍ୱାରା ନୃତ୍ୟ ଓ ସଙ୍ଗୀତ ଗାନ କରିବା ନିୟମ ରହିଥିଲା । ଗଙ୍ଗାବଂଶୀୟ ରାଜାମାନଙ୍କ ରାଜତ୍ୱର ଅବସାନ ପରେ ଖ୍ରୀ: ୧୫ଶ ଶତାବ୍ଦୀରେ ରେଡ୍ଡିବଂଶୀୟ ରାଜାମାନେ ଅଳ୍ପକାଳ ପାଇଁ କଳିଙ୍ଗର ଦକ୍ଷିଣାଂଶ ଅଧିକାର କରିଥିଲେ । ସେମାନଙ୍କ ରାଜଧାନୀ ଥିଲା, କୃଷ୍ଣାନଦୀ ତଟବର୍ତ୍ତୀ କଣ୍ଡାବିଡ଼ୁ ଦୁର୍ଗରେ । ସେଠାରେ ବେମ୍ବାରେଡ୍ଡି ନାମକ ଜଣେ ସଂଗୀତପ୍ରିୟ ରାଜାଙ୍କ ସଭାରେ କଳିଙ୍ଗ ସଙ୍ଗୀତରେ ବିକାଶ ପାଇଁ ଗାନ୍ଧର୍ବ ବିଦ୍ୟାରେ ସୁପଣ୍ଡିତ ଅହୋବିଲ ନାମକ ଜଣେ ସଂଗୀତଜ୍ଞ 'ସଂଗୀତ ପାରିଜାତ' † ନାମକ

---

(୧) EP. Ind., Vol. XIII, P. 212-16 ff

(୨) 'ନଟବର୍ଣ୍ଣ'ର ସ୍ତ୍ରୀମାନେ ଯେକୌଣସି ପୁରୁଷର ସଙ୍ଗିନୀ ହେବା ଦୃଷ୍ଟିରୁ 'ନଟବର୍ଣ୍ଣ' ଶୁଦ୍ଧ କୁଳରୁ ବିତାଡ଼ିତ ବୋଲି ପାତାଞ୍ଜଳୀଙ୍କ ମହାଭାଷ୍ୟରେ ବର୍ଣ୍ଣିତ ଅଛି । ସେଥିରେ ବ୍ୟଞ୍ଜନା ପ୍ରସଙ୍ଗରେ ଲେଖାଅଛି—"ପୁନର୍ନଟ ଭର୍ଯାବନ୍ତ୍ ଭବନ୍ତି । ତଦ୍ ଯଥା ଯଥା ନାଟାନାଂ ସ୍ତ୍ରିୟୋ ରଙ୍ଗଗତାୟୋ ଯଃ ପୃଚ୍ଛନ୍ତି କସ୍ୟ ଯୂୟଂ କସ୍ୟ ଯୂୟମିତି...." (See H. I. L., III P. 189) (ମହାଭାଷ୍ୟ ୬, ୧୨, ବାର୍ତ୍ତା ୫)

† ଏହି ଗ୍ରନ୍ଥଟି ୧୮୭୯ ମସିହାରେ କେ. ବେଦାନ୍ତବାଗୀଶ ଓ ଶାରଦାପ୍ରସାଦ ଘୋଷ ମିଳିତ ଭାବେ କଲିକତାରେ ପ୍ରକାଶ କରିଥିଲେ ।

ଗୋଟିଏ ଗ୍ରନ୍ଥ ଲେଖିଥିଲେ । ସେଥିରେ ଯେଉଁ ରାଗ ଓ ତାଳ ନିୟମଗୁଡ଼ିକ ବର୍ଣ୍ଣିତ ହୋଇଅଛି, ତାହା ୭୩୫ ପ୍ରକାରରେ ବୁଝାଇ ଦିଆଯାଇଛି । †

୧୪୩୭ ଖ୍ରୀଷ୍ଟାବ୍ଦରେ ସୂର୍ଯ୍ୟବଂଶୀୟ ମହାରାଜା କପିଳେନ୍ଦ୍ର ଦେବ ଓଡ଼ିଶା ଅଧିକାର କଲାପରେ କଣ୍ଢାବିଡ଼ୁର ରେଡ଼ିଡ଼ି ରାଜାମାନେ ଯେତେବେଳେ ସ୍ୱାଧୀନତା ହରାଇ ସାମନ୍ତ ରାଜାହୋଇ ରହିଲେ ସେତେବେଳେ ସମ୍ଭବତଃ ରାଜ ସଭାପଣ୍ଡିତ ଓ ସଙ୍ଗୀତ କୋବିଦ ଅହୋବଳ ଓଡ଼ିଶାରାଜାଙ୍କ ଦରବାରୀ ସଙ୍ଗୀତଜ୍ଞ ରୂପେ ରହିଥିଲେ । ତେଣୁ ସେ ଲେଖିଥିବା 'ସଙ୍ଗୀତ ପାରିଜାତ' ଗ୍ରନ୍ଥର ଅଧିକାଂଶ ରାଗ-ରାଗିଣୀ ଆଧୁନିକ 'ଓଡ଼ିଶୀ ସଙ୍ଗୀତ'ରେ ଆତ୍ମପ୍ରକାଶ କରିଥିବା ଜଣାଯାଏ ।

ଖ୍ରୀଷ୍ଟପୂର୍ବ ଯୁଗରୁ ଯେଉଁ କଳିଙ୍ଗ ସଙ୍ଗୀତ ଏ ଦେଶରେ ବିକାଶ ହୋଇଥିଲା, ତାହା ସେଠାରୁ ବିଦେଶର କେତେକ ଅଞ୍ଚଳ, ଅର୍ଥାତ୍ ଇଣ୍ଡୋନେସିଆ, ଜାଭା, ବାଲି, ବୋର୍ଣ୍ଣିଓ ଏବଂ କାମ୍ବୋଡ଼ିଆ ପ୍ରଭୃତି ରାଜ୍ୟରେ ମଧ୍ୟ ଆତ୍ମପ୍ରକାଶ କରିଥିଲା । ସେ ଅଞ୍ଚଳର ଲୋକେ ଅଦ୍ୟାପି ତାହା କଳିଙ୍ଗ (କ୍ଲିଙ୍ଗ୍) ସଙ୍ଗୀତ ବୋଲି କହନ୍ତି ।

କାଳକ୍ରମେ ଖ୍ରୀ: ୧୨ଶ ଶତାବ୍ଦୀରେ ସେହି ରାଗରାଗିଣୀ ଓ ନୃତ୍ୟ ପ୍ରଭୃତି ଗାନ୍ଧର୍ବବିଦ୍ୟାର ପରିବର୍ଦ୍ଧନ ଓ ଶିକ୍ଷା କଳିଙ୍ଗ ନଗର ନିକଟବର୍ତ୍ତୀ ଶ୍ରୀକୂର୍ମପାଟକରେ 'ସାଦ୍ଧ ସମ୍ପ୍ରଦାୟ'ଙ୍କ ଦ୍ୱାରା ବିକାଶ ଲାଭ କରିଥିଲା, ତାହା ପୂର୍ବ ପରିଚ୍ଛେଦରେ କୁହାଯାଇଛି ।

ମହାରାଜା ବିକ୍ରମାଦିତ୍ୟ-ଚନ୍ଦ୍ରଗୁପ୍ତଙ୍କ ରାଜସଭାରେ ମହାକବି କାଳିଦାସଙ୍କ ପରି କିମ୍ବା ମହାରାଜା ହର୍ଷବର୍ଦ୍ଧନଙ୍କ ସଭାରେ ମହାକବି ବାଣଭଟ୍ଟଙ୍କପରି ଅଥବା କାନ୍ୟକୁବ୍ଜର ମହାରାଜା ଯଶୋବର୍ମନ୍ଙ୍କ ରାଜସଭାରେ ମହାକବି ଭବଭୂତିଙ୍କପରି ଉତ୍କଳର ମହାରାଜା ଚୋଡ଼ଗଙ୍ଗଙ୍କ ରାଜସଭାରେ ମହାକବି ଜୟଦେବ ଉଚ୍ଚ ଆସନ ପାଇଥିଲେ । ତାଙ୍କର ରଚିତ 'ଗୀତଗୋବିନ୍ଦ'ରେ 'କଳିଙ୍ଗ ସଙ୍ଗୀତ'ର ରାଗଗୁଡ଼ିକ ପ୍ରଯୁକ୍ତ ହୋଇ ଅତି ଲଳିତ ପଦାବଳୀରେ ତାହା ଅତ୍ୟନ୍ତ ମନୋରମ ଏକ ଦୃଶ୍ୟକାବ୍ୟରେ ପରିଣତ ହୋଇଥିଲା । ସେଥିର ଯେଉଁ ରାଗଗୁଡ଼ିକ ପ୍ରୟୋଗ କରାଯାଇଛି ତାହା ଓଡ଼ିଶାରେ ପ୍ରଚଳିତ ନିମ୍ନୋକ୍ତ ରାଗଗୁଡ଼ିକ ବୋଲି ଜଣାଯାଏ । ଯଥା—ଗୁର୍ଜରୀ, ରାମକେରୀ, ବରାଡ଼ି ପ୍ରଭୃତି । ଖ୍ରୀ: ୧୬ଶ ଶତାବ୍ଦୀ ଓ ତତ୍ପରେ ଓଡ଼ିଆ କବିମାନେ ନିମ୍ନୋକ୍ତ ରାଗଗୁଡ଼ିକ ବ୍ୟବହାର କରିଛନ୍ତି—ମଙ୍ଗଳଧନାଶ୍ରୀ, ରାମକେରୀ, କେଦାର ଚକ୍ରକେଳୀ,

† ଏ ସମ୍ପର୍କରେ ଅଧିକ ତଥ୍ୟ ଏ ଲେଖକର ଗୋଟିଏ ଓଡ଼ିଆ ପ୍ରବନ୍ଧରେ ଉଲ୍ଲେଖ ଅଛି ('ପଞ୍ଚଜନ୍ୟ' ସାହିତ୍ୟ ପତ୍ରିକା, ଭୁବନେଶ୍ୱର, ୧୯୯୦ ସାଲ ଦୁର୍ଗାପୂଜା ସଂଖ୍ୟା ପୃ ୧୦-୧୩ ଦେଖ) ।

ଭୈରବୀ, ଆଷାଢ ଶୁକ୍ଳ, ମଙ୍ଗଳ-ଗୁର୍ଜ୍ଜରୀ, ଗୁର୍ଜ୍ଜରୀ, କଲ୍ୟାଣି, ବଙ୍ଗଳାଶ୍ରୀ, ବସନ୍ତ, କାମୋଦୀ କୌଶିକ, ମାଳବ, ଭୂପାଳ ପ୍ରଭୃତି । (୧)

ମହାକବି ଜୟଦେବଙ୍କ 'ଗୀତଗୋବିନ୍ଦ'ର 'ରସ କଦମ୍ବ କଲ୍ଲୋଳିନୀ' ନାମକ ଟୀକା ଲେଖିବାକୁ ଯାଇ ଭଗବଦ୍ ଦାସ (ଖ୍ରୀ: ୧୬୦୦-୧୬୬୮) ଜୟଦେବଙ୍କୁ ପ୍ରଶଂସା କରି ନିମ୍ନୋକ୍ତ ଶ୍ଳୋକଟି ଲେଖିଛନ୍ତି—

"ପ୍ରଫୁଲ୍ଲ ଭଗବତ୍ପଦଂ ରସ କଦମ୍ବକଲ୍ଲୋଳିନୀ
ପ୍ରଫୁଲ୍ଲସୁରୁ ମୋହନେ ଭଜନ ତାନ ସମ୍ବର୍ଦ୍ଧିନୀ ।
ସମସ୍ତ ପଣ୍ଡିତବ୍ରତସୁ ବପିତା ଗୀତଗୋବିନ୍ଦତଃ
ପ୍ରଶସ୍ତ ରସବାସିକା ମଧୁର ପୁଷ୍ପ-ମଞ୍ଜୁର୍ଷିକା ।।" (୨)

ଏକଦା ସୁପ୍ରତିଷ୍ଠିତ ସଂସ୍କୃତଜ୍ଞ ପଣ୍ଡିତ ଡା. ଭି. ରାଘବନ୍ ପୁରୀ ସଦାଶିବ ସଂସ୍କୃତ ମହାବିଦ୍ୟାଳୟରେ ଉତ୍କଳକୁ ଲକ୍ଷ୍ୟକରି ଭାଷଣ ପ୍ରସଙ୍ଗରେ କହିଥିଲେ—

"କୋବା ଉକ୍ତଃ ଏତଦ୍ଦେଶ ପ୍ରତିଷ୍ଠିତ ଜଗନ୍ନାଥଂ ନପଶ୍ୟତି
କୋବା ସାହିତ୍ୟକ ଏତଦ୍ଦେଶ ପ୍ରସୂତଂ ସାହିତ୍ୟ ଦର୍ପଣାଂନାଧୀତେ
କୋବା ଗାୟକଃ ଏତଦ୍ଦେଶ ପ୍ରସୂତଂ ଗୀତଗୋବିନ୍ଦ ନ ଗାୟତି ।।।" (୩)

ବାସ୍ତବରେ ଭରତଙ୍କ ନାଟ୍ୟଶାସ୍ତ୍ର ତଥା ଶାସ୍ତ୍ରୀୟ ସଙ୍ଗୀତ ଯେଉଁମାନେ ଶିକ୍ଷା କରନ୍ତି, ସେମାନେ ଗୀତଗୋବିନ୍ଦର ଗାନଗୁଡ଼ିକ ଉଚ୍ଚସ୍ଥାନ ଦେଇଥିବା ଦେଖାଯାଏ । ଭାରତ ବାହାରେ ମଧ୍ୟ ବୈଦେଶିକ ପଣ୍ଡିତମାନେ 'ଗୀତଗୋବିନ୍ଦ'ର ଉଚ୍ଚ ପ୍ରଶଂସା କରିଛନ୍ତି । ଡା. ଏମ୍. ଭିଣ୍ଟାର୍ନିଜ୍ (Dr. M. Winternitz) ଲେଖିଛନ୍ତି—

It is true that Jayadeva belongs to the greatest poetical genii of India. It is, however, astonishing that he was able to combine so much passion and sentiment of love, so much alliteration in language, that often resounds as pure music in our ears, with such an ornate and yet

---

୧ O. H. R. J, Vol. XXVI & XXVI PP. 4-5 ff

୨ I. H. Q., Vol. XIX, 1943, P. 365

୩ ଉତ୍କଳ ପ୍ରସଙ୍ଗ ମେ, ୧୯୯୧, ଜୟଦେବ ବିଶେଷାଙ୍କ ପୃ ୨୨

artificial a form. It is no wonder that in India the poem enjoys unusal popularity and has always found admirers even outside India. (୪)

ଦିଲ୍ଲୀର ଚୌହାନବଂଶୀୟ ମହାରାଜ ପୃଥ୍ୱୀରାଜଙ୍କ (ଖ୍ରୀ: ୧୧୭୯-୧୧୯୨) ରାଜତ୍ୱକାଳରେ ଚନ୍ଦ (ଚନ୍ଦ୍) କବି ରାଜସ୍ଥାନୀ ଭାଷାରେ ଲେଖିଥିବା 'ପୃଥ୍ୱୀରାଜ ରାସୋ' (୫) ନାମକ କାବ୍ୟରେ ଉଲ୍ଲେଖ କରିଥିବା ଆଠଜଣ କବିଙ୍କ ମଧ୍ୟରେ ଜୟଦେବଙ୍କ ନାମ ଉଲ୍ଲେଖ ଅଛି । ତାଙ୍କ ଗ୍ରନ୍ଥଟିରେ ସେ ଲେଖିଛନ୍ତି—"ଜୟଦେବ ଅଠ୍ଠ କବି କବିରାୟଂ, ଜନେ କେବଲଂ କରି ଗୋବିନ୍ଦ ଗାୟଂ ।" ସେହି ଗ୍ରନ୍ଥରେ 'ଗୀତଗୋବିନ୍ଦ' ଅନୁକରଣରେ ଦଶାବତାର ବନ୍ଦନା ମଧ୍ୟ ସେ ଲେଖିଛନ୍ତି ।

ବାସ୍ତବରେ ଭାରତରେ ଗୀତଗୋବିନ୍ଦ ଏତେଦୂର ଆଦୃତ ହୋଇଥିଲା ଯେ, ସେଥିର ଗୋଟିଏ ଶ୍ଳୋକ ୧୨୯୨ ଖ୍ରୀଷ୍ଟାବ୍ଦରେ ଖୋଦିତ ଅଭିଲେଖରେ ଉଦ୍ଧୃତ କରାଯାଇଥିଲା (J. A S. B., N. S. 2190 b ff. S. K. De, H. S. I. P. 390 f) । ଆଉ ମଧ୍ୟ ଅନ୍ୟ ଏକ ଅଭିଲେଖରେ ୧୨୦୧ ଖ୍ରୀଷ୍ଟାବ୍ଦରେ ଗୋଟିଏ ଶ୍ଳୋକ ଉଦ୍ଧୃତ ହୋଇଛି । (ରାଜା ସାରଂଗଦେବଙ୍କ ଅନାବାଡ଼ା (Anavada Inscription) ଅଭିଲେଖରେ ମଂଗଳ ଶ୍ଳୋକରୂପେ ୧୨୦୧ ଖ୍ରୀଷ୍ଟାବ୍ଦରେ ଗୀତ-ଗୋବିନ୍ଦର ନିମ୍ନୋକ୍ତ ଶ୍ଳୋକଟି ଖୋଦିତ ହୋଇଛି—"ବେଦାନୁଦ୍ଧରତେ ଜଗନ୍ତି ବହତେ......ଇତ୍ୟାଦି (Dr. R Bhandarkar, Poona I. A. Vol XLI P. 21 ff) ଏ ଲେଖକର Invocatory Vrs from Inscription, Vol. I. P. 143 ଦେଖ) ।

ଜୟଦେବଙ୍କ ରଚିତ ଦ୍ୱାବିଂଶକ୍ଷରଯୁକ୍ତ ଛନ୍ଦରେ ଯେପରି ମଧୁର ସଂଗୀତ ରହିଛି, ସେପରି ଦ୍ୱାବିଂଶକ୍ଷର ଯୁକ୍ତ ଗୋଟିଏ ଶ୍ଳୋକ ଏଠାରେ ଏକ ପ୍ରବଚନ ଆମର ସ୍ମରଣ ହୁଏ । 'ବିନାଶ୍ରୟ ନ ବର୍ତ୍ତନ୍ତେ କବିତା ବନିତା ଲତା' ଅର୍ଥାତ୍ ବିନା-ଆଶ୍ରୟରେ କବିତା, ବନିତା ଓ ଲତା ବର୍ତ୍ତିପାରନ୍ତି ନାହିଁ । ତେଣୁ ଜୟଦେବଙ୍କ କବିତା ମଧ୍ୟ କୌଣସି ପୂର୍ବ କବିତାକୁ ଆଶ୍ରୟ କରିଥିବ ବୋଲି ମନେ ହୁଏ ।

---

୪ History of Indian Literature, Vol. IV P. 140 f

୫ ଦିଲ୍ଲୀର ଶେଷ ହିନ୍ଦୁ ସମ୍ରାଟ ପୃଥ୍ୱୀରାଜଙ୍କ ରାଜତ୍ୱକାଳରେ ଅର୍ଥାତ୍ ଖ୍ରୀ: ୧୧୭୯-୧୧୯୨ ମଧ୍ୟରେ 'ପୃଥ୍ୱୀରାଜ ରାସୋ' ରଚିତ ହୋଇଥିଲା । ସେତେବେଳେ ଉତ୍କଳ (ଶ୍ରୀ ଜଗନ୍ନାଥ ରାଜ୍ୟ)ରେ ଗଙ୍ଗବଂଶ ଗଙ୍ଗ ପୁତ୍ରମାନେ ରାଜତ୍ୱକାଳରେ ଦେବଦାସୀମାନେ ଶ୍ରୀ ପୁରୁଷୋତ୍ତମ ମନ୍ଦିରରେ ଗୀତଗୋବିନ୍ଦ ଗାନ କରୁଥିଲେ ।

ଜୟଦେବଙ୍କ ରଚିତ ଦ୍ୱାବିଂଶାକ୍ଷରଯୁକ୍ତ ଛନ୍ଦରେ ଯେପରି ମଧୁର ସଙ୍ଗୀତ ରହିଛି, ସେପରି ଦ୍ୱାବିଂଶାକ୍ଷର ଛନ୍ଦରେ ସଂସ୍କୃତ ଶ୍ଳୋକ ଖ୍ରୀ: ୮ମ ଶତାବ୍ଦୀରେ ବାଦାମୀର ଚାଲୁକ୍ୟବଂଶୀୟ ମହାରାଜ କୀର୍ତ୍ତିବର୍ମା (୨ୟ)ଙ୍କର ଏକ ଅଭିଲେଖରେ ଖୋଦିତ ହୋଇଥିବା ଦେଖାଯାଏ । ନିମ୍ନରେ ତାହା ଉଦ୍ଧୃତ ହେଲା—

"ସ ବାମବାହୁ ପରିରମ୍ଭିତ ବଦନ ପୟୋଧରେସ୍ଥଲୋ
ଅଳିକୁଲଲୋଳ ଅଳକାବଳି ବଧୂତ କଗ୍ରମଣ୍ଡଲୋ
ଦଣ୍ଡଶଗଜଭୁଜ କରଣ ପରିବର୍ତ୍ତିତ ରାଗରସାଦ ବର୍ଦ୍ଧିତୋ
ବିକସିତ ପୁଣ୍ଡରୀକ ପ୍ରତିମୋ ହରଗୌରୀ ସଙ୍ଗମୋ ସଦସ୍ତୁବୁ ।"

ଏହି ଅଭିଲେଖଟି ସମ୍ପାଦନ କରିବାକୁ ଯାଇ ଡ଼ା. ଫ୍ଲିଟ ନିମ୍ନପ୍ରକାରେ ତାଙ୍କର ମତବ୍ୟକ୍ତ କରିଛନ୍ତି—

"We have here evidently a verse, in the 'Akrti' group of meters though the form in which it stands is not correct, the first two padas contain 22 feet,and are exactly uniform with each other, the third pada, however, contains 23 feet and matches the preceeding two in only the last seven feet, and the fourth pada, though it contains only 22 feet, is uniform with first seven feet. The verses seem to have been quoted, with imperfect collection from some saiva poem, similar to the Vaisnava Gitagovinda."

ଡ଼. ଫ୍ଲିଟ୍ ଏହି ଶ୍ଳୋକର ବ୍ୟବହୃତ ଛନ୍ଦକୁ 'ଆକୃତି' ପରିବାର ବୋଲି କହି ଶେଷରେ ଯେଉଁ ମତ ଦେଇଛନ୍ତି, ତାହା ଆମର ପ୍ରଣିଧାନଯୋଗ୍ୟ । ସେ କହନ୍ତି ଯେ, ଏ ଶ୍ଳୋକର ପ୍ରତିପାଦ ସମାନ ଅକ୍ଷରଯୁକ୍ତ ହୋଇନାହିଁ । ତେଣୁ ବୋଧହୁଏ ତାହା ସଙ୍ଗୀତ-ପଦ୍ଧତିରେ ରଚିତ ହୋଇଥିବ ଏବଂ ଖ୍ରୀ: ୮ମ ଶତାବ୍ଦୀ ପୂର୍ବର କୌଣସି 'ଶୈବ-କାବ୍ୟ'ରୁ ଶ୍ଳୋକଟି ଉଦ୍ଧାର କରାଯାଇଥିବ । ସମ୍ଭବତଃ ଜୟଦେବଙ୍କ ବୈଷ୍ଣବ-କାବ୍ୟ 'ଗୀତଗୋବିନ୍ଦ' ପ୍ରଭାକ ତାହା 'ହରଗୌରୀ'ଙ୍କ ଲୀଳା ବିଷୟକ କାବ୍ୟ ହୋଇଥିବ, ଯାହାକି ୧୨ଶ ଶତାବ୍ଦୀର କବି ଜୟଦେବଙ୍କୁ ପ୍ରେରଣା ଦେଇଥିଲା । କାରଣ 'ଗୀତଗୋବିନ୍ଦ'ର ପ୍ରଥମ ଗୀତଟି ସେହି ଦ୍ୱାବିଂଶାକ୍ଷର ଛନ୍ଦରେହିଁ ରଚିତ ହୋଇଅଛି । ଯଥା—

ଲଳିତ ଲବଙ୍ଗଲତା ପରିଶୀଳନ କୋମଳ ମଳୟ ସମୀରେ
ମଧୁକର ନିକର କରମ୍ବିତ କୋକିଳ କୂଜିତ କୁଞ୍ଜକୁଟୀରେ ।

ଏଣୁ ୮ମ ଶତାବ୍ଦୀରେ ଖୋଦିତ ଅଭିଲେଖର ଶ୍ଲୋକପରି ଛନ୍ଦ ଓ ଭାଷା ଲାଳିତ୍ୟରେ ଏଥିରେ ସାମଞ୍ଜସ୍ୟ ଦେଖାଯାଉଛି । ଆମ୍ଭେ ଅନୁମାନ କରିପାରୁ ଯେ, କୌଣସି ଶୈବ କାବ୍ୟର ପ୍ରଭାବ 'ଗୀତଗୋବିନ୍ଦ'ରେ ପଡ଼ିଥିବ । ଆଉ ମଧ୍ୟ ସେହି ପ୍ରାଚୀନ ଶୈବ କାବ୍ୟଟି ସମ୍ଭବତଃ ଦକ୍ଷିଣ ଭାରତର ଚାଲୁକ୍ୟବଂଶୀୟ ଜଣେ ଶୈବ ରାଜାଙ୍କ ସଭାକବି ରଚନା 'ହରଗୌରୀ'ଙ୍କ କେଳି ବର୍ଣ୍ଣନାପରି ଜୟଦେବଙ୍କୁ ପ୍ରଭାବିତ କରି 'ରାଧାକୃଷ୍ଣ'ଙ୍କ କେଳି 'ଗୀତଗୋବିନ୍ଦ'ରେ ବର୍ଣ୍ଣିତ ହୋଇଥିବ । ଫଣୀକାନ୍ତ ଚଟ୍ଟୋପାଧ୍ୟାୟଙ୍କ ମତାନୁସାରେ, 'ଗୀତଗୋବିନ୍ଦ' ସମ୍ପର୍କରେ ଏକ ପ୍ରକାର 'ଯାତ୍ରା' (a type of Yatra in Sanskrit) (1) Peschel ତାଙ୍କର History of Literature (P. 22) ରେ କହିଛନ୍ତି ଯେ, "it is further removed from the first beginnings of drama, because the poet has left no room for improvisation, even the transition having been cast by him in a firm mold".ତେଣୁ ତାହା ଏକ Melodrama (ଗୁଆଙ୍ଗ) ବୋଲି ସ୍ଥିର କରିଛନ୍ତି ।

'ଗୀତଗୋବିନ୍ଦ' ସଦୃଶ ଏକ କୃଷ୍ଣ ଲୀଳାତ୍ମକ ନାଟକ (ଗୁଆଙ୍ଗ) ଏକଦା ମାଳବରେ ଅଭିନୀତ ହୋଇଥିଲା । ଏ ସମ୍ପର୍କରେ ଏମ୍. ଭିଣ୍ଟାରନିଜ୍ ଲେଖିଛନ୍ତି; "A classified Index to the sanskrit manuscript in the place at Tanjore, London 1880, p 157. One Krsna-natak, that is a lyrical drama, that is said to be of the type of Gita Govinda is placed in Malahar even during these days and not by professional actors. (2)

ବାସ୍ତବରେ 'ଗୀତଗୋବିନ୍ଦ' ଗୋଟିଏ 'ନାଟ୍ୟ-ଲୀଳା' ବା ଗୁଆଙ୍ଗ, ଯାହାକି ଓଡ଼ିଶାର ସର୍ବସାଧାରଣଙ୍କ ପାଇଁ ଖୋଲାକନ୍ଦରେ ପ୍ରଦର୍ଶିତ ହୁଏ । 'ଗୀତଗୋବିନ୍ଦ'କୁ ଅନୁକରଣ କରି ବହୁ କବି ପରବର୍ତ୍ତୀ କାଳରେ ନାଟ୍ୟ ସଙ୍ଗୀତ ରଚନା କରିଥିଲେ । କବିଭୂଷଣ କମଳଲୋଚନ ଚଡ଼ଗୁପ୍ତ ଓଡ଼ିଶାରେ ଜନ୍ମଗ୍ରହଣ କରି ନାଗପୁର ଭୋନସଲଙ୍କ ଦରବାରରେ ସମ୍ମାନିତ ହୋଇଥିଲେ । Mr. V. M. Karmbalkar ନାମକ ମହାରାଷ୍ଟ୍ରର ଜଣେ ଐତିହାସିକ ତାଙ୍କୁ ବଙ୍ଗୀୟ କବି ବୋଲି ଭୁଲରେ ଲେଖିଛନ୍ତି—

---

୧ Indische Essays, Zurich, 1883, P. 4

୨ M. Winternitz, H. J. L., Vol III, P. 146

probability a Bengali Brahman brought over to Nagpur by Bhonsla Raja from Bengal in one of his campaigns in that province." †

ଏହି ଭୁଲ ବ୍ୟାଖ୍ୟାନର ପ୍ରତିବାଦ କରି ସ୍ୱର୍ଗୀୟ କେଦାରନାଥ ମହାପାତ୍ର ଗୋଟିଏ ପ୍ରବନ୍ଧରେ O. H. R. J. Vol (I) No. 2 PP 139-144 (June 1949) ଲେଖିଛନ୍ତି "କମଳଲୋଚନଙ୍କ କୃତ 'ଗୀତ ମୁକୁନ୍ଦ', 'ସଙ୍ଗୀତ ଚିନ୍ତାମଣି', 'ବ୍ରଜଯୁବ ବିଳାସ' (୧) ଓ 'ଭଗବଲ୍ଲୀଳା ଚିନ୍ତାମଣି' ନାମକ ଚାରିଟି ଗ୍ରନ୍ଥ ଏବେ ମିଳୁଛି । ଏଥିର ପ୍ରଥମ ଦୁଇଟି ଗ୍ରନ୍ଥ 'ଗୀତଗୋବିନ୍ଦ' ଅନୁକରଣରେ ଲେଖାଯାଇଛି । ସେ ତାଙ୍କ ଶେଷ ଗ୍ରନ୍ଥରେ ନିଜର ପରିଚୟ ନିମ୍ନପ୍ରକାରେ ଦେଇଛନ୍ତି—

"ଯତ୍ର ପ୍ରତିଷ୍ଠିତ କାବ୍ୟାଗମ ରଚନାପଟୁଃ ଶ୍ରୀଲ ଗୋବିନ୍ଦନାମ ।
ତସ୍ୟାସୀତ୍ ନନ୍ଦନୋ ଯଃ ସକଳଗୁଣଗତା ବନ୍ଦିତଃ କୃଷ୍ଣଚନ୍ଦ୍ରଃ ।
ତସ୍ୟାତ୍ମଜଃ କମଳଲୋଚନ ନାମଧେୟଃ
ଶ୍ରୀମାନଶୈଳ ନିଳୟଂ କଳୟନ୍ ଅକସ୍ମାତ୍ ।
(ଭଗବଲ୍ଲୀଳା ଚିନ୍ତାମଣି)

କବି କମଳଲୋଚନଙ୍କ ସଙ୍ଖ୍ୟା ଖଣ୍ଡଗିରିସ୍ଥ ଥିଲା । ଏପରି ସଙ୍ଖ୍ୟା କେବଳ ଦକ୍ଷିଣ ଓଡ଼ିଶାର ଏକ ବ୍ରାହ୍ମଣ ସମ୍ପ୍ରଦାୟ ବ୍ୟବହାର କରନ୍ତି । ସେମାନେ ଅଦ୍ୟାପି ସେହି ସଙ୍ଖ୍ୟା ବହନ କରି ଖିମୁଣ୍ଡିରେ ରହୁଅଛନ୍ତି ।

'ସଙ୍ଗୀତ ଚିନ୍ତାମଣି' ନାମକ ଗ୍ରନ୍ଥରେ 'ଗୁର୍ଜ୍ଜରୀ' ରାଗରେ ରଚିତ ନିମ୍ନୋକ୍ତ ଗୀତଟି ଉଲ୍ଲେଖ କରାଯାଇଛି—

"ମସ୍ତକ ବିଳସଦଖଣ୍ଡ ଶିଖିକମଣ୍ଡଳ ମଣ୍ଡିତ କେଶମ୍ ।
ମଦନ ଶତାଙ୍କୁର ଗର୍ବ ଦଳନକର ବିରଚିତ ନଟବର ବେଶମ୍ ॥
ରାଧେ, ଭଜ ବ୍ରଜରାଜ କୁମାରମ୍,
ବର ମୁରଳୀକର ମୁକୁଟଧର ହାରମ୍ ॥ ଧ୍ରୁ ॥

† I. H. Q., Vol. XXV, No. 2 June 1949

(୧) ପଣ୍ଡିତ କୁଳମଣି ମିଶ୍ରଙ୍କ (ପୁରୀ) ପ୍ରବନ୍ଧ 'ଚତୁରଙ୍ଗ' (ସାହିତ୍ୟ ପତ୍ରିକା) ୨ୟ ଭାଗ, ୬ଷ୍ଠ ସଂଖ୍ୟା (୧୯୪୭) ପୃ ୨୨୪ ଦ୍ରଷ୍ଟବ୍ୟ ।

ରଞ୍ଜିତ କୃଷ୍ଣନେତ୍ରଚନ ମଞ୍ଜୁଳ ଗତି ଜିତ ଖଞ୍ଜନ ପୁଞ୍ଜମ୍
ସ୍ମିତକର ସୁନ୍ଦର ହସିତ ମଧୁରରସଦଧିଗତ କୁଞ୍ଜମ୍
ଭାଲଧୌତାମଳତଳ ଲଳିତ ମଳକାବଳି କବଳିତ ଭ୍ରମମ୍
ଗଣ୍ଡ ଲସିତ ମଣିକୁଣ୍ଡଳମିଙ୍ଗିତ ରଙ୍ଗ ବିଶାଳମ୍ ।

[ I. H. Q, Vol XXV, 1949 P. 99 ]

ଜୟଦେବଙ୍କ ରଚିତ "ଲଳିତ ଲବଙ୍ଗଲତା"......ପ୍ରଭୃତି ଗୀତଟି ଯେପରି 'ଗୁର୍ଜ୍ଜରୀ ରାଗ' ଓ 'ଜଃସାର' ତାଳରେ ଗାନ କରାଯାଏ, ସେପରି ଉପରୋକ୍ତ ଗୀତଟି ମଧ୍ୟ ଗାନ କରାଯାଉଥିଲି ।

'ଗୀତଗୋବିନ୍ଦ'ର ଗୀତଗୁଡ଼ିକ ଶାସ୍ତ୍ରୀୟ-ସଙ୍ଗୀତ ନିୟମରେ ଗାନ କରାଯାଉଥିଲେ ହେଁ, ସେହି ଗାନକୁ ପରବର୍ତ୍ତୀ କାଳର ସଙ୍ଗୀତଜ୍ଞ କବିମାନେ ଅନୁକରଣ କରି ଗୀତନାଟ୍ୟ ରଚନା କରିଥିଲେ ପୂର୍ବ ଭାରତରେ ବିଶେଷତଃ ବଙ୍ଗଦେଶରେ ସେହି ଶାସ୍ତ୍ରୀୟ ସଙ୍ଗୀତର ପ୍ରଚଳନ ଅଭାବରୁ, ଏଥିର ବିରୋଧ କରି ବଙ୍ଗୀୟ ଲେଖକ ଡ଼ା. ପ୍ରଶାନ୍ତ କୁମାର ଦାସଗୁପ୍ତ ଲେଖିଛନ୍ତି ଯେ, ତାହା ସଙ୍ଗୀତ ନୁହେଁ; କିନ୍ତୁ ପ୍ରବନ୍ଧ (୧) । କାରଣ ଜୟଦେବ ତାଙ୍କ 'ଗୀତ ଗୋବିନ୍ଦ'ରେ ନିମ୍ନୋକ୍ତ ଶ୍ଳୋକରେ ତାହା 'ପ୍ରବନ୍ଧ' ବୋଲି ଉଲ୍ଲେଖ କରିଛନ୍ତି—

"ଶ୍ରୀବାସୁଦେବ ରତି କେଳି କଥା ସମେତ
ମେତଂ କରୋତି ଜୟଦେବ କବିଃ ପ୍ରବନ୍ଧମ୍" ।

କିନ୍ତୁ ଡ଼: ଦାସଗୁପ୍ତଙ୍କର ଏହା ସମ୍ପୂର୍ଣ୍ଣ ଭ୍ରମାତ୍ମକ ସିଦ୍ଧାନ୍ତ । ଜୟଦେବଙ୍କ 'ଗୀତ-ଗୋବିନ୍ଦ' ନାମରୁ ତାହା ଶ୍ରୀ ଗୋବିନ୍ଦଙ୍କ 'ରତି କେଳି' କଥା (ବିଷୟ)ରେ ଗୀତ ସମୂହକୁ ହିଁ ସୂଚିତ କରୁଛି । 'ଗୀତ ଗୋବିନ୍ଦ' ପରି 'ଗୀତ ମୁକୁନ୍ଦ'କୁ ମଧ୍ୟ କଣ ପ୍ରବନ୍ଧ ବୋଲି କୁହାଯିବ ?

'ଗୀତ ଗୋବିନ୍ଦ'କୁ ଅନୁକରଣ କରି ସୁମଧୁର ସଲାପ ଯୁକ୍ତ ସଂସ୍କୃତପ୍ରଧାନ ରାମକୃଷ୍ଣ ନାମକ ଗୁଜରାଟର ଜଣେ କବି "ଗୋପାଳ କେଳି ଚନ୍ଦ୍ରିକା" ନାମକ ଗ୍ରନ୍ଥରେ

(୧) ଜୟଦେବ ତାଙ୍କର ଗୋଟିଏ ଶ୍ଳୋକରେ ଲେଖିଛନ୍ତି "ସନ୍ଦର୍ଭ ଶୁଦ୍ଧି-ଗିର" ଅର୍ଥାତ୍ ସେ ତାଙ୍କର ସଙ୍ଗୀତ ଭିତ୍ତିକ ଶ୍ଳୋକଗୁଡ଼ିକ ଉତ୍ତମ ରୂପେ ଭାଷାରେ ଗୁନ୍ଥି ପାରିଥିଲେ ଏବଂ 'ପ୍ରବନ୍ଧ'ରେ (କାବ୍ୟ) ତାହା ରୂପାୟିତ କରିଥିଲେ ।

୧୨ଶ ଶତାବ୍ଦୀରେ ରଚନା କରିଥିଲେ । (୧) ଠିକ୍ ସେହିକବେଳେ ବା ତା’ ପୂର୍ବରୁ ଜଗଦ୍‌ଦତ୍ତ (ଖ୍ରୀ ୧୦୭୫-୧୧୫୪) ଲେଖିଥିବା "ଉପଦେଶ ରସାୟନ ରାସ" ନାମକ ଗ୍ରନ୍ଥରେ ପ୍ରାପ୍ତ ୮୦ଟି ଶ୍ଳୋକ ରାଗ-ରାଗିଣୀ ଓ ତାଳ-ଲୟ ନିୟମରେ ରଚିତ ହୋଇ ସେଥିରେ ଯୋଗ କରାଯାଇଥିବା ଦେଖିବାକୁ ମିଳେ । (୨) ଜୟଦେବଙ୍କ ପୂର୍ବବର୍ତ୍ତୀ କବି ବିଲ୍ୱମଙ୍ଗଳଙ୍କ ରଚିତ 'କୃଷ୍ଣକର୍ଣ୍ଣାମୃତ" ରେ ଯେଉଁ ସଙ୍ଗୀତ ଭକ୍ତିକ ଶ୍ଳୋକ ଗୁଡ଼ିକ ରଚନା କରାଯାଇଛି, ତାହା ଗୀତଗୋବିନ୍ଦର ମାଧୁର୍ଯ୍ୟକୁ ଟପିପାରି ନାହିଁ ।

ଯେଉଁ ସମୟରେ 'ଗୀତ ଗୋବିନ୍ଦ' ରଚିତ ହୋଇଥିଲା, ତାହା ନିଶ୍ଚିତ ଭାବେ ମହାରାଜ ଚୋଡ଼ଗଙ୍ଗଙ୍କ ଉତ୍କଳ ଜୟପରେ କଳିଙ୍ଗ ସଙ୍ଗୀତକୁ ଭକ୍ତି କରିଥିଲା । ତା’ ନହେଲେ ୧୨୦୧ ଖ୍ରୀଷ୍ଟାବ୍ଦରେ ରାଜା ସାରଙ୍ଗଦେବଙ୍କ ଗୋଟିଏ ଅଭିଲେଖରେ କିପରି 'ଗୀତଗୋବିନ୍ଦର' ନିମ୍ନୋକ୍ତ ଦଶାବତାର ବନ୍ଦନା ଶ୍ଳୋକଟି ଖୋଦିତ ହୋଇଥାଆନ୍ତା ।

"ବେଦାନୁଦ୍ଧରତେ ଜଗନ୍ତି ବହତେ ଭୂଗୋଲମୁଦ୍‌ବିଭ୍ରତେ
ଦୈତ୍ୟଂ ଦାରୟତେ ବଳିଂ ଛଳୟତେ କ୍ଷତ୍ର କ୍ଷୟଂ କୁର୍ବତେ ।
ପୌଲସ୍ତ୍ୟଂ ଜୟତେ ହଳଂ କଳୟତେ କାରୁଣ୍ୟ ମାତନ୍ୱତେ
ମ୍ଳେଚ୍ଛାନ୍ ମୂର୍ଚ୍ଛୟତେ ଦଶାକୃତି କୃତେ କୃଷ୍ଣାୟତୁଭ୍ୟଂ ନମଃ" ।

ସୁତରାଂ ୧୨୦୧ ଖ୍ରୀଷ୍ଟାବ୍ଦରେ 'ଗୀତ ଗୋବିନ୍ଦ' ଭାରତର ଦୂର ପ୍ରଦେଶ-ମାନଙ୍କରେ ବିଶେଷତଃ ଦକ୍ଷିଣ ଓ ପଶ୍ଚିମାଞ୍ଚଳରେ ହିଁ ପ୍ରସାର ଲାଭ କରିଥିଲା । ଏଦୃଷ୍ଟିରୁ ବିଚାର କଲେ ଜଣାଯାଉଛି ଯେ, 'ଗୀତ ଗୋବିନ୍ଦ' ଅନ୍ତତଃ ୧୧୫୦ ଖ୍ରୀଷ୍ଟାବ୍ଦ ଆଗରୁ ରଚିତ ହୋଇଥିଲା । ଅନ୍ୟ ମତରେ ମହାରାଜା ଉତ୍କଳ ଜୟ ପରେ ଏବଂ ତାଙ୍କ ଜୀବିତ କାଳ ଅର୍ଥାତ୍ ଖ୍ରୀ ୧୧୧୨-୧୧୪୭ ମଧ୍ୟରେ ଜୟଦେବଙ୍କ 'ଗୀତ ଗୋବିନ୍ଦ' ଗୀତନାଟ୍ୟ ଶ୍ରୀପୁରୁଷୋତ୍ତମଙ୍କ ମନ୍ଦିର ସମ୍ମୁଖରେ ଅଭିନୀତ ହୋଇଥିଲା । 'ଗୀତ ଗୋବିନ୍ଦ' ଅନୁକରଣରେ ଶ୍ରୀରାମାରାମ ନାମକ ଜଣେ କବି "ଗୀତ-ପୀତ-ବସନ' ନାମକ ଗୋଟିଏ ଗ୍ରନ୍ଥ ସଙ୍ଗୀତ ମାଧ୍ୟମରେ ରଚନା କରିଥିଲେ । ସେହି ଗ୍ରନ୍ଥର ଗୋଟିଏ ମାତ୍ର ପୋଥି ଏ ପର୍ଯ୍ୟନ୍ତ ମିଥିଳାରୁ ମିଳିଛି ଏବଂ ସେଥିରେ କବିଙ୍କ ପରିଚୟ ସମ୍ପର୍କରେ ନିମ୍ନୋକ୍ତ ଶ୍ଳୋକଟି ବ୍ୟତୀତ ଅନ୍ୟକିଛି ତଥ୍ୟ ମିଳିନାହିଁ:—

(୧) M. Winiternitz. H. I. L. Vol III P 274-5.

(୨) Ibid. P 570.

"ମାତା ଯସ୍ୟ ଧରାଧରେନ୍ଦ୍ର ତନୟା ଗୁଲ୍ୟାନ୍ନପୂର୍ଣ୍ଣା କୃତ ।
ତାତୋ ଯସ୍ୟ ମହାଶୟୋ ଦଶରଥନନ୍ଦା (ସ୍ଥା) ବନୀସ୍ଥାଦ୍ଧି କଃ ।
ରାଧାମାଧବ-କେଳି କୌଶଳ-କଥାଂ କାନ୍ତଂ କବୀନାଂମୁଦେ
କାବ୍ୟଂ ଭବ୍ୟମିଦଂ ଚକାରସ ନବ ଶ୍ରୀଶାମାରାମଂ କବିଃ ।" (୧)

'ଗୀତଗୋବିନ୍ଦ' ଅନୁକରଣରେ ସେଥିର କେତେଗୁଡ଼ିଏ ସଙ୍ଗୀତ ରଚିତ ହୋଇଥିବା ଜଣାଯାଏ । ସେଥିରେ ଅନ୍ୟତ୍ର ଲେଖାଯାଇଛି—

"ଗୀତଂ ବୁଧୈ ର୍ଯଦି ସୁଧାରସମେବ ପୀତମ୍
ଶ୍ରୀ କାଲିଦାସ ଜୟଦେବ କବି ପ୍ରଣୀତମ୍ ।
ତାମ୍ବୂଲ ଭୁକ୍ତମପିତେ ମମମାନସଲ୍ଲୁ
ଶ୍ରୀ ଗୀତ ପୀତ ବସନଂ ମଦନୁଗ୍ରହେଣ" ।

କବି ଶ୍ରୀ ଶାମାରାମଙ୍କ ଜନ୍ମସ୍ଥାନ କିମ୍ବା ଅନ୍ୟ କିଛି ପରିଚୟ ଏ ପର୍ଯ୍ୟନ୍ତ ମିଳି ନ ଥିବାରୁ ପୁଣି ତାଙ୍କ ରଚିତ ଗ୍ରନ୍ଥଟିରେ 'ପୁଷ୍ପିକା' ଅଭାବରୁ ସେ ଅପରିଚିତ ହୋଇ ଅଛନ୍ତି । ତଥାପି ତାଙ୍କ ଗ୍ରନ୍ଥଟି 'ଗୀତଗୋବିନ୍ଦ'ର ରଚନା ପଦ୍ଧତିକୁ ଅନୁସରଣ କରି ଥିବାରୁ ନିଶ୍ଚିତଭାବେ ସେ ଜୟଦେବଙ୍କର ପରବର୍ତ୍ତୀ କାଳରେ ଉତ୍କଳରେ କିମ୍ବା ସେଥିର କୌଣସି ଅଞ୍ଚଳରେ ବାସ କରିଥିବା ସମ୍ଭବ ।

ଏହି ଗ୍ରନ୍ଥଟି ଆଲହାବାଦସ୍ଥିତ ଗଙ୍ଗାନାଥ ଝା ଗବେଷଣା ପ୍ରତିଷ୍ଠାନ (Research Institute)ରେ ରକ୍ଷିତ ଅଛି । ତାହା ଶ୍ରୀ ବାବୁମିଶ୍ରଙ୍କ ଦ୍ୱାରା ଦରଭଙ୍ଗା (ମିଥିଳା)ର ଗବେଷଣା ପ୍ରତିଷ୍ଠାନର ନିର୍ଦ୍ଦେଶକଙ୍କ ପକ୍ଷରୁ ମୁଦ୍ରିତ ହୋଇଛି ।

ପ୍ରଥମେ କୁହାଯାଇଛି ଯେ, 'ଗୀତଗୋବିନ୍ଦ'କୁ ଅନୁକରଣ କରି "ଗୀତମୁକୁନ୍ଦ" ଲେଖାହୋଇଥିଲା । ସେପରି "ସଙ୍ଗୀତ ରାଘବ" ନାମକ ଅନ୍ୟ ଏକ ଅନୁକରଣ ଗ୍ରନ୍ଥ ଖ୍ରୀ ୧୯ଶ ଶତାବ୍ଦୀରେ ଗଙ୍ଗାଧର ନାମକ ଜଣେ କବି ରଚନା କରି ନାଗପୁର ଭୋଁସ-ଲଙ୍କ ନାମରେ ତାହା ଉତ୍ସର୍ଗ କରିଯାଇଛି । 'ଗୀତ ଗୋବିନ୍ଦ'ରେ ଦଶାବତାର ବନ୍ଦନା ଅନୁକରଣରେ ନିମ୍ନୋକ୍ତ ସଙ୍ଗୀତଟି ସେଥିରେ ସେ ଲେଖିଛନ୍ତି—

"ରଘୁବଧୂତ ମନୁଜ ଶରୀରଂ
ଜୟଜୟ ରାମ ହରେ ॥ ଧ୍ରୁ ॥
ଭଜସ୍ୱ ସ୍ୱବଂଶକୃତେ ଧୃତ ମାନବତାଂ

(୧) Quoted from O. H. R. J., Vol. XVI. No 4, P 117

ବନ୍ଦିତ ପବିତ୍ର ଚରିତ ମୁଦାରମ୍ ॥
ଜୟ ଜୟ ରାମ ହରେ ॥ ୧ ॥
ରବିକୁଳ ତୋୟନିଧୌ ଧୃତବାନସି ଦେହଂ
ଦଶରଥ ଭୂପ ଜନିଭୂମ ଦାହମ୍ ।
ଜୟ ଜୟ ରାମ ହରେ ॥ ୨ ॥ ଇତ୍ୟାଦି ।

'ଗୀତ ଗୋବିନ୍ଦ'ରେ ଯେଉଁ ରାଗଗୁଡ଼ିକ ବ୍ୟବହୃତ ହୋଇଥିଲି, ଠିକ୍, ସେହି ସେହି ରାଗରେ ହିଁ ଓଡ଼ିଶାର ପ୍ରାଚୀନ କବିମାନେ ଓଡ଼ିଆଭାଷାରେ ଗୀତଗୁଡ଼ିକ ରଚନା କରି ଖ୍ୟାତି ଅର୍ଜନ କରିଛନ୍ତି । (୧)

ଉପରେ କୁହାଯାଇଛି ଯେ, କୋଣ୍ଡାବିଡ଼ୁରେ ବେମ୍ମାରେଡ଼ିଙ୍କ ସମ୍ବନ୍ଧରେ ରହି ଅହୋବିଲ ନାମକ ସଙ୍ଗୀତଜ୍ଞ କବି ଯେଉଁ ସଙ୍ଗୀତ ପାରିଜାତ ନାମକ ଗ୍ରନ୍ଥ ଲେଖିଥିଲେ, ତାହା 'ଗୀତ ଗୋବିନ୍ଦ'ର ରାଗ ରାଗିଣୀକୁ ନିଶ୍ଚୟ ଅନୁକରଣ କରାଯାଇଥିଲା । କୋଣ୍ଡାବିଡ଼ୁର ରେଡ଼ିମାନଙ୍କୁ ଜୟ କରି ମହାରାଜ କପିଳେନ୍ଦ୍ରଦେବ "ସାନ୍ନ-ସମ୍ପ୍ରଦାୟ"ଙ୍କ ଯେଉଁ ଶାସ୍ତ୍ରୀୟ ସଙ୍ଗୀତ ଶ୍ରୀ ଜଗନ୍ନାଥ ମନ୍ଦିରରେ 'ଗୀତ ଗୋବିନ୍ଦ' ଗାନ ସକାଶେ ନିଯୁକ୍ତ କରିଥିଲେ । କପିଳେନ୍ଦ୍ରଙ୍କ ପୁତ୍ର ମହାରାଜା ପୁରୁଷୋତ୍ତମ ଦେବ ନିଜେ "ଅଭିନବ-ଗୀତଗୋବିନ୍ଦ" ନାମରେ ଅନ୍ୟ ଏକ ଗ୍ରନ୍ଥ ଲେଖାଇ ତାହା ଶ୍ରୀମନ୍ଦିରରେ ଗାନ କରିବାକୁ ସ୍ଥିର କରିଥିଲେ । ଏଣୁ ସାଧାରଣ ଲୋକଙ୍କ ମଧ୍ୟରେ ଆପତ୍ତିଜନକ ଆନ୍ଦୋଳନ ସୃଷ୍ଟି ହେଲା । କିମ୍ବଦନ୍ତୀରୁ ଜଣାଯାଏ, ଶ୍ରୀମନ୍ଦିରରେ ଜୟଦେବଙ୍କ 'ଗୀତଗୋବିନ୍ଦ' ପରିବର୍ତ୍ତେ ପୁରୁଷୋତ୍ତମ 'ଅଭିନବ ଗୀତଗୋବିନ୍ଦ" ଗାନ କରାଯିବା ବିଷୟରେ ଠାକୁରଙ୍କ ସମ୍ମତି ପାଇଁ ଉଭୟ ଗ୍ରନ୍ଥ ଶ୍ରୀଜଗନ୍ନାଥଙ୍କ ପାଦପୀଠରେ ରାତିରେ ରଖି ଦ୍ୱାର ବନ୍ଦ କରାଗଲା । ପରଦିନ ପ୍ରଭାତରେ ଦ୍ୱାର ଉନ୍ମୁକ୍ତ ହେବାରୁ ଦେଖାଗଲା ଯେ, ଜୟଦେବଙ୍କ ଗ୍ରନ୍ଥଟି ଶ୍ରୀଜଗନ୍ନାଥଙ୍କ ହୃଦୟ ସ୍ଥଳରେ ରହିଛି ଓ ରାଜାଙ୍କ ଗ୍ରନ୍ଥଟି ତଳେ ପଡ଼ିଛି । ଏହା ମହାପ୍ରଭୁଙ୍କ ନିଷ୍ପତ୍ତି ବୋଲି ସମସ୍ତେ ବୋଧ କରିବାରୁ ଜୟଦେବଙ୍କ 'ଗୀତ ଗୋବିନ୍ଦ' ହିଁ ଶ୍ରୀ ମନ୍ଦିରରେ ଗାନ କରିବାକୁ ସ୍ଥିର ହୋଇଥିଲା । ରାଜା ପୁରୁଷୋତ୍ତମଙ୍କ ପୁତ୍ର ମହାରାଜା ଶ୍ରୀ ପ୍ରତାପରୁଦ୍ରଙ୍କ ରାଜତ୍ୱ କାଳରେ ୧୫୧୦ ଖ୍ରୀଷ୍ଟାବ୍ଦରେ ବଙ୍ଗଦେଶ ନଦିଆରୁ ଚୈତନ୍ୟ ସମାଗମ ଏକ ଐତିହାସିକ ଘଟଣା । ସେତେବେଳେ ଚୈତନ୍ୟଙ୍କ ସଙ୍ଗେ ନଦିଆରୁ ବହୁ ବୈଷ୍ଣବ ଶ୍ରୀକ୍ଷେତ୍ରକୁ ଆସି ଚୈତନ୍ୟଙ୍କ ପ୍ରବର୍ତ୍ତିତ ନାମ-ସଙ୍କୀର୍ତ୍ତନରେ ଯୋଗ ଦେଇଥିଲେ । ଖ୍ରୀ ୧୬ଶ ଶତାବ୍ଦୀର ଆରମ୍ଭରେ ବଙ୍ଗଦେଶରେ "ବାଉଲ୍"ମାନଙ୍କ ସଙ୍ଗୀତ ବିଶେଷ ଭାବରେ ପ୍ରଚଳିତ ଥିଲା । ତେଣୁ ଚୈତନ୍ୟଙ୍କ ଶିଷ୍ୟମାନେ ସେହି 'ବାଉଲ୍' ସଙ୍ଗୀତ ଅନୁକରଣରେ

(୧) O. H. R. J., Vol. XXV & XXVI , PP 4-5 ff.

ଗୀତ ରଚନା କରି ସଙ୍କୀର୍ତ୍ତନ ମାଧ୍ୟମରେ ତାହା ଲୋକଙ୍କୁ ଶୁଣାଉଥିଲେ । ମହାରାଜା ପ୍ରତାପରୁଦ୍ର ନିଜେ ଶିଷ୍ୟତ୍ୱ ଗ୍ରହଣ କରିବା ଫଳରେ "ନାମ ସଙ୍କୀର୍ତ୍ତନ" ଓଡ଼ିଶାର ପୁରପଲ୍ଲୀ ସର୍ବତ୍ର ପ୍ରସାର ଲାଭ କଲା । ତେଣୁ ସଙ୍ଗୀତର ଧାରା ମଧ୍ୟ ଠାଏଁ ଠାଏଁ ବଦଳିଥିବା ସମ୍ଭବ । ଶ୍ରୀମନ୍ଦିରରେ ପୂର୍ବରୁ ଜୟଦେବଙ୍କ 'ଗୀତଗୋବିନ୍ଦ' ଗାନ ଯେଉଁ ପଦ୍ଧତିରେ ଗାନ କରାଯାଉଥିଲା, ସେଥିରେ ବ୍ୟତିକ୍ରମ ସୃଷ୍ଟି ହେବାରୁ, 'ସାନ-ସମ୍ପ୍ରଦାୟ'ର ତେଲେଙ୍ଗାମାନଙ୍କଠାରୁ ଅନ୍ୟ ବୈଷ୍ଣବମାନେ ଗାନପଦ୍ଧତି ଶିକ୍ଷା କରି କେବଳ ଜୟଦେବଙ୍କ 'ଗୀତଗୋବିନ୍ଦ'ହିଁ ଗାନ କରିବାକୁ ଏକ ନିର୍ଦ୍ଦେଶାତ୍ମକ ଅଭିଲେଖ ଓଡ଼ିଆରେ ଖୋଦିତ କରାଇ ଶ୍ରୀମନ୍ଦିରସ୍ଥ ଜୟ-ବିଜୟ ଦ୍ୱାର ନିକଟରେ ସ୍ଥାପିତ କରିଥିଲେ । ଏହି ଅଭିଲେଖରୁ ସ୍ପଷ୍ଟ ପ୍ରମାଣିତ ହେଉଛି ଯେ, ଦକ୍ଷିଣ-ଓଡ଼ିଶା (କଳିଙ୍ଗ)ରେ ବାସ କରୁଥିବା ତେଲେଙ୍ଗା ଗାୟକ ଓ ନର୍ତ୍ତକୀମାନଙ୍କ ଦ୍ୱାରା ପୂର୍ବରୁ 'ଗୀତଗୋବିନ୍ଦ' ଗାନ ଶାସ୍ତ୍ରୀୟ-ପଦ୍ଧତିରେ ବୋଲାଯାଉଥିଲା ।

ଓଡ଼ିଶାରେ ନିର୍ମିତ ମନ୍ଦିରମାନଙ୍କରେ ବିଶେଷତଃ ଭୁବନେଶ୍ୱର, ରାଜରାଣୀ, ଲିଙ୍ଗରାଜ ପ୍ରଭୃତି ମନ୍ଦିରରେ ନୃତ୍ୟରତା ନର୍ତ୍ତକୀମାନଙ୍କର ସ୍ଥାପତ୍ୟମାନ ଦେଖିବାକୁ ମିଳେ । ସେଥିରେ ନର୍ତ୍ତକୀମାନଙ୍କ ଅଙ୍ଗଭଙ୍ଗୀ, ମୁଦ୍ରା ଓ ନୃତ୍ୟକଳା ପ୍ରଦର୍ଶିତ ହୋଇଥିବାରୁ ସେଥିର ସମବିକାଶ ହିଁ 'ଗୀତଗୋବିନ୍ଦ' ଗାନରେ ପ୍ରତିଫଳିତ ହୋଇଅଛି । ଜୟଦେବଙ୍କ ପରବର୍ତ୍ତୀକାଳରେ ନିର୍ମିତ କୋଣାର୍କ ମନ୍ଦିରରେ ତାହା ସ୍ପଷ୍ଟରୂପେ ପ୍ରକାଶିତ କରିଛି । 'ଗୀତଗୋବିନ୍ଦ'ର ଦ୍ୱାଦଶ-ସର୍ଗରେ ଲେଖା ହୋଇଛି ଯେ, ଗାନ୍ଧର୍ବକଳା ଅନୁସରଣ କରିବାକୁ ହେଲେ କବି ଜୟଦେବଙ୍କ ରଚିତ "ଗୀତ-ଗୋବିନ୍ଦ" ଅନୁଧ୍ୟାନ କରିବା ଉଚିତ, ଯଥା:—

"ଯଦ୍ ଗାନ୍ଧର୍ବକଳାସୁ କୌଶଳ ମନୁଧ୍ୟାନଞ୍ଚ ଯଦ୍ ବୈଷ୍ଣବ
ଯଚ୍ଛୃଙ୍ଗାର ବିବେକ ତତ୍ତ୍ୱମପି ଯତ୍ କାବ୍ୟେଷୁ ଲୀଳାୟିତମ୍ ।
ତତ୍ସର୍ବଂ ଜୟଦେବ ପଣ୍ଡିତ କବେଃ କୃଷ୍ଣୈକତାନାତ୍ମନଃ
ସାନନ୍ଦାଃ ପରିଶୋଧୟନ୍ତୁ ସୁଧିୟଃ ଶ୍ରୀ ଗୀତଗୋବିନ୍ଦତଃ ॥"

(ଗୀତ ଗୋବିନ୍ଦ, ୧୨ ସର୍ଗ, ୨୮ ଶ୍ଳୋକ)

ଯେଉଁ ସଙ୍ଗୀତ-ପଦ୍ଧତିରେ ଜୟଦେବ ରାଧାକୃଷ୍ଣଙ୍କ କେଳି ବର୍ଣ୍ଣନା କରିଛନ୍ତି, ତାହା ମୁଖ୍ୟତଃ ଶାସ୍ତ୍ରୀୟ ସଙ୍ଗୀତ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ବାସ୍ତବରେ ସାର୍ ୱିଲିୟାମ୍ ଜୋନସ୍ (Sir William Jones)ଙ୍କ ନିରପେକ୍ଷ ଗବେଷଣା ଅନୁସାରେ ତାହା 'କଳିଙ୍ଗ ସଙ୍ଗୀତ' ବ୍ୟତୀତ ଅନ୍ୟକିଛି ନୁହେଁ । ତଥାପି ଜୟଦେବଙ୍କ

ଜନ୍ମସ୍ଥାନ ବଂଗ ବୋଲି ଯେଉଁମାନେ ଦାବି କରନ୍ତି, ତାଙ୍କ ମତରେ ଜୟଦେବ ନଦିଆରେ ସେନବଂଶୀୟ ରାଜା ଲକ୍ଷ୍ମଣ ସେନଙ୍କ ସଭା ପଣ୍ଡିତ ଥିଲେ । ଲକ୍ଷ୍ମଣସେନଙ୍କ ରାଜତ୍ୱ ସମୟରେ ବିଭିନ୍ନ ମତ ପ୍ରକାଶ ହୋଇଛି । ଏ ସଂପର୍କରେ ବିଶଦ ଆଲୋଚନା ପରେ କରାଯିବ । ବଙ୍ଗ ଦେଶରେ ଯେଉଁ ସଙ୍ଗୀତ ଲକ୍ଷ୍ମଣସେନଙ୍କ ରାଜତ୍ୱ କାଳରେ ପ୍ରଚଳିତ ଥିଲି ତାହା 'ବାଉଲ୍' ଗାନ ବ୍ୟତୀତ ଅନ୍ୟ କିଛି ନୁହେଁ । ତଥାପି ଡା. ପ୍ରଶାନ୍ତକୁମାର ଦାସଗୁପ୍ତ 'ଶେକ୍ ଶୁଭୋଦୟ' ନାମକ ଗୋଟିଏ ଉଦ୍ଭଟ ଗ୍ରନ୍ଥକୁ ଆଧାର କରି କହିଛନ୍ତି ଯେ, "ରାଜା ଲକ୍ଷ୍ମଣସେନ ଓ ତାଙ୍କ ମନ୍ତ୍ରୀ ଉମାପତି ଧର ଉଭେଁ ନୈତିକ ସଦାଚାର ହରାଇ ଶଶିପ୍ରଭା ଓ ବିଦ୍ୟୁତ୍‌ପ୍ରଭା ନାମ୍ନୀ ବାରବନିତାଙ୍କ ଆସକ୍ତ ହେବାରୁ ଯେଉଁ ସଙ୍ଗୀତ ପ୍ରବର୍ତ୍ତାଇ ଥିଲେ, ତାହା ପ୍ରାୟ ତିନିଶତ ବର୍ଷ ପରେ ଅନନ୍ତ ତୀର୍ଥ ନାମକ ଜଣେ ବଙ୍ଗୀୟ ସାଧୁ ଓଡ଼ିଶା ତଥା ଭାରତର ଅନ୍ୟାନ୍ୟ ଅଞ୍ଚଳରେ ପ୍ରସାର କରିଥିଲେ ।

"The next three centuries (after Laksmana Sena of Bengal) following the invasion was a period of darkness, especially in the field of dance, music and literature. But the form of music prevalent in these days was carried by Anantatirtha (a saint of the school of dualistic philosophy) to Orissa and then to Andhra Pradesh. From Orissa a form of dance developed which was passed into Srikakulam on the Krishna river ? and became mixed with 'Kuchipudi' tradition." (୧)

'ଶେକ୍ ଶୁଭୋଦୟ' ଗ୍ରନ୍ଥ ଯେପରି ଉଦ୍ଭଟ ଡ଼: ଦାସଗୁପ୍ତଙ୍କ ଏହି ସିଦ୍ଧାନ୍ତ ମଧ୍ୟ ସେପରି କାଳ୍ପନିକ । 'ଶେକ୍ ଶୁଭୋଦୟ' ସମ୍ପର୍କରେ ଅଧିକ ତତ୍ତ୍ୱ ପରେ ଆଲୋଚିତ ହେବ ।

'ଗୀତ ଗୋବିନ୍ଦ' ଯେ 'ସଙ୍ଗୀତ-ଭିତ୍ତିକ' ଏବଂ ରାଧାକୃଷ୍ଣ ଭକ୍ତି ବିଷୟକ ଲୀଳା ଏଥିରେ ଆଦୌ ସନ୍ଦେହ ନାହିଁ । ସେହି ସଙ୍ଗୀତକୁ କଳିଙ୍ଗର ଦେବଗଣିକାମାନେ କେବେ ଶ୍ରୀକ୍ଷେତ୍ରକୁ ଆସି ଉତ୍କଳରେ ତାହା ପ୍ରଚଳିତ କରିଥିଲେ, ତାହା ଆଗରୁ ଦ୍ୱିତୀୟ ପରିଚ୍ଛେଦରେ କୁହାଯାଇଛି ।

---

(୧) Edited by Dr. Sukumar Sen and published by Asiatic Society, Calcutta, 1963.

ମହାରାଜା ଚୋଡ଼ଗଙ୍ଗଙ୍କ ଉତ୍କଳ ଜୟ ପରେ ଶ୍ରୀକ୍ଷେତ୍ରର ପୁନଃ ଅଭ୍ୟୁଦୟ ହେଲା । ସେଥି ପୂର୍ବରୁ ମହାରାଜା ଯଯାତି ମହାଶିବଗୁପ୍ତଙ୍କ ଦ୍ୱାରା ବୋଧହୁଏ ଆଧୁନିକ ନୃସିଂହ ମନ୍ଦିରରେ ମାଧବରୂପୀ ପୁରୁଷୋତ୍ତମ ପୂଜିତ ହେଉଥିଲେ । ସେହି ମନ୍ଦିରର ଚତୁର୍ଦ୍ଦିଗ-ଭିତ୍ତି ଗାତ୍ରରେ ବିଷ୍ଣୁଙ୍କ ଦଶ ଅବତାର-ବିଗ୍ରହମାନ ପ୍ରଦର୍ଶିତ ହୋଇଅଛି । ଚୋଡ଼ଗଙ୍ଗଙ୍କ ରାଜତ୍ୱ କାଳରେ ସେହି ମନ୍ଦିରଟି ପୁନର୍ବାର ସଂସ୍କାର କରାଯାଇ ନିର୍ମିତ ହୋଇଥିଲା ଏବଂ ସେଥିରେ ପ୍ରତିଷ୍ଠିତ ମାଧବ-ପୁରୁଷୋତ୍ତମଙ୍କ ସ୍ଥାନରେ ବଳଭଦ୍ର, ସୁଭଦ୍ରା ଓ ପୁରୁଷୋତ୍ତମ-କୃଷ୍ଣଙ୍କର ବିଗ୍ରହମାନ ସ୍ଥାପିତ ହେଲା । ମାଧବ (ନୀଳମାଧବ) ରୂପୀ ଶ୍ରୀ ପୁରୁଷୋତ୍ତମଙ୍କୁ ଶଙ୍ଖ-ଚକ୍ରଧାରୀ ଶ୍ରୀ କୃଷ୍ଣ ରୂପେ ଆରାଧନା କରାଗଲା । ବୋଧହୁଏ ତଦ୍‌ବଧି ଅଷ୍ଟାଦଶାକ୍ଷରୀ "ଗୋପାଳ ମନ୍ତ୍ର"ରେ ("କ୍ଳୀଂ କୃଷ୍ଣାୟ ଗୋବିନ୍ଦାୟ ଗୋପୀଜନ ବଲ୍ଲଭାୟ ସ୍ୱାହା") ତାଙ୍କର ପୂଜା ସମ୍ପାଦିତ ହେଲା । ଆଉ ମଧ୍ୟ ଦଶାବତାରର ସୃଷ୍ଟି କର୍ତ୍ତା ରୂପେ ତାଙ୍କୁ ଆରାଧନା କରାଗଲା । ଆଚାର୍ଯ୍ୟ ନିମ୍ବାର୍କଙ୍କ ମତାନୁସାରେ "କୃଷ୍ଣସ୍ତୁ ଭଗବାନ୍ ସ୍ୱୟମ୍" ଏହି ନୀତିରେ ବୈଷ୍ଣବମାନେ ଅନୁପ୍ରାଣିତ ହେଲେ । କବି ଜୟଦେବ କୃଷ୍ଣ ଭକ୍ତିର ମୂଳତତ୍ତ୍ୱକୁ ଆଶ୍ରୟ କରି ରାଧାକୃଷ୍ଣ ଲୀଳାର ପ୍ରଚାର ଓ ପ୍ରସାର ଉଦ୍ଦେଶ୍ୟରେ 'ଗୀତ ଗୋବିନ୍ଦ' ରଚନା କରିଥିଲେ ଓ ସେଥିରେ ବନ୍ଦନା ଶ୍ଳୋକ ରୂପେ 'ଦଶାବତାର'ଙ୍କ ସ୍ତୁତି ଗାନ ଲେଖିଥିଲେ ।

ଗୋବର୍ଦ୍ଧନାଚାର୍ଯ୍ୟ ଏବଂ ଉଦୟନଙ୍କ ସମ୍ପର୍କରେ ସ୍ୱର୍ଗତ କେଦାରନାଥ ମହାପାତ୍ର ତାଙ୍କର ଗୋଟିଏ ଇଂରାଜୀ ପ୍ରବନ୍ଧରେ ବିଶଦ ଆଲୋଚନା କରିଛନ୍ତି । (୧) ତେଣୁ ଏଠାରେ ସେଥିର ଅଧିକ ଆଲୋଚନା କରିବା ଅନାବଶ୍ୟକ ।



(୧) O. H. R. J., Vol (VI), April, 1958 PP 43-56. ff

# ତୃତୀୟ ପରିଚ୍ଛେଦ

'ଗୀତ ଗୋବିନ୍ଦ'ରେ ବର୍ଣ୍ଣିତ ବିଷୟ ମୁଖ୍ୟତଃ ରାଧାକୃଷ୍ଣଙ୍କ କେଳିକୁ ଆଧାର କରିଛି । ଏହା ନିମ୍ବାର୍କ ଓ ମାଧ୍ୱାଚାର୍ଯ୍ୟଙ୍କ (୧) ଦ୍ୱୈତମତବାଦ ଭକ୍ତିକ । କଳିଙ୍ଗ ଏବଂ ଉତ୍କଳରେ ଖ୍ରୀ ୧୨ଶ ଶତାବ୍ଦୀରେ ତାହା ଅଧିକ ପ୍ରସାର ଲାଭ କରିଥିଲା ।

ସ୍ୱର୍ଗୀୟ କେଦାରନାଥ ମହାପାତ୍ର ତାଙ୍କର ଗୋଟିଏ ପ୍ରବନ୍ଧରେ ଲେଖିଛନ୍ତି ଯେ ପୁରୁଷୋତ୍ତମ-କ୍ଷେତ୍ରରେ ଯେଉଁ ଚାରି ଜଣ ଖ୍ୟାତନାମା ବୈଷ୍ଣବ-ପ୍ରଚାରକ ଥିଲେ, ସେମାନେ ହେଉଛନ୍ତି : (୧) ଶ୍ରୀ ରାମାନୁଜ (୨) ଶ୍ରୀ ନିମ୍ବାର୍କ (୩) ଶ୍ରୀ ମାଧ୍ୱାଚାର୍ଯ୍ୟ (୪) ଶ୍ରୀ ବିଷ୍ଣୁସ୍ୱାମୀ । ଏମାନଙ୍କ ମଧ୍ୟରୁ ଶ୍ରୀ ନିମ୍ବାର୍କ ହିଁ ରାଧାଙ୍କୁ ଶ୍ରୀକୃଷ୍ଣଙ୍କ ପ୍ରିୟତମା ବୋଲି ଉଲ୍ଲେଖ କରିଛନ୍ତି । ଯଥା—

ଶ୍ରୀ ବ୍ରହ୍ମା ରୁଦ୍ର ସନକା ବୈଷ୍ଣବାଃ କ୍ଷିତିପାବନାଃ
ଚତ୍ୱାରସ୍ତେ କଲୌଭାବ୍ୟାଃ ସମ୍ପ୍ରଦାୟ ପ୍ରବର୍ତ୍ତକାଃ
ଶ୍ରୀ ବିଷ୍ଣୁସ୍ୱାମୀ ନିମ୍ବାର୍କଃ ମଧ୍ୱ ରାମାନୁଜାଖ୍ୟସ୍ତ
ଭବିଷ୍ୟନ୍ତେ ପ୍ରସିଦ୍ଧୋସ୍ତେ ହ୍ୟୁତ୍କଳେ ପୁରୁଷୋତ୍ତମେ ॥"

(O H. R. J, Vol XVI, Nos. 1 & 2, P. 27)

କବି ଜୟଦେବ 'ବ୍ରହ୍ମବୈବର୍ତ୍ତ-ପୁରାଣ'କୁ ଅନୁସରଣ କରି 'ଗୀତଗୋବିନ୍ଦ'ରେ ରାଧାକୃଷ୍ଣଙ୍କ ମିଳନ ପ୍ରସଙ୍ଗ ଅବତାରଣା କରିଥିଲେ । ଉପରୋକ୍ତ ପୁରାଣରେ 'କୃଷ୍ଣ ଜନ୍ମଖଣ୍ଡ' ବର୍ଣ୍ଣିତ ଯେଉଁ ଶ୍ଳୋକଟିକୁ ଭିତ୍ତି କରି ସେ ତାଙ୍କର ଗୀତନାଟ୍ୟ ଆରମ୍ଭ କରିଛନ୍ତି, ତାହା ନିମ୍ନୋକ୍ତ ଶ୍ଳୋକରେ ପ୍ରକଟିତ ହୋଇଛି—

ଗୃହୀତା ପ୍ରାଣନାଥଂ ଚ ଗଚ୍ଛ ଭଦ୍ରେ ଯଥା ସୁଖଂ
ପଶ୍ଚାଦ୍ୟାସ୍ୟସି ମତ୍ ପୂର୍ଣଂ କୃତ୍ୱା ପୂର୍ଣ୍ଣଂ ମନୋରଥମ୍ ।

---

(୧) ମାଧ୍ୱାଚାର୍ଯ୍ୟଙ୍କ ଜୀବିତ କାଳ ଅଭିଲେଖକୁ ଆଧାର କରି ଏଚ୍. କୃଷ୍ଣ ଶାସ୍ତ୍ରୀ (H. Krisna Sastri) ୧୨୩୮—୧୩୧୭ ଖ୍ରୀଷ୍ଟାବ୍ଦ ମଧ୍ୟରେ ନିରୂପଣ କରିଛନ୍ତି (E. I. Vol. VI, P 260 ff) ଠିକ୍ ସେହି ମଧ୍ୟରେ ହିଁ ଜୟଦେବଙ୍କ ଗୀତ ଗୋବିନ୍ଦ ଲେଖା ହୋଇଥିବା ଜଣାଯାଏ ।

ଇତ୍ୟୁକ୍ତା ସ ଦଦୌ ତସ୍ୟୈ ରୁଦନ୍ତଂ ବାଳକଂ ଭୟାତ୍
ଜଗ୍ରାହ ବାଳକଂ ରାଧା ଜହାସ ମଧୁରଂ ସ୍ମିତାତ୍ ।

କୃଷ୍ଣ ଥିଲେ ସ୍ନେହଶୀଳ ନନ୍ଦଙ୍କ ଚକ୍ଷୁରେ ଏକ ଭୟାକ୍ରାନ୍ତ ବାଳକ । ତେଣୁ ସେ (ନନ୍ଦ) ରାଧାଙ୍କୁ ତାଙ୍କ ଆଦେଶ ଦେଇଥିଲେ ଯେ ଗୋପସ୍ତ୍ରୀଙ୍କ ସଙ୍ଗେ ଭୟାକ୍ରାନ୍ତ କୃଷ୍ଣଙ୍କୁ ତାଙ୍କ ମନୋରଥ ପୂର୍ଣ୍ଣ କରିବା ପାଇଁ ସାଙ୍ଗରେ ନେଇଯାଅ । ଏହା ଶୁଣି ରାଧା ସହାସ୍ୟ ମୁଖରେ କୃଷ୍ଣଙ୍କ ହାତ ଧରି ଲକ୍ଷ୍ୟ ସ୍ଥଳକୁ ଗଲେ । କବି ଜୟଦେବ କିନ୍ତୁ ଏଥିର ପରିବର୍ତ୍ତନ କରି ତାଙ୍କ ଗ୍ରନ୍ଥରେ ଲେଖିଛନ୍ତି —

"ମେଘୈର୍ମେଦୁରମମ୍ବରଂ ବନଭୁବଃ ଶ୍ୟାମାସ୍ତମାଲ ଦ୍ରୁମୈର୍ନକ୍ତଂ
ଭୀରୁରୟଂ ତ୍ୱମେବ ତଦିମଂ ରାଧେ ଗୃହଂ ପ୍ରାପୟ ।
ଇତ୍ଥଂ ନନ୍ଦନିଦେଶତଶ୍ଚଳିତୟୋଃ ପ୍ରତ୍ୟଧ୍ୱ କୁଞ୍ଜଦ୍ରୁମଂ
ରାଧା ମାଧବୟୋର୍ଜୟନ୍ତି ଯମୁନା କୂଳେ ରହଃ କେଳୟଃ ।"

ଅର୍ଥାତ୍ —ଆକାଶ ଘନ ମେଘାଚ୍ଛାଦିତ, ଏବଂ ବନସ୍ଥଳୀ ଶ୍ୟାମଳ ତମାଳ ତରୁରେ ନିପଞ୍ଚ ହୋଇଛି । ଏପରି ବେଳେ ଭୟାକ୍ରାନ୍ତ ବାଳକ କୃଷ୍ଣଙ୍କୁ ସଙ୍ଗରେ ଧରି ଗୃହକୁ ଆଣିବା ସକାଶେ ନନ୍ଦଙ୍କ ଠାରୁ ଆଜ୍ଞପ୍ତ ହୋଇ ରାଧା ସେହି ନିକୁଞ୍ଜ ତମାଳଦ୍ରୁମ-ଠାକୁ ଗଲେ ଏବଂ ସେଠାରି ଯମୁନା ତଟବର୍ତ୍ତୀ କୁଞ୍ଜ କୁଟୀରରେ ରାଧାମାଧବଙ୍କ କେଳି ସମ୍ପାଦିତ ହେଲା ।

ପୂର୍ବବର୍ଣ୍ଣିତ ନନ୍ଦଙ୍କ ଚକ୍ଷୁରେ କୃଷ୍ଣ ଥିଲେ ଏକ ସାଧାରଣ ଭୟାକ୍ରାନ୍ତ ବାଳକ । ଏହି ଭୂମିକାରେ କବି ଜୟଦେବ ତାଙ୍କ ଗୀତନାଟ୍ୟ (ଗୀତ-ଗୋବିନ୍ଦ)ର ଆରମ୍ଭ କରିଛନ୍ତି, ଯାହା କି ବ୍ରହ୍ମବୈବର୍ତ୍ତ-ପୁରାଣୋକ୍ତ ସଂଳାପ ଅପେକ୍ଷା ଅଧିକ ବାସ୍ତବଧର୍ମୀ ଓ ରମଣୀୟ ହୋଇପାରିଛି ।

ପ୍ରାଚୀନ ଯୁଗରୁ ଉତ୍କଳରେ ଗୋଟିଏ ଲୌକିକ ପ୍ରଥା ପ୍ରଚଳିତ ଥିଲା, ତାହା ହେଉଛି, ଯେକୌଣସି କବି ରଚନା କରିଥିବା 'ନାଟକ' ବା 'ଲୀଳା' ସର୍ବପ୍ରଥମେ 'ଶ୍ରୀ ପୁରୁଷୋତ୍ତମ ଜଗନ୍ନାଥ'ଙ୍କ ସମ୍ମୁଖରେ ହିଁ ପରିବେଶିତ ହେବା ବିଧେୟ । ତାହା ହେଲେ ଅନ୍ୟତ୍ର ସେ ଗ୍ରନ୍ଥଟି ଆଦୃତ ହୋଇପାରିବ । ଏ ନିୟମକୁ ଅନୁସରଣ କରି ଗୀତଗୋବିନ୍ଦ ସର୍ବପ୍ରଥମେ ଶ୍ରୀକ୍ଷେତ୍ରସ୍ଥ ଶ୍ରୀମନ୍ଦିରରେ 'ଗାନ-ସଂପ୍ରଦାୟ'ଙ୍କ ଦ୍ୱାରା ପରିବେଶିତ ହୋଇଥିଲା । ମହାରାଜ ଚୋଡ଼ଗଙ୍ଗଙ୍କ ଆନୁକୂଲ୍ୟରେ ସେହି ନର୍ତ୍ତକୀମାନେ ଶ୍ରୀକ୍ଷେତ୍ରସ୍ଥ 'ଚୂଡ଼ଙ୍ଗ ସାହି'ରେ ସ୍ଥାୟୀ ଭାବେ ବାସ କରି ପ୍ରତ୍ୟହ ଶ୍ରୀମନ୍ଦିରରେ ମହାପ୍ରଭୁଙ୍କ ସନ୍ଧ୍ୟା ଧୂପ ତଥା ବଡ଼ ଶିଙ୍ଗାର ବେଳେ 'ଗୀତଗୋବିନ୍ଦ' ଗାନ କରିବା

ପ୍ରଥା ଏକ ସମୟରେ ପରିଣତ ହେଲା । ଏହାପରେ ଭାରତର ବହୁ ଅଞ୍ଚଳରେ 'ଗୀତ-ଗୋବିନ୍ଦ'ର ଭକ୍ତି ସଙ୍ଗୀତ ଲୋକେ ଗାନ କରିବାକୁ ଲାଗିଲେ । ଏଥିର ସାହିତ୍ୟ ଓ ସଙ୍ଗୀତ ମୂଲ୍ୟ ଯଥେଷ୍ଟ ବଢ଼ିବା ଦେଖି ପରବର୍ତ୍ତୀକାଳରେ କେତେକ କବି ନିଜ ନିଜର ଶ୍ଳୋକରାଶି ସେଥିରେ ଯୋଡ଼ିଦେଲେ । ଆଉ କେତେକ ପଣ୍ଡିତ କବି ଜୟଦେବଙ୍କୁ ନିଜ ନିଜ ଅଞ୍ଚଳକୁ ଟାଣିନେବା ଉଦ୍ଦେଶ୍ୟ ବହୁ ନକଲି ଶ୍ଳୋକ ରଚନା କରିଥିବା ସ୍ପଷ୍ଟ ଜଣାଯାଏ ।

ଏହି ପରିଚ୍ଛେଦ ଆରମ୍ଭରେ 'ବ୍ରହ୍ମବୈବର୍ତ୍ତ' ପୁରାଣ ଏକ ଶ୍ଳୋକକୁ ଆଧାର କରି 'ଗୀତଗୋବିନ୍ଦ'ର ସର୍ବପ୍ରଥମ ଶ୍ଳୋକଟିରେ ଯେଉଁ ବିଷୟ ବର୍ଣ୍ଣିତ ହୋଇଛି, ତାହା ବର୍ଷାଋତୁର ଚିତ୍ର ମନରେ ଆଣିଦିଏ—

ମେଘୈର୍ମେଦୁରମମ୍ବରଂ ବନଭୁବଃ ଶ୍ୟାମାସ୍ତମାଲଦ୍ରୁମୈ-
ର୍ନକ୍ତଂ ଭୀରୁରୟଂ ତ୍ୱମେବ ତଦିମଂ ରାଧେ ଗୃହଂ ପ୍ରାପୟ ।
ଇତ୍ଥଂ ନନ୍ଦନିଦେଶତଶ୍ଚଲିତୟୋଃ ପ୍ରତ୍ୟଧ୍ୱ କୁଞ୍ଜଦ୍ରୁମଂ
ରାଧାମାଧବୟୋର୍ଜୟନ୍ତି ଯମୁନାକୂଳେ ରହଃ କେଳୟଃ ।

ଜୟଦେବଙ୍କ ପରି ଜଣେ ନାଟ୍ୟ ବିଶାରଦ କବି ରାଧାକୃଷ୍ଣଙ୍କ ପ୍ରଥମ ମିଳନ କେଳି ବର୍ଣ୍ଣନା କରିବାକୁ ଯାଇ ଗୀତଗୋବିନ୍ଦର ପ୍ରଥମ ଶ୍ଳୋକ ବର୍ଷାଋତୁର ବର୍ଣ୍ଣନା ସଙ୍ଗେ ଯମୁନାକୂଳସ୍ଥ କୁଞ୍ଜବନରେ ରାଧାକୃଷ୍ଣଙ୍କ ମିଳନ ହୋଇଥିବା ବିଷୟ ଉଲ୍ଲେଖ କରି ତା'ପରେ ବସନ୍ତ ଋତୁର ବର୍ଣ୍ଣନାତ୍ମକ ଗୀତ ରଚନା କରି ପାଠକ ଓ ଦର୍ଶକଙ୍କୁ ବର୍ଷାଋତୁରୁ ସଙ୍ଗେ ସଙ୍ଗେ ବସନ୍ତ ଋତୁକୁ ଟାଣିନେବା ପ୍ରୟାସ ନିତାନ୍ତ ଅସଙ୍ଗତ । ଏହା ମଧ୍ୟ ନାଟ୍ୟ ସାହିତ୍ୟର ଅକ୍ଷମଣୀୟ ଦୋଷ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ସୁତରାଂ ଆମ୍ଭ ମତରେ ପ୍ରଥମେ ଦଶାବତାର ବନ୍ଦନା ଗୀତ ପରେ "ଲଳିତ ଲବଙ୍ଗ ଲତା ........." ମୂଳକ ବସନ୍ତ ବର୍ଣ୍ଣନା ଶ୍ଳୋକ ମଧ୍ୟରେ ଥିବା ଅନ୍ୟ ଶ୍ଳୋକଗୁଡ଼ିକ ନିଶ୍ଚିତ ଭାବେ ପ୍ରକ୍ଷିପ୍ତ ହେବା ସମ୍ଭବ । ଆଉ ମଧ୍ୟ ଏହା ପ୍ରମାଣିତ ହୋଇ ସାରିଛି ଯେ 'ଗୀତଗୋବିନ୍ଦ'ର ଟୀକା ବିଭିନ୍ନ ସମୟରେ ଲେଖା ହୋଇଥିଲା । ସେଗୁଡ଼ିକ ଅନୁଧ୍ୟାନ କଲେ ଜଣାଯାଉଛି ଯେ, ଗୀତଗୋବିନ୍ଦରେ କେତେକ ଶ୍ଳୋକ କବିମାନେ ପରବର୍ତ୍ତୀକାଳରେ ପ୍ରକ୍ଷିପ୍ତ କରିଅଛନ୍ତି । ବିଭିନ୍ନ ସମୟରେ ପଣ୍ଡିତମାନେ ସେଥିର ଯେଉଁ ଟୀକା ଲେଖିଛନ୍ତି ତାହା ଅଦ୍ୟାପି ସମ୍ପୂର୍ଣ୍ଣ ଭାବେ ମିଳିନାହିଁ । ତଥାପି ଯେଉଁ କେତେକର ନାମ ଜଣାଯାଇଛି ବା ପ୍ରକାଶ ହୋଇଛି ସେଥିର ଏକ ତାଲିକା ନିମ୍ନରେ ଦିଆଗଲା—

(୧) କବି ଉଦୟନଙ୍କ 'ଭାବବିଭାବିନୀ-ଟୀକା' (ଅପ୍ରକାଶିତ)—ଖ୍ରୀ: ୧୨ଶ ଶତାବ୍ଦୀ ।
(୨) ଧୃତଦାସଙ୍କ 'ସନ୍ଦର୍ଭଦୀପିକା' ଟୀକା (ନାରାୟଣ ଦାସଙ୍କ ଟୀକାରେ ଏ ଟୀକାର ଉଲ୍ଲେଖ ଅଛି)—୧୩ଶ ଶତକ ।

(୩) ନାରାୟଣ ଦାସଙ୍କ 'ସର୍ବାଙ୍ଗ ସୁନ୍ଦରୀ' ଟୀକା—୧୪ଶ ଶତାବ୍ଦୀ ।

(୪) ମୈଥିଳୀ କବି ଜଗଦ୍ଧରଙ୍କ 'ସାର ଦୀପିକା' ଟୀକା—ଖ୍ରୀ: ୧୩ଶ ଶତାବ୍ଦୀ ।

(୫) ରାଣା କୁମ୍ଭକର୍ଣ୍ଣଙ୍କ 'ରସିକ ପ୍ରିୟା' ଟୀକା—ଖ୍ରୀ: ୧୪୬୦-୧୪୬୮ ଖ୍ରୀଷ୍ଟାବ୍ଦ ।

(୬) ରମାକାନ୍ତ—ଗୀତଗୋବିନ୍ଦ ପ୍ରବୋଧ ।

(୭) ଶଙ୍କର ମିଶ୍ରଙ୍କ 'ରସ ମଞ୍ଜରୀ' ଟୀକା—ଖ୍ରୀ: ୧୫୬୦ ।

(୮) ଲକ୍ଷ୍ମଣସୂରିଙ୍କ 'ଶ୍ରୁତି ରଞ୍ଜନୀ' ଟୀକା—ଖ୍ରୀ: ୧୫୬୫ ।

(୯) ଚୈତନ୍ୟ ଦାସଙ୍କ 'ବାଲବୋଧିନୀ' ଟୀକା—ଖ୍ରୀ: ୧୬୦୦ ।

(୧୦) ଭଗବତ୍ ଦାସଙ୍କ 'ରସ କଦମ୍ବ କଲ୍ଲୋଳିନୀ' ଟୀକା ଖ୍ରୀ: ୧୬୦୦-୧୬୨୮ ।

(୧୧) ରାଜାମାନଙ୍କ 'ଟିପ୍ପଣୀକ'—ଖ୍ରୀ: ୧୫ଶ ଶତକ ।

(୧୨) ବୃହସ୍ପତି ମିଶ୍ର 'ରସ୍ଯ ମୁକୁଟ' ଟୀକା—ଖ୍ରୀ: ୧୫ଶ ଶତକ ।

(୧୩) ମୈଥିଳୀ କୃଷ୍ଣଦତ୍ତଙ୍କ 'ଗଙ୍ଗା' ଟୀକା—ଖ୍ରୀ: ୧୬ଶ ଶତକ ।

(୧୪) ଶେଷ କମଳାକରଙ୍କ 'ରତ୍ନମାଳା' ଟୀକା (ସାହିତ୍ୟ ରତ୍ନମାଳା) ଖ୍ରୀ: ୧୬ଶ ଶତକ

(୧୫) ନାରାୟଣ ପଣ୍ଡିତ—ଭକ୍ତଦାସଙ୍କ 'ପଦଦ୍ୟୋତନିକା' ଟୀକା—ଖ୍ରୀ: ୧୬ଶ ଶତକ ।

(୧୬) ବନମାଳୀ ଭଟ୍ଟଙ୍କ 'ସଜ୍ଜନ' ଟୀକା—ଖ୍ରୀ: ୧୬ଶ ଶତକ ।

(୧୭) ଶ୍ରୀ କଣ୍ଠମିଶ୍ରଙ୍କ 'ପଦଭାବାର୍ଥ ଚନ୍ଦ୍ରିକା' ଟୀକା—ଖ୍ରୀ: ୧୭୦୦ ।

(୧୮) ନାରାୟଣ ଭଟ୍ଟଙ୍କ 'ରସ ତରଙ୍ଗିଣୀ' ଟୀକା—ଖ୍ରୀ: ୧୬୬୦ ।

(୧୯) କବି ଗୋପାଳଙ୍କ 'ସର୍ବାର୍ଥବୋଧିନୀ'—ଖ୍ରୀ: ୧୬୬୪ ।

(୨୦) ଗୋପାଳ ଚକ୍ରବର୍ତ୍ତୀ 'ଅର୍ଥରତ୍ନାବଳୀ'—ଖ୍ରୀ: ୧୬୭୭ ।

(୨୧) ମହାରାଷ୍ଟ୍ରର ଶ୍ରୀରଙ୍ଗନାଥ ଆରଡ଼େଙ୍କ 'ମାଧୁରୀଟୀକା'—ଖ୍ରୀ: ୮ଶ ଶତକ ।

(୨୨) ମୈଥିଳୀ କବି କୃଷ୍ଣଦତ୍ତଙ୍କ 'ଶଶିଲେଖା' ଟୀକା—ଖ୍ରୀ: ୧୬ଶ ଶତକ ।

(୨୩) ରୂପଦେବ (ଗୋସ୍ୱାମୀ)ଙ୍କ 'ଗୀତଗୋବିନ୍ଦ' ବିବରଣମ୍—ଖ୍ରୀ: ୧୬ଶ ଶତକ ।

(୨୪) ଧନଞ୍ଜୟ ଦ୍ୱିଜ 'ସର୍ବାଙ୍ଗ ସୁନ୍ଦରୀ'—ଖ୍ରୀ: ୧୭୨୮ ।

(୨୫) ଅନୁପସିଂହଙ୍କ 'ଅନୁପୋଦୟ' ଟୀକା—

(୨୬) ଲକ୍ଷ୍ମଣ ଭଟ୍ଟଙ୍କ 'ରସିକ ରଙ୍ଗଦା' ଟୀକା—ଖ୍ରୀ: ୧୭୪୨ ।

(୨୭) ସଦାନନ୍ଦଭଟ୍ଟଙ୍କ 'ଗୀତଗୋବିନ୍ଦ' ଟିପ୍ପଣୀ—ଖ୍ରୀ: ୧୮୬୪ ।

(୨୮) କୁଚବିହାରର ମହାରାଜା ଶ୍ରୀ ଶୁକ୍ଲଧ୍ୱଜଙ୍କ ସରସ୍ୱତୀ ଟୀକା ।

(୨୯) ରାମଚନ୍ଦ୍ର ଚୂଡ଼ାମଣିଙ୍କ ମାଧୁରୀ । ※

(୩୦) ନାରାୟଣ ଶର୍ମାଙ୍କ 'ସର୍ବାଙ୍ଗ ସୁନ୍ଦରୀ' ଟୀକା—ଖ୍ରୀ: ୧୭୨୮ ।

(୩୧) ଭକ୍ତରତ୍ନାକରଙ୍କର ସନ୍ଧି ।

ଆଗରୁ କୁହାଯାଇଛି ଯେ 'ଗୀତଗୋବିନ୍ଦ' ପରି ଏକ ସର୍ବଜନାଦୃତ ଧର୍ମ-ଗ୍ରନ୍ଥରେ ଲୋଭବଶରୁ ପରବର୍ତ୍ତୀକାଳର କବିମାନେ କିଛି କିଛି ଶ୍ଳୋକ ରଚନା କରି ମୂଳଗ୍ରନ୍ଥରେ ମିଶାଇ ଦେଇଥିଲେ । ଏଣୁ ଗୀତଗୋବିନ୍ଦ କେତେକାଂଶରେ ତାର ମୌଳିକତା ହରାଇଛି । ଏ ଦୃଷ୍ଟିରୁ ବିଚାର କଲେ ଜଣାଯାଉଛି ଯେ ଟୀକାକାରମାନେ ପରବର୍ତ୍ତୀକାଳରେ ପ୍ରକ୍ଷିପ୍ତାଂଶଗୁଡ଼ିକ ପରିହାର କରି ମୂଳଗ୍ରନ୍ଥକୁ ସର୍ବସାଧାରଣରେ ପ୍ରକଟିତ କରିଅଛନ୍ତି । ଉଦାହରଣ ସ୍ୱରୂପ 'ଗୀତଗୋବିନ୍ଦ'ର ଲେଖାହୋଇଥିବା ପ୍ରସଙ୍ଗର ଆରମ୍ଭ କପରି 'ବ୍ରହ୍ମବୈବର୍ତ୍ତ ପୁରାଣ'କୁ ଭିତ୍ତିକରି କବି ଜୟଦେବ ଯମୁନା ତଟବର୍ତ୍ତୀ ତମାଲ କୁଞ୍ଜରେ ରାଧାକୃଷ୍ଣଙ୍କର କେଳି ସୃଷ୍ଟି ହୋଇଥିଲି, ତାହା ବର୍ଣ୍ଣନା କରିବା ପରେ ନିମ୍ନୋକ୍ତ ଶ୍ଳୋକଟି ରଚନା କରିଥିଲେ—

> "ଶ୍ରୀ ବାସୁଦେବ ରତି କେଳି କଥାସମେତ—
> ମେତଂ କରୋତି ଜୟଦେବ କବିଃ ପ୍ରବନ୍ଧମ୍ ।"

ବାସ୍ତବରେ ଏହି ଶ୍ଳୋକ ପରେ ହିଁ କେଳି ପ୍ରସଙ୍ଗ କରାଯାଇଥିବା ବିଷୟ ନିଜେ କବି ଉଲ୍ଲେଖ କରିଛନ୍ତି । ଫଳତଃ ପ୍ରସଙ୍ଗର ସାଙ୍ଗତ୍ୟ ଦୃଷ୍ଟିରୁ ଏହି ଶ୍ଳୋକ ପରେ ଶ୍ରୀକୃଷ୍ଣଙ୍କ ବର୍ଣ୍ଣନାତ୍ମକ ଗୀତ "ଶ୍ରିତ କମଳାକୁଚମଣ୍ଡଳ, ଧୃତ କୁଣ୍ଡଳ ....." ସଙ୍ଗେ "ଲଳିତ ଲବଙ୍ଗଲତା ପରିଶୀଳନ କୋମଳ ମଳୟ ସମୀରେ......" ପ୍ରଭୃତି ନାଟକର ନାୟକ ଏବଂ ଋତୁ ଓ କେଳି ସ୍ଥାନ ବର୍ଣ୍ଣନା ସଙ୍ଗୀତ ମାଧ୍ୟମରେ ପ୍ରକାଶ କରିବା ହିଁ ଯୁକ୍ତିଯୁକ୍ତ । ରାଧାକୃଷ୍ଣଙ୍କ କେଳି ପ୍ରସଙ୍ଗକୁ ଛିନ୍ନ କରି ନିମ୍ନୋକ୍ତ ପ୍ରକ୍ଷିପ୍ତ ଶ୍ଳୋକଟି 'ଗୀତଗୋବିନ୍ଦ'ରେ ଏକ ଅବାଞ୍ଛିତ ଦ୍ୱନ୍ଦ୍ୱ ସୃଷ୍ଟି କରାଯାଇଛି ।

> "ବାଚଃପଲ୍ଲବୟତ୍ୟୁମାପତିଧରଃ ସନ୍ଦର୍ଭ ଶୁଦ୍ଧିଂ ଗିରାଂ
> ଜାନୀତେ ଜୟଦେବ ଏବଂଶରଣଃ ଶ୍ଲାଘ୍ୟୋ ଦୁରୂହଦ୍ରୁତେ
> ଶୃଙ୍ଗାରୋତ୍ତରସତ୍ ପ୍ରମେୟରଚନୈରାଚାର୍ଯ୍ୟ ଗୋବର୍ଦ୍ଧନଃ
> ସ୍ପର୍ଦ୍ଧୀକୋଽପି ନ ବିଶ୍ରୁତ ଶ୍ରୁତିଧରୋ ଧୋୟୀ କବିକ୍ଷ୍ମାପତିଃ ।"

---

※ Indian office catalogue, Vol VII, P 1459 ff (quoted from M. Winternitz, H. I. L, Vol. III P. 174.

ଭାଷା ଓ ପ୍ରସଙ୍ଗ ଦୃଷ୍ଟିରୁ ଏ ଶ୍ଳୋକଟି ଜୟଦେବଙ୍କ ଲେଖନୀ ସମ୍ଭୂତ ବୋଲି କୁହାଯାଇ ନପାରେ । ଖ୍ରୀଷ୍ଟୀୟ ପଞ୍ଚଦଶ ଶତାବ୍ଦୀରେ ରାଣା କୁମ୍ଭକର୍ଣ୍ଣଙ୍କ 'ରସିକ ପ୍ରିୟା' ଟୀକାରେ ଉପରୋକ୍ତ ଶ୍ଳୋକଟି 'ପ୍ରକ୍ଷେପକ' ବୋଲି ଚିହ୍ନିତ କରାଯାଇଛି । ଆଉ ମଧ୍ୟ 'ସନ୍ଦର୍ଭ ଦୀପିକା' ଟୀକାରେ ଏ ଶ୍ଳୋକଟି ବର୍ଜନ କରାଯାଇଛି । *

ବାସ୍ତବରେ କବି ଜୟଦେବଙ୍କ ପରି ଜଣେ ସର୍ବଶ୍ରେଷ୍ଠ କବିଙ୍କ ପ୍ରତିଷ୍ଠାକୁ କ୍ଷୁଣ୍ଣ କରି (?) ଉପରୋକ୍ତ ଶ୍ଳୋକଟି 'ଗୀତଗୋବିନ୍ଦ'ରେ କିଏ କାହିଁକି ପ୍ରକ୍ଷିପ୍ତ କରିଥିବ, ତାହା ଆଲୋଚନା କରିବା ପୂର୍ବରୁ ଜୟଦେବ କିପରି ଉତ୍କଳର ରାଜସଭାରେ ଶ୍ରେଷ୍ଠତ୍ୱ ଲାଭ କରିଥିଲେ, ତାହା ୧୫୬୩ ଖ୍ରୀଷ୍ଟାବ୍ଦରେ ରଚିତ କେଶବ ମିଶ୍ରଙ୍କର 'ଅଳଙ୍କାର ଶେଖର' ନାମକ ଅଳଙ୍କାର ଗ୍ରନ୍ଥରେ ନିମ୍ନୋକ୍ତ ଶ୍ଳୋକରୁ ପ୍ରକଟିତ ହେଉଛି—

"ପ୍ରାକ୍-ପ୍ରତ୍ୟକ୍-ପୃଥିବୀ ଭୃତୋ ପରିଷଦ ପ୍ରଖ୍ୟାତ ସଂଖ୍ୟାବତା-
ମହ୍ନାୟାହୃତ ତର୍କ କର୍କଶତୟା ବିଚ୍ଛିଦ୍ୟ ବିଦ୍ୟାମଦମ୍ ।
ଯେ କେ ପ୍ୟୁତ୍କଳଭୂପତେ ତବସଭା ସମ୍ଭାବିତାଃ ପଣ୍ଡିତାଃ
ପଟ୍ଟଂ ଶ୍ରୀ ଜୟଦେବ ପଣ୍ଡିତ କବିଶ୍ରୁନ ମୂର୍ଦ୍ଧ୍ନି ବିନ୍ୟସ୍ୟତ ।" †

ଏହି ଶ୍ଳୋକଟି ଗୋବର୍ଦ୍ଧନାଚାର୍ଯ୍ୟ ନିଜେ ରଚନା କରି ଉତ୍କଳରାଜାଙ୍କୁ ଉପହାର ଦେଇଥିଲେ ବୋଲି କେଶବ ମିଶ୍ର ୧୫୬୩ ଖ୍ରୀଷ୍ଟାବ୍ଦରେ ତାଙ୍କ ଅଳଙ୍କାର ଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି । ଉକ୍ତ ଶ୍ଳୋକର ଅର୍ଥ ହେଉଛି "ହେ ଉତ୍କଳର ରାଜା ! ପୂର୍ବ ଓ ପଶ୍ଚିମ ଦିଗର ରାଜାମାନଙ୍କ ସଭାସଦ୍‌ରୂପେ ଯେଉଁ ପ୍ରଖ୍ୟାତ ପଣ୍ଡିତମାନେ ଅଛନ୍ତି, ଆଉ ମଧ୍ୟ ତୁମ୍ଭ ସଭାରେ ଯେଉଁ ପଣ୍ଡିତମାନେ ରହି କଠୋର ଭାବେ ସ୍ୱୀୟ ପାଣ୍ଡିତ୍ୟର ଗର୍ବପ୍ରକାଶ କରୁଛନ୍ତି, ସେମାନଙ୍କ ଗର୍ବ ଖଣ୍ଡନ କରି ଶ୍ରୀ ଜୟଦେବ ନାମକ ପଣ୍ଡିତ ଓ କବି ତାଙ୍କ କପାଳରେ ଚନ୍ଦନ ପ୍ରଲେପ ତୁଲ୍ୟ ଏହି ପଟ୍ଟଟି ଲଗାଇ ଦେଉଛନ୍ତି ।

କବି କେଶବ ମିଶ୍ର "କୋଟଙ୍କ ଗ୍ରାମ" ବାସୀ ଏବଂ ରାଜା ମାଣିକଚନ୍ଦ୍ରଙ୍କ ସଭାରେ ରହି 'ଅଳଂକାର ଶେଖର' ନାମକ ଗୋଟିଏ ଗ୍ରନ୍ଥ ଲେଖିଥିଲେ । ସେ ଲେଖିଥିବା ପ୍ରକାରେ ଯଦି କବି ଜୟଦେବ ଭାରତର ଜଣେ ଶ୍ରେଷ୍ଠ ପଣ୍ଡିତ ରୂପେ ସମ୍ମାନିତ ହୋଇଥିଲେ ଏବଂ ସେହି ସମ୍ମାନ ଯଦି ଗୋବର୍ଦ୍ଧନାଚାର୍ଯ୍ୟଙ୍କ ପକ୍ଷରେ

* O. H. R. J., Vol XXII No. 2 P ୫8 f.

† 'କାବ୍ୟମାଳା' ନମ୍ବର ୫୦, (୧୮୯୫); ମନମୋହନ ଚକ୍ରବର୍ତ୍ତୀ J. A. S. B. (1907) P 212 f.

ପ୍ରକାଶିତ ହୋଇଥିଲା, ତେବେ "ବାଚଃ ପଲ୍ଲବୟତ୍ୟୁମାପତି.........ଶ୍ଲୋକରେ ନିଜେ ଜୟଦେବ ନିଜକୁ ଖର୍ବ କରି ଶୃଙ୍ଗାର ରସର ଉତ୍ସ ପାଇଁ ଗୋବର୍ଦ୍ଧନାଚାର୍ଯ୍ୟଙ୍କ ପ୍ରଶଂସା ଗାନ କରିବା ତାଙ୍କ ପକ୍ଷରେ ସମ୍ଭବ କି ?

କେତେକ ପଣ୍ଡିତଙ୍କ ମତରେ "ବାଚଃ ପଲ୍ଲବୟତ୍ୟୁମାପତିଧର........." ଇତ୍ୟାଦି ଶ୍ଲୋକରେ ଜୟଦେବ ତାଙ୍କ ସଙ୍ଗେ ନାମିତ ହୋଇଥିବା ଅନ୍ୟ ଚାରିଜଣ କବି ଉମାପତିଧର, ଶରଣ, ଗୋବର୍ଦ୍ଧନାଚାର୍ଯ୍ୟ ଓ ଧୋୟୀଙ୍କୁ ନ୍ୟୂନ କରି ସେହି ଶ୍ଲୋକଟି ଲେଖିଥିଲେ । ଏ ବିଷୟରେ କବିରାଜ ନାରାୟଣ ଦାସ ଲେଖିଥିବା 'ସର୍ବାଙ୍ଗ ସୁନ୍ଦରୀ' ଟୀକାକୁ ବ୍ୟାଖ୍ୟାନ କରି ସ୍ୱର୍ଗୀୟ କେଦାରନାଥ ମହାପାତ୍ର ତାଙ୍କର ଗୋଟିଏ ଇଂରାଜି ପ୍ରବନ୍ଧରେ ଲେଖିଛନ୍ତି—

On the wrong interpretation of this significant verse has been based a wrong theory that all the poets mentioned in it belonged to the court of Lakshmana Sena of Bengal, which has been unquestionably accepted by many scholars. But X X X from the "Sarvanga-Sundari-tika" clearly proves that Jayadeva has only established his superiority over four other contemporary poets and says nothing about his own association with any royal court. (୧)

ଅର୍ଥାତ୍ ଶଂସିତ ଶ୍ଲୋକର ଭୁଲ୍ ଅର୍ଥ ଭୁଲ୍ ସିଦ୍ଧାନ୍ତ ଉପରେ ନିର୍ଭର କରି ବିନା ପ୍ରଶ୍ନରେ କେତେକ ପଣ୍ଡିତ କହୁଛନ୍ତି ଯେ, ଜୟଦେବଙ୍କ ସମେତ ଅନ୍ୟ ଚାରିଜଣ କବି ବଙ୍ଗର ରାଜା ଲକ୍ଷ୍ମଣସେନଙ୍କ ସଭାରେ ରହୁଥିଲେ । କିନ୍ତୁ କବିରାଜ ନାରାୟଣଦାସଙ୍କ ସର୍ବାଙ୍ଗ-ସୁନ୍ଦରୀ ଟୀକାରେ ଜୟଦେବଙ୍କ ସମସାମୟିକ ଅନ୍ୟ ଚାରିଜଣ କବିଙ୍କୁ ତାଚ୍ଛଲ୍ୟ କରାଯାଇଛି ଏବଂ କବି ଜୟଦେବ କୌଣସି ରାଜସଭାରେ ରହି ପ୍ରତିପାଳିତ ହେଉ ନ ଥିଲେ ।

(୧) O. H. R. J. Vol. XVI, No 4 P 163.

ସ୍ୱର୍ଗୀୟ କେଦାରନାଥଙ୍କ ସେହି ମତ ଆମ୍ଭେ ଗ୍ରହଣ କରିବାକୁ ଅସମର୍ଥ । ଏଥିର କାରଣ ଆଗରେ କୁହାଯାଇଛି । ସୁତରାଂ ଆମ୍ଭ ମତରେ ସେହି ଶ୍ଳୋକଟି 'ଗୀତ ଗୋବିନ୍ଦ' କାବ୍ୟରେ ସଗତ ଦୃଷ୍ଟିରୁ ଏକ ପ୍ରକ୍ଷିପ୍ତ ଶ୍ଳୋକ ହେବା ସମ୍ଭବ ଏବଂ ତାହା କବି ଉଦୟନଙ୍କ ରଚିତ ବୋଲି ମନେ ହୁଏ କାରଣ ସେ ତାଙ୍କ ଭ୍ରାତା ଶୃଙ୍ଗାରରସଜ୍ଞ କବି ଗୋବର୍ଦ୍ଧନାଚାର୍ଯ୍ୟଙ୍କୁ ସମ୍ମାନିତ କରିବା ସକାଶେ ବୋଧହୁଏ ସେହି ଶ୍ଳୋକଟି ଗୀତଗୋବିନ୍ଦରେ ସଯୁକ୍ତ କରିଥିଲେ ।

ଗୀତଗୋବିନ୍ଦର ସର୍ବପ୍ରଥମ "ଶ୍ରବିବିଶ୍ରବିନୀ-ଟୀକା" ଯେଉଁ କବି ଉଦୟନ ଲେଖିଥିଲେ, ସେ ଥିଲେ କବି ଗୋବର୍ଦ୍ଧନାଚାର୍ଯ୍ୟଙ୍କ ଭ୍ରାତା । ତାଙ୍କର ସେହି ଟୀକା ଅଦ୍ୟାପି ପ୍ରକାଶ ହୋଇନାହିଁ । ହୁଏତ ଉଦୟନ ନିଜ ଜ୍ୟେଷ୍ଠ ଭ୍ରାତା ଗୋବର୍ଦ୍ଧନା- ଚାର୍ଯ୍ୟଙ୍କ ରଚିତ 'ସପ୍ତଶତି' ନାମକ ଗ୍ରନ୍ଥର ଉତ୍କର୍ଷତା ବୃଦ୍ଧି କରିବା ନିମନ୍ତେ ଏ ଶ୍ଳୋକଟି 'ଗୀତଗୋବିନ୍ଦ'ରେ ସଯୋଗ କରି ଶୃଙ୍ଗାରୋତ୍ତରସତ୍ପ୍ରମେୟରଚନୈରାଚାର୍ଯ୍ୟଗୋବର୍ଦ୍ଧନଃ ବୋଲି ଲେଖିଥିବେ ।

ଜୟଦେବଙ୍କ ପରି ଜଣେ ବିଶିଷ୍ଟ ଶୃଙ୍ଗାର ରସଜ୍ଞ କବି କଣ ଖ୍ରୀ ୭ମ ଶତାବ୍ଦୀର ବିଶିଷ୍ଟ କବି ଭର୍ତ୍ତୃହରିଙ୍କ ରଚିତ 'ଶୃଙ୍ଗାର ଶତକ" ପାଠ କରି ନ ଥିବେ ? ଉଦାହରଣ ସ୍ୱରୂପ ସେଥିରୁ ଗୋଟିଏ ଶ୍ଳୋକ ଉଲ୍ଲେଖ କଲେ ଯଥେଷ୍ଟ ହେବ । ଯଥା:—

"ନୂନଂହିତେ କବିବରାଃ ବିପରୀତବୋଧା
ଯେ ନିତ୍ୟମାହୁରବଲା ଇତି କାମିନୀନାମ୍
ଯାଭିର୍ବିଲୋକତରତାରକ ଦୃଷ୍ଟିପାତୈଃ
ଶକ୍ରାଦୟୋଽପି ବିଜିତା ଅବଲା କଥଂତାଃ ॥"

ଅଧିକାଂଶ କବି କାମିନୀମାନଙ୍କୁ 'ଅବଲା' ବୋଲି କହିଥାନ୍ତି । ଏହା ତାଙ୍କର ଭୁଲ୍ । କାରଣ ଯେଉଁ ରମଣୀର କଟାକ୍ଷପାତରେ ସ୍ୱର୍ଗର ଇନ୍ଦ୍ର ମଧ୍ୟ ପରାଜିତ ହୁଅନ୍ତି, ତାଙ୍କୁ 'ଅବଳା' ବୋଲି ଅଭିହିତ କରିବା କିପରି ବା ସମ୍ଭବ ହେବ ? ଭର୍ତ୍ତୃହରିଙ୍କ ପୂର୍ବରୁ କାଳିଦାସ 'ମେଘଦୂତ' କାବ୍ୟରେ ଯେପରି ସାବଲୀଳ ଶୃଙ୍ଗାର-ରସପ୍ରସ୍ଫୁରିତ କରିଥିଲେ, ତାହା ମଧ୍ୟ କଣ ଜୟଦେବଙ୍କର ଅଜ୍ଞାନ ଥିଲା ? ଏଠାରେ ଗୋଟିଏ ଶ୍ଳୋକ 'ମେଘଦୂତ'ରୁ ଉଦାହରଣ ହେଲେ ଯଥେଷ୍ଟ ହେବ:—

"ଭୂୟଶ୍ଚାହ ତ୍ୱମପିଶୟନେ କଣ୍ଠଲଗ୍ନାପୁରା ମେ
ନିଦ୍ରାଂ ଗତ୍ୱା କିମପିରୁଦତୀ ସସ୍ୱନଂ ବିପ୍ରବୁଦ୍ଧା ।

ସାନ୍ଦ୍ରାହ୍ଲାଦଂ କଥିତମସକୃତ୍ ପୃଚ୍ଛତଶ୍ଚାହାସ୍ୟା ମେ
ଦୃଷ୍ଟଃ ସ୍ୱପ୍ନେ କିତବରମୟନ୍ କାମପିତ୍ୱଂ ମୟେତି ।।'

ଅର୍ଥାତ୍, ନିର୍ବାସିତ ଯକ୍ଷ ରାମଗିରି ଆଶ୍ରମରେ ରହି ସ୍ୱୀୟ ପ୍ରଣୟିନୀକୁ ସ୍ମରଣ କରି କହୁଥିଲେ "ଏକଦା ତମେ ମୋର କଣ୍ଠ ଲଗ୍ନ ହସ୍ତରେ ମୋ ଗ୍ରୀବା ଉପରେ ଶୋଇଥିଲ । ହଠାତ୍ ରୋଦନ କରି ଉଠିବାରୁ ମୁଁ ତୁମକୁ କାରଣ ପଚାରିଲି । ସେତେବେଳେ ତମେ ସ୍ମିତହାସ୍ୟ ପ୍ରକାଶ କରି ଉତ୍ତର ଦେଲ, "ଧୂର୍ତ୍ତ, ଶୁଣ, ମୁଁ ସ୍ୱପ୍ନରେ ଦେଖିଲି, ତୁମେ ଅନ୍ୟ ଏକ ରମଣୀ ସଙ୍ଗେ ରମଣ କରୁଛ" ।

ହାଲଙ୍କ ପ୍ରାକୃତ ଭାଷାରେ ରଚିତ 'ସତ୍ତ ସଈ' ନାମକ ଶୃଙ୍ଗାର-ରସପୂର୍ଣ୍ଣ ଗ୍ରନ୍ଥଟି ମଧ୍ୟ ଜୟଦେବଙ୍କର ଅପରିଚିତ ହୋଇ ନ ଥିବ । ହାଲଙ୍କ ବହୁକାଳ ପରେ ଗୋବର୍ଦ୍ଧନାଚାର୍ଯ୍ୟ ସେହି ପ୍ରାଚୀନ ଗ୍ରନ୍ଥଟିକୁ ଅନୁକରଣ କରି "ଆର୍ଯ୍ୟା ସପ୍ତଶତୀ" ନାମରେ ଅନ୍ୟ ଏକ ଗ୍ରନ୍ଥ ସଂସ୍କୃତଭାଷାରେ ରଚନା କରିଥିଲେ । କିନ୍ତୁ ସେଥିରେ ଶୃଙ୍ଗାର-ରସ ଅଳ୍ପ କେତୋଟି ଶ୍ଳୋକରେ ମାତ୍ର ପ୍ରକାଶ ହୋଇଥିବା ଦେଖାଯାଏ । ଆଉ ମଧ୍ୟ ସେହି ଗ୍ରନ୍ଥର ୭୦୦ ଶ୍ଳୋକ ମଧ୍ୟରୁ ୬୨ଟି ପ୍ରକ୍ଷିପ୍ତ ଶ୍ଳୋକ ହୋଇଥିବା ଜଣାଯାଇଛି । ଏପରି ସ୍ଥଳେ ଶୃଙ୍ଗାର-ରସ ପାଇଁ ଗୋବର୍ଦ୍ଧନାଚାର୍ଯ୍ୟଙ୍କୁ ଅନୁସରଣ କରିବା ଜୟଦେବଙ୍କ ପରି ମହାକବି ଓ ପଣ୍ଡିତଙ୍କ ପକ୍ଷରେ ଆଦୌ ସମ୍ଭବ ନୁହେଁ ।

ସାଧୁ ଜୟଦେବ କଳ୍ପିତଭାବେ ରାଧାକୃଷ୍ଣ କେଳିକୁ ଭିତ୍ତି କରି ଯେଉଁ ଶୃଙ୍ଗାର ରସ ଗୀତଗୋବିନ୍ଦରେ ପ୍ରକଟିତ କରିଛନ୍ତି, ତାହା ମୁଖ୍ୟତଃ ପ୍ରେମ-ଭକ୍ତିର ପରାକାଷ୍ଠାକୁ ନିର୍ଦ୍ଦେଶ କରେ । ବୈଷ୍ଣବସମ୍ପ୍ରଦାୟ, ବିଶେଷତଃ ନିମ୍ବାର୍କ ମତବାଦୀମାନଙ୍କର ତାହା ଅତି ଆଦରର 'ନାଟ୍ୟ-ଲୀଳା' ହୋଇ ଦେଶ ବିଦେଶରେ ଖ୍ୟାତି ବିସ୍ତାର କରିଥିଲେ । ଏଦୃଷ୍ଟିରୁ ବିଚାର କଲେ ସାଧୁ ଜୟଦେବଙ୍କୁ ଏକ ଚରିତ୍ରହୀନ ରାଜକୀୟ ଗୋଷ୍ଠୀର ସଭା ପଣ୍ଡିତ ବୋଲି କହିବା ଆଦୌ ସଙ୍ଗତ ନୁହେଁ । ଯେଉଁ ଶ୍ଳୋକଟି ପ୍ରକ୍ଷିପ୍ତ ବୋଲି ଆମେ ନିର୍ଦ୍ଦେଶ କରିଛୁ, ସେଥିରେ କବି ଉମାପତି ଧରଙ୍କ ପରି ଜଣେ ଚରିତ୍ରହୀନ କବିଙ୍କୁ "ବାଚଃ ପଲ୍ଲବୟତ୍ୟୁମାପତି ଧରଃ......ବୋଲି ଜୟଦେବ ପ୍ରଶଂସା କରିବା କଦାପି ଗ୍ରହଣଯୋଗ୍ୟ ନୁହେଁ । ପରବର୍ତ୍ତୀ ପରିଚ୍ଛେଦରେ ବିଶଦ ଭାବରେ ଏଥିର ଆଲୋଚନା କରାଯିବ ।

ଆଗରୁ କୁହାଯାଇଛି ଯେ, 'ଗୀତ ଗୋବିନ୍ଦ' ଏକ ଗୀତ-ନାଟ୍ୟ ଯେଉଁଥିରେ ସାଧାରଣତଃ ରତିଭାବକୁ ହିଁ ପ୍ରାଧାନ୍ୟ ଦିଆଯାଇଥାଏ । ଶୃଙ୍ଗାର ରସାଶ୍ରିତ, ଆଲମ୍ବନ,

ଉଦ୍ଦୀପନ, ଅନୁଭାବ ଓ ମନ୍ତ୍ରଣା ଭାବକୁ ସେଥିର ପରିସ୍ଫୁଟ କରାଯାଇଥାଏ । ଏ ନିୟମରେ ହିଁ 'ଗୀତ ଗୋବିନ୍ଦ' ରଚିତ ହୋଇଥିବା ଦେଖିବାକୁ ମିଳେ ।

'ଗୀତ ଗୋବିନ୍ଦ'ର ଦ୍ୱାଦଶ ଅଧ୍ୟାୟରେ ସମୁଦାୟ ୨୩ଟି ଗାନ ବିଭିନ୍ନ ରାଗ ଓ ତାଳ ମାଧ୍ୟମରେ ଲେଖା ହୋଇଛି । ତାହା ଏଥିର 'ପରିଶିଷ୍ଟ'ରେ ଉଦ୍ଧାର କରାଯାଇଛି । ସେହି ଗାନଗୁଡ଼ିକ ବିଭିନ୍ନ ରାଗ-ରାଗିଣୀରେ ରଚିତ ହୋଇଥିଲେ ମଧ୍ୟ ତାହା 'ଉପଧା ମିଳନ' ନିୟମରେ ଏବଂ ସୁଲଳିତ ଭାଷାରେ ଲେଖା ହୋଇଥିବା ଦେଖାଯାଏ । କିନ୍ତୁ ଅଳ୍ପ କେତୋଟି ଗାନରେ ଠାଏଁ ଠାଏଁ ଉପଧାର ବ୍ୟତିକ୍ରମ ଦେଖାଯାଏ । ଯଥା—

(୨ୟ) ଗୀତ ଶେଷରେ, ଅର୍ଥାତ୍ ୯ମ ପାଦରେ ଅଛି—

ଶ୍ରୀ ଜୟଦେବ କବେ ରିଦଂ
କୁରୁତେ ମୁଦଂ"

(୫ମ) ଗୀତର ୪ର୍ଥ ପାଦ...

ଶେଷ ପାଦ "ସୁବତି ସହସ୍ରଂ
ବିଭିନ୍ନ ତମିସ୍ରଂ"

(ପରିଶିଷ୍ଟ ପରିଚ୍ଛେଦରେ ଦେଖ)



# ଚତୁର୍ଥ ପରିଚ୍ଛେଦ

କବି ଜୟଦେବଙ୍କ ସଙ୍ଗେ ଉମାପତି ଧର, ଶରଣ, ଗୋବର୍ଦ୍ଧନାଚାର୍ଯ୍ୟ ଓ ଧୋୟୀ ନାମକ କବିମାନେ ବଙ୍ଗର ରାଜା ଲକ୍ଷ୍ମଣ ସେନଙ୍କ 'ସଭାପଣ୍ଡିତ' ରୂପେ ଅବସ୍ଥାନ କରିଥିଲେ ବୋଲି ଅଧିକାଂଶ ପଣ୍ଡିତ ମତବ୍ୟକ୍ତ କରିଛନ୍ତି । ଏଣୁ ଏଥିର ଅଧିକ ଗବେଷଣା କରିବା ଆବଶ୍ୟକ । 'ଗୀତ ଗୋବିନ୍ଦ'ରେ ବଙ୍ଗର ସେନବଂଶୀୟ ରାଜା ଲକ୍ଷ୍ମଣ ସେନଙ୍କ ସଂପର୍କରେ କୌଣସି ସୂଚନା ନଥିଲେ ମଧ୍ୟ କେତେକ ପରବର୍ତ୍ତୀ ଗ୍ରନ୍ଥକୁ ଭିତ୍ତି କରି ଏହି ମତ ଗ୍ରହଣ କରାଯାଇଛି । ଉଦାହରଣ ସ୍ୱରୂପ, କବି ଜୟଦେବଙ୍କୁ କେନ୍ଦ୍ର କରି 'ବୀର ଭୂମି ବିବରଣମ୍' ନାମକ ଗ୍ରନ୍ଥରେ ଲେଖା ହୋଇଛି "ଶ୍ରୀ ରୂପ ସନାତନ ଶ୍ରୀ ଧାମ ନବଦ୍ୱୀପରେ ଲକ୍ଷ୍ମଣ ସେନଙ୍କ ସଭାଗୃହରେ ସଂଲଗ୍ନ ଥିବା ତୋରଣର ଖଣ୍ଡିଏ କାଷ୍ଠ ଫଳକରେ ନିମ୍ନୋକ୍ତ ଶ୍ଳୋକଟି ପାଠ କରିଥିଲେ—

"ଗୋବର୍ଦ୍ଧନଶ୍ଚ ଶରଣଃ ଜୟଦେବ ଉମାପତିଃ ।
କବିରାଜଶ୍ଚ ରତ୍ନାନି ସମିତୌ ଲକ୍ଷ୍ମଣସ୍ୟ ଚ ॥"

ଏହି ଶ୍ଳୋକଟି କାଶ୍ମୀର କବି କାହ୍ଲଣଙ୍କ 'ରାଜ ତରଙ୍ଗିଣୀ' ନାମକ କାବ୍ୟରେ ଉଦ୍ଧୃତ ହୋଇଅଛି ବୋଲି ପଣ୍ଡିତ ରମାକାନ୍ତ ତ୍ରିପାଠୀ ତାଙ୍କର ସଂକଳିତ 'ଆର୍ଯ୍ୟ ସପ୍ତଶତୀ' ଭୂମିକାରେ ଦର୍ଶାଇଛନ୍ତି । † ଏହା ସ୍ପଷ୍ଟତଃ ଏକ ପ୍ରକ୍ଷିପ୍ତ ଶ୍ଳୋକ ବୋଲି ପ୍ରମାଣିତ ହୋଇଛି । ଏ ସମ୍ବନ୍ଧରେ ବିଚାର କରିବାକୁ ଯାଇ ଜଣେ ଇଉରୋପୀୟ ପଣ୍ଡିତ ଏମ୍. ଭିଣ୍ଟାରନିଜ୍ (M. Winternitz) ପ୍ରଶ୍ନ କରିଛନ୍ତି, ଯେଉଁ 'ରାଜତରଙ୍ଗିଣୀ' କାବ୍ୟଟି କହ୍ଲଣ ୧୧୪୮ ଖ୍ରୀ.ରେ ଲେଖିଥିଲେ, ସେଥିରେ ୧୧୭୦ ବା ୧୧୭୯ ସାଲରେ ଲକ୍ଷ୍ମଣ ସେନ ରାଜତ୍ୱ କାଳ (ଆରମ୍ଭ) ପ୍ରସଙ୍ଗ କିପରି ଯୋଡ଼ି ହୋଇଗଲା ? ଏଣୁ ଏହା ନିତାନ୍ତ ଅବାନ୍ତର ଓ ପରବର୍ତ୍ତୀ କାଳର ପ୍ରକ୍ଷିପ୍ତ ଛଡ଼ା ଆଉ କିଛି ନୁହେଁ ❊

---

† ଏ ଗ୍ରନ୍ଥଟି ସର୍ବପ୍ରଥମେ ୧୮୩୬ ମସିହାରେ କଲିକତାଠାରେ ମୁଦ୍ରିତ ହେଲା ।

❊ History of Indian Literature, Vol III, P 56 f.

ଶ୍ରୀଧର ଦାସଙ୍କ ସଙ୍କଳିତ 'ସଦୁକ୍ତି କର୍ଣ୍ଣାମୃତ' † ନାମକ ଗ୍ରନ୍ଥରେ ଉମାପତି ଧରଙ୍କ ରଚିତ କେତୋଟି ଶ୍ଳୋକ ଉଦ୍ଧାର କରାଯାଇଛି । ଏହା ଗୋଟିଏ ସଙ୍କଳିତ ଗ୍ରନ୍ଥ ହୋଇଥିବାରୁ 'ଗୀତ ଗୋବିନ୍ଦ'ର କେତେକ ଶ୍ଳୋକ ମଧ୍ୟ ଏଥିରେ ରହିଛି । କିନ୍ତୁ ଗୋବର୍ଦ୍ଧନାଚାର୍ଯ୍ୟଙ୍କ 'ଆର୍ଯ୍ୟ ସପ୍ତଶତୀ'ର ଗୋଟିଏ ହେଲେ ଶ୍ଳୋକ ଏଥିରେ ନଥିବାରୁ ଜଣାଯାଉଛି ଯେ, 'ସଦୁକ୍ତି କର୍ଣ୍ଣାମୃତ' ସଙ୍କଳିତ ହେଲାବେଳକୁ ଆର୍ଯ୍ୟା ସପ୍ତଶତୀ' ଅନୁବାଦିତ ହୋଇ ନଥିଲା । ଏ ସମ୍ପର୍କରେ ଅଧିକ ତଥ୍ୟ ୫ମ ପରିଚ୍ଛେଦରେ ବିବୃତ ହେବ । ସେହି ଗ୍ରନ୍ଥଟି ୧୨୦୫ ଖ୍ରୀଷ୍ଟାବ୍ଦରେ ସଙ୍କଳିତ ହୋଇଥିବା ଜଣାଯାଏ । ଶ୍ରୀଧର ଦାସ ଓ ତାଙ୍କ ପିତା ବଟୁ ଦାସ ରାଜା ଲକ୍ଷ୍ମଣ ସେନଙ୍କ ଦ୍ୱାରା ନିଯୁକ୍ତ ଲାଭ କରିଥିଲେ । ଡା. ପ୍ରଶାନ୍ତ କୁମାର ଦାସଗୁପ୍ତ ତାଙ୍କ "Jayadeva and some of his contemporaries" ନାମକ ସମାଲୋଚନାମୂଳକ ଗ୍ରନ୍ଥରେ ଲେଖିଛନ୍ତି, କବି ଉମାପତି ଧର ଓ ରାଜା ଲକ୍ଷ୍ମଣ ସେନଙ୍କୁ ମିଶାଇ ସେମାନଙ୍କ ନାମରେ ପ୍ରଚଳିତ କିମ୍ବଦନ୍ତୀକୁ ଆଧାର କରି ଜୈନ କବି ମେରୁତୁଙ୍ଗଙ୍କ 'ପ୍ରବନ୍ଧ ଚିନ୍ତାମଣି' ଗ୍ରନ୍ଥରେ ୧୩୦୨ ଖ୍ରୀଷ୍ଟାବ୍ଦରେ ମଧ୍ୟ ଯେ ବିଷୟ ଉଲ୍ଲେଖ କରାଯାଇଛି । କିନ୍ତୁ ତାହା ମଧ୍ୟ ପ୍ରଚାରକମାନଙ୍କ ନକଲି ଏବଂ ଉଦ୍‌ଭଟ ଲେଖା ବୋଲି ଏମ୍. ଭିଣ୍ଟାରନିଜ୍ ଲେଖିଛନ୍ତି—

The anacdote narrated in Merutunga's Pravandha Chintamani' (translated by Towney, P 48 ff) and in Ballata's 'Bhoja Pravandha' that makes him a contemporary of king Bhoja is, however, unhistorical like many anacdotes, in such works" (୧)

"ସେକ୍ ଶୁଭୋଦୟ" ନାମକ ଗ୍ରନ୍ଥରେ ଲକ୍ଷ୍ମଣ ସେନ ଓ ତାଙ୍କ ମନ୍ତ୍ରୀ ଉମାପତି ଧରଙ୍କୁ ସ୍ୱେଚ୍ଛାଚାରୀ, କାମୁକ ଓ ଚରିତ୍ରହୀନ ରୂପେ ବର୍ଣ୍ଣନା କରାଯାଇଛି । ବିଦ୍ୟୁତପ୍ରଭା ନାମ୍ନୀ ଜଣେ ରମଣୀ ପ୍ରତି ଅତ୍ୟାଚାର କରିଥିବାରୁ ସେ ରମଣୀ କହିଥିଲେ—

---

† 'ସଦୁକ୍ତି କର୍ଣ୍ଣାମୃତ' ଯେଉଁ ପ୍ରାଚୀନ ପୋଥିଗୁଡ଼ିକ କେରଳ, ମାନ୍ଦ୍ରାଜ ଓ କର୍ଣ୍ଣାଟକରୁ ମିଳିଛି ସେଥିରେ ଜୟଦେବଙ୍କ କୌଣସି ଶ୍ଳୋକ ସଙ୍କଳିତ ହୋଇଥିବାର ଦେଖାଯାଏ ନାହିଁ ।

(୧) History of Indian Literature, Vol III, P 53.

ଯତ୍ର ରାଜା ଚ ମନ୍ତ୍ରୀ ଚ ଦ୍ୱାବପି ପାରଦାରିକାଃ,
ତସ୍ୟ ରାଜ୍ୟ ବିନାଶସ୍ୟାତ୍ ଯଶସ୍ତୋନାଥ ବଦ୍ୟତେ । *

ସେହି 'ସେକ୍ ଶୁଭୋଦୟ' ଗ୍ରନ୍ଥର ଲେଖକ ହଳାୟୁଧ ମିଶ୍ର ହେଉଛନ୍ତି ଜଣେ ଶ୍ରୁତି ବିଶାରଦ ନୈଷ୍ଠିକ ବ୍ରାହ୍ମଣ । 'ସେକ୍ ଶୁଭୋଦୟ' ଗ୍ରନ୍ଥରେ କବି ହଳାୟୁଧ ସମ୍ଭବତଃ ମୁସଲମାନଙ୍କ ଦ୍ୱାରା ରାଜଧାନୀ ନଦିଆ ଅଧିକୃତ ହେବା ପାଇଁ ତାଙ୍କ ସନ୍ତୋଷ ବିଧାନ ସକାଶେ ସେହି ଗ୍ରନ୍ଥରେ ରାଜା ଲକ୍ଷ୍ମଣ ସେନ ଓ ତାଙ୍କ ମନ୍ତ୍ରୀ ଉମାପତି ଧରଙ୍କ ନିନ୍ଦା କରିବା ସମ୍ଭବ । ହଳାୟୁଧ ଜଣେ ରାଜାଙ୍କ ସଙ୍ଗେ ପୁରୁଷୋତ୍ତମ କ୍ଷେତ୍ରକୁ ନଯାଇ ଲକ୍ଷ୍ମଣ ସେନଙ୍କ ପୁତ୍ର ବିଶ୍ୱରୂପ ସେନଙ୍କ ସଙ୍ଗେ ଗୌଡ଼ ଦେଶକୁ ପଳାୟନ କରି ସେଠାରେ ବହୁ ପରିମାଣରେ ଭୂସମ୍ପଦ ଉପାର୍ଜନ କରିଥିଲେ । ବିଶ୍ୱରୂପ ସେନଙ୍କର ଗୋଟିଏ ଦାନଶାସନରେ † ସେ ଜଣେ ଦାନ ଗ୍ରହୀତା ରୂପେ ବର୍ଣ୍ଣିତ ହୋଇଅଛନ୍ତି, ଯଥା—ବତ୍ସସଗୋତ୍ରୀୟ ତଥା ଔର୍ବ-ଚ୍ୟବନ-ଭାର୍ଗବ-ଯାମଦଗ୍ନ୍ୟ ଉପ୍ନବନ (ପଞ୍ଚର୍ଷି) ପ୍ରବର ଏବଂ ଯଜୁର୍ବେଦକାଣ୍ୱଶାଖାଧ୍ୟାୟି ବୈଦିକ ବ୍ରାହ୍ମଣ । ତାଙ୍କ ବଂଶ ବୃକ୍ଷ ପ୍ରଦତ୍ତ ହେଲା—

ଲକ୍ଷ୍ମୀଧର ଦେବଶର୍ମା
|
ବେଦଧର ଦେବଶର୍ମା
|
ଅଧ୍ୟାୟ ଦେବଶର୍ମା
|
(ଆବର୍ତ୍ତିକ) ହଳାୟୁଧ ଦେବଶର୍ମା

ଏହି ତାମ୍ର ଶାସନଟି ସମ୍ଭତ୍ ୧୦୦ (ଖ୍ରୀ : ୨୧୯)ରେ ଘୋଷିତ ହୋଇଥିଲା । ହଳାୟୁଧ ଜଣେ ଚତୁର ଓ କୌଶଳୀ ବ୍ରାହ୍ମଣ ହୋଇଥିବାରୁ ବହୁବିଧ ଉପାୟରେ ପ୍ରାୟ ୫୦୦ 'ଦମ୍ମ' ପରିମିତ ଭୂ-ସମ୍ପଦ ପୂର୍ବବଙ୍ଗରେ ଉପାର୍ଜନ କରିପାରିଥିଲେ । ମହାମହୋପାଧ୍ୟାୟ ହରପ୍ରସାଦ ଶାସ୍ତ୍ରୀ ଲେଖିଛନ୍ତି—

---

* ସେକ୍ ଶୁଭୋଦୟ, ୧୬ଶ ପରିଚ୍ଛେଦ ।

† ମହାମହୋପାଧ୍ୟାୟ ହରପ୍ରସାଦ ଶାସ୍ତ୍ରୀଙ୍କ ସମ୍ପାଦିତ I.H.Q., Vol II, PP 77-86 ff (1985)

Halayudha of the vastyagotra, the donee, was a very clever man. He purchased many pieces of land in many places in East Bengal······There we came to learn that the land belonged to the province of Pundravardhana (Mahasthana of Bagura District)

ସେ 'ବ୍ରାହ୍ମଣ-ସର୍ବସ୍ୱ' ନାମକ ଗ୍ରନ୍ଥଟି ଲେଖିଥିଲେ । ଲକ୍ଷ୍ମଣସେନଙ୍କ ସମ୍ପର୍କରେ ନିମ୍ନୋକ୍ତ ଶ୍ଳୋକଟି ସେଥିରେ ଲେଖିଛନ୍ତି ।

"ବାଲ୍ୟେ ଖ୍ୟାପିତ ରାଜପଣ୍ଡିତ ପଦଃ ଶ୍ୱେତାଂଶୁ ବିମ୍ବୋଜ୍ଜ୍ୱଲ
ଛତ୍ରୋତ୍ସିକ୍ତ ମହାମହତ୍ତ୍ୱ ମନୁପଦଂ ଦତ୍ତ୍ୱାନବା ଯୌବନେ ।
ଯସ୍ମୈ ଯୌବନ ଶେଷ ଯୋଗ୍ୟ ମଖିଳ କ୍ଷ୍ମାପାଳ ନାରାୟଣଃ ।
ଶ୍ରୀମାନ୍ ଲକ୍ଷ୍ମଣ ସେନ ଦେବ ନୃପତି ଧର୍ମାଂ ଶ୍ରୀକର୍ମଂ ଦଦୌ" ॥ (୧)

ରାଜା ଲକ୍ଷ୍ମଣ ସେନଙ୍କ ଚରିତ୍ର ତାଙ୍କ ଯୌବନ କାଳରେ ବୋଧହୁଏ କେତେକ ପରିମାଣରେ ବିଳାସପ୍ରିୟତା ହେତୁ ନଷ୍ଟ ଭ୍ରଷ୍ଟ ହୋଇଥିଲା । ତେଣୁ ତାଙ୍କ ମନ୍ତ୍ରୀ ଉମାପତିଧର ମଧ୍ୟ କଳଙ୍କିତ ଜୀବନ ଯାପନ କରିଥିବା ପ୍ରସଙ୍ଗ ଏଡ଼ାଇ ଦିଆଯାଇ ପାରିବ ନାହିଁ । କାରଣ ରାଜ୍ୟର ଭଲମନ୍ଦ ବୁଝି ଶାସନ ଶୃଙ୍ଖଳା ଦୃଢ଼ ରଖିବା ମନ୍ତ୍ରୀଙ୍କର ପ୍ରଧାନ କାର୍ଯ୍ୟ । ରାଜଧାନୀରେ ରାଜା ଓ ରାଜ ପରିବାରଙ୍କୁ ନିରାପଦ କରି ରଖିବା ମନ୍ତ୍ରୀ ଓ ସେନାପତିଙ୍କର ସର୍ବପ୍ରଥମ କର୍ତ୍ତବ୍ୟ । କିନ୍ତୁ ୧୨୦୫ ଖ୍ରୀ. ରେ ବକ୍ତିୟାର ଖିଲ୍‌ଜି ଷୋଳଜଣ ମାତ୍ର ଅଶ୍ୱାରୋହୀଙ୍କ ସଙ୍ଗେ ବିନା ପ୍ରତିରୋଧରେ ଲୋକଙ୍କ ଚକ୍ଷୁରେ ଧୂଳି ଦେଇ ରାଜଧାନୀ ନଦିଆରେ ପଶିଯାଇ ରାଜପ୍ରାସାଦ ସଙ୍ଗେ ସମସ୍ତ ରାଜଧାନୀ ଆକ୍ରମଣ କରିଥିବା, ପୁଣି ରାଜପ୍ରାସାଦରୁ ବୃଦ୍ଧରାଜା ଆତ୍ମରକ୍ଷା ନିକାଶେ ଲୁଚି ପଳାଇଥିବା ଘଟଣାରୁ ବୁଝିବାକୁ ହେବ ଯେ, ଲକ୍ଷ୍ମଣ ସେନଙ୍କ ସେହି ଦାୟିତ୍ୱସମ୍ପନ୍ନ ରାଜକର୍ମୀମାନେ ନିତାନ୍ତ ଅଯୋଗ୍ୟ ହୋଇଥିଲେ । କିନ୍ତୁ ରାଜାଙ୍କ ବୀରତ୍ୱ ଓ ଧର୍ମନିଷ୍ଠାର ଉତ୍କର୍ଷ ମାଧାଇ ନଗର ତାମ୍ର ଶାସନ ପ୍ରଶସ୍ତିରେ ଗାନ କରାଯାଇଥିଲେ ହେଁ ତାଙ୍କ ଶାସନର ଦୁର୍ବଳତା ଲୁଚି ପାରିବ ନାହିଁ । ହୁଏତ ରାଜା ଲକ୍ଷ୍ମଣସେନ ତାଙ୍କ ବୃଦ୍ଧ ବୟସରେ ଧର୍ମପରାୟଣ ହୋଇ ରାଜନୈତିକ କ୍ରିୟାକଳାପରୁ ଦୂରେଇ ଯାଇଥିବେ, ଯାହାଫଳରେ ତାଙ୍କ ମନ୍ତ୍ରୀ, ସେନାପତି ଓ ପଦାଧିକାରୀମାନେ ନିଜ ନିଜ କର୍ତ୍ତବ୍ୟରେ ଅବହେଳା କରି ବିଳାସରେ ମାତିଥିବେ ଏବଂ ସେଥିର ସୁବିଧା ପାଇ ବକ୍ତିୟାର୍ ଖିଲ୍‌ଜି ବିନା ପ୍ରତିରୋଧରେ ନଦିଆ ଅଧିକାର କରିବାକୁ ସମର୍ଥ ହୋଇ ପାରିଥିଲେ ।

(୧) ବ୍ରାହ୍ମଣ ସର୍ବସ୍ୱ ୩

ରାଜା ଲକ୍ଷ୍ମଣସେନ ନଦିଆ ରାଜପ୍ରାସାଦରୁ ଲୁଚି ଜଗନ୍ନାଥ ଦେଶକୁ (ଓଡ଼ିଶାକୁ) ପଳାଇ ଯାଇଥିବା କଥା ମୁସଲମ୍ ଐତିହାସିକଙ୍କ ଲେଖାରୁ ପ୍ରକଟିତ ହୋଇଅଛି । ଏହା ଆଲୋଚନା କରିବା ପୂର୍ବରୁ ବଙ୍ଗରେ ସେନ ରାଜବଂଶର ସ୍ଥିତି ଏବଂ ପାଲ ରାଜବଂଶର ପତନ ସମ୍ପର୍କରେ ସଂକ୍ଷେପ ସୂଚନା ଦେଲେ ସ୍ପଷ୍ଟ ଜଣାଯିବ ଯେ, ଲକ୍ଷ୍ମଣ-ସେନ ଅନ୍ୟ କୌଣସି ନିରାପଦ ଅଞ୍ଚଳରେ ଆଶ୍ରୟ ନ ନେଇ ଗଙ୍ଗ ରାଜାମାନଙ୍କ ଅଧିକୃତ ଜଗନ୍ନାଥ ଦେଶ (ଓଡ଼ିଶା)କୁ ଯିବାପାଇଁ କାହିଁକି ଉତ୍ସାହିତ ହେଲେ ।

ପ୍ରଥମ ପରିଚ୍ଛେଦରେ କୁହାଯାଇଛି ଯେ, କଳିଙ୍ଗର ଗଙ୍ଗାବଂଶୀୟ ମହାରାଜା ଚୋଡ଼ଗଙ୍ଗ ୧୧୧୨ ଖ୍ରୀଷ୍ଟାବ୍ଦରେ ଉତ୍କଳର ସୋମବଂଶୀ ମହାରାଜା କର୍ଣ୍ଣଦେବଙ୍କୁ ଜୟ କଲାପରେ ସେ ବଙ୍ଗର ପାଲବଂଶୀୟ ମହାରାଜା ରାମପାଲଙ୍କ ବିରୁଦ୍ଧରେ ଅଭିଯାନ ଆରମ୍ଭ କରିଥିଲେ । ଉଭୟ ରାଜାଙ୍କ ମଧ୍ୟରେ ପ୍ରବଳ ଯୁଦ୍ଧ ହୋଇଥିଲା । ସମ୍ଭବତଃ ସେ ଯୁଦ୍ଧ ୧୧୨୦ ଖ୍ରୀଷ୍ଟାବ୍ଦରେ ବା ସେଥିର ଅଳ୍ପକାଳ ପରେ ବଙ୍ଗର ଗଙ୍ଗାନଦୀ ତଟବର୍ତ୍ତୀ କୌଣସି ସ୍ଥାନରେ ଅନୁଷ୍ଠିତ ହୋଇଥିଲା । ସେତେବେଳେ ସେନବଂଶୀୟ ମହାରାଜା ବିଜୟସେନ ଚୋଡ଼ଗଙ୍ଗଙ୍କ ସଙ୍ଗେ ମିତ୍ରତା ସ୍ଥାପନ କରି ପାଲବଂଶୀୟ ରାଜାଙ୍କ ପରାଜୟ ପରେ ବଙ୍ଗର ରାଢ଼ ଅଞ୍ଚଳରେ ନିରଙ୍କୁଶ ଶାସନ ଚଳାଇବାକୁ ସମର୍ଥ ହୋଇଥିଲେ ।

ଆନନ୍ଦ ଭଟ୍ଟଙ୍କ "ବଲ୍ଲାଳ ଚରିତମ୍" ନାମକ ଗ୍ରନ୍ଥରେ ଲେଖାଅଛି :—

ତସ୍ମାତ୍ତୁ ବିଜୟସେନୋଽଭୂତ୍ ଚୋଡ଼ଗଙ୍ଗ ସଖୋନୃପଃ
ଯୋଽଜୟତ୍ ପୃଥିବୀ କୃତ୍ସ୍ନା ଚତୁଃସାଗର ମେଖଳାମ୍ ।।" (୧)

୧୧୨୯-୨୨ ଖ୍ରୀଷ୍ଟାବ୍ଦରେ ରାଢ଼ ଓ ବରେନ୍ଦ୍ର ଅଞ୍ଚଳରେ ରାଜଧାନୀ ସ୍ଥାପନ କରି ରାଜତ୍ୱ କରିଥିବା ସମ୍ଭବ । ତାଙ୍କ ପୁତ୍ର ବଲ୍ଲାଳ ସେନଙ୍କ ରାଜତ୍ୱ ଶାନ୍ତିରେ ପରିଚାଳିତ ହୋଇଥିଲା । ସେ ଜଣେ ନୀତି ବିଶାରଦ ପଣ୍ଡିତ ହୋଇଥିବାରୁ, ତାଙ୍କ ସଭାରେ ବହୁ ଶାସ୍ତ୍ରଜ୍ଞ ପଣ୍ଡିତ ରହି ଗ୍ରନ୍ଥମାନ ଲେଖିବାରେ ସାହାଯ୍ୟ କରିଥିଲେ । ବାସ୍ତବରେ ବଲ୍ଲାଳସେନଙ୍କ ନାମରେ ଦୁଇଟି ମୂଲ୍ୟବାନ ଧର୍ମଗ୍ରନ୍ଥ ଲେଖି ହୋଇ ସର୍ବଭାରତୀୟ ସ୍ତରରେ ପ୍ରସିଦ୍ଧି ଲାଭ କରିଥିଲା ।

ସେ ଦୁଇଟି ଧର୍ମଶାସ୍ତ୍ର ମଧ୍ୟରୁ ଗୋଟିଏ ହେଉଛି 'ଦାନ ସାଗର', ଯାହାକ ୧୨୩୦ ଖ୍ରୀଷ୍ଟାବ୍ଦରେ ଓଡ଼ିଶାର ମହାରାଜା ଅନଙ୍ଗ ଭୀମଦେବ (ତୃତୀୟ)ଙ୍କ ନଗରୀ ତାମ୍ର ଶାସନରେ ଉଲ୍ଲେଖ ହୋଇଅଛି । (୨) ଦ୍ୱିତୀୟ ଗ୍ରନ୍ଥଟି "ଅଦ୍ଭୁତ ସାଗର" ଯାହାକ

(୧) 'ବଲ୍ଲାଳ ଚରିତମ୍', ୧୨ଶ ଅଧ୍ୟାୟ
(୨) EP. Ind., Vol. XXVIII, P. 235 ff.

ତାଙ୍କ ମୃତ୍ୟୁ ପରେ ଲେଖା ଶେଷ ହୋଇଥିଲା ତାଙ୍କ ପୁତ୍ର ଲକ୍ଷ୍ମଣସେନଙ୍କ ରାଜତ୍ୱ କାଳରେ ।

ଲକ୍ଷ୍ମଣସେନଙ୍କ ରାଜତ୍ୱ କେବେ ଆରମ୍ଭ ହୋଇଥିଲା, ସେଥିର ସଠିକ୍ ସମୟ ଜଣାଯାଉ ନଥିବାରୁ ବିଭିନ୍ନ ଐତିହାସିକ ଭିନ୍ନ ଭିନ୍ନ ମତ ପୋଷଣ କରିଥିବା ଦେଖାଯାଏ । ଉଦାହରଣ ସ୍ୱରୂପ, ଅଧ୍ୟାପକ ରାଖାଲ ଦାସ ବାନାର୍ଜି କହନ୍ତି ଯେ ତାଙ୍କ ରାଜତ୍ୱ ୧୧୧୯ ଖ୍ରୀଷ୍ଟାବ୍ଦରେ ଆରମ୍ଭ ହୋଇଥିଲା ଏବଂ ସେ ପ୍ରାୟ ୩୦ ବର୍ଷ ରାଜତ୍ୱ କରିଥିଲେ । (୧) ଏଥିର କାରଣ ଦର୍ଶାଇବାକୁ ଯାଇ ସେ କହନ୍ତି ଯେ ସେ ବର୍ଷଠାରୁ ବଙ୍ଗଦେଶରେ ଏକ ନୂତନ ସମ୍ବତ୍ ତାଙ୍କ ନାମରେ ପ୍ରଚଳିତ ହେଲା । କିନ୍ତୁ ଡ. ଡି. ଭଟ୍ଟାଚାର୍ଯ୍ୟଙ୍କ ମତାନୁସାରେ, ୧୧୧୯ ଖ୍ରୀଷ୍ଟାବ୍ଦରେ ଲକ୍ଷ୍ମଣସେନ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତା ବଲ୍ଲାଳସେନଙ୍କ ମୃତ୍ୟୁପରେ ଖ୍ରୀ ୧୧୭୦-୮୦ ମଧ୍ୟରେ ପ୍ରାୟ ୩୫ ବର୍ଷ ସେ ରାଜତ୍ୱ କରିଥିଲେ । ସେ ଯଦି ୧୧୧୯ ଖ୍ରୀଷ୍ଟାବ୍ଦରେ ଜନ୍ମଲାଭ କରିଥିବେ, ତା ହେଲେ ରାଜ୍ୟାଭିଷେକ ବେଳକୁ ତାଙ୍କ ବୟସ ଅନ୍ୟୂନ ୫୧ ବର୍ଷ ହୋଇଥିବ । ବକ୍ତିୟାର୍ ଖିଲ୍ଜିଙ୍କ ନଦିଆ ଆକ୍ରମଣ ୧୨୦୫ ଖ୍ରୀଷ୍ଟାବ୍ଦରେ ସମ୍ପନ୍ନ ହୋଇଥିଲା ଏବଂ ବଙ୍ଗରୁ ସେନ ରାଜତ୍ୱ ଛିନ୍ନ ହୋଇଥିଲା । ତେଣୁ ସେତେବେଳେ ସେ ୮୬ ବର୍ଷ ବୟସରେ ବୃଦ୍ଧ ଅବସ୍ଥା ଭୋଗ କରୁଥିବା ସ୍ପଷ୍ଟ ଜଣାଯାଉଛି । ସେହି ଅବସ୍ଥାରେ ସେ ନିଶ୍ଚିତ ଭାବେ କେତେକ ସମର୍ଥକ ପଣ୍ଡିତଙ୍କ ସଙ୍ଗରେ ତୀର୍ଥକ୍ଷେତ୍ର ଶ୍ରୀଜଗନ୍ନାଥ କ୍ଷେତ୍ରରେ ଆଶ୍ରୟ ନେଇଥିବା ସ୍ୱାଭାବିକ । ଏଠାରେ କହିଲେ ଅତ୍ୟୁକ୍ତି ହେବ ନାହିଁ ଯେ ୧୨୩୦ ଖ୍ରୀଷ୍ଟାବ୍ଦରେ ମହାରାଜା ଅନଙ୍ଗଭୀମଙ୍କ ରାଜତ୍ୱବେଳକୁ ବଲ୍ଲାଳସେନଙ୍କ 'ଦାନ ସାଗର' ସ୍ମୃତି ଗ୍ରନ୍ଥଟି ନଦିଆରୁ ସମାଗତ ପଣ୍ଡିତମାନଙ୍କ ଦ୍ୱାରା ଓଡ଼ିଶାରେ ପ୍ରସାର ଲାଭ କରିଥିଲା ।

ଏହି ପରିପ୍ରେକ୍ଷୀରେ ବୋଧହୁଏ ଶ୍ରୀ ମନମୋହନ ଗାଙ୍ଗୁଲି କେତେକ ଭୁଲ ତଥ୍ୟ "Orissa and Her Remains" ପୁସ୍ତକରେ ଜୟଦେବଙ୍କୁ ମିଶାଇ ନିମ୍ନ ପ୍ରକାରେ ଲେଖିଛନ୍ତି—

Whose reign terminated in 1198 A. D; hence jayadeva must have gone there (Puri) towards the close of the 12th century and it is certain that Purusottama was then one of the most sacred place of pilgrimage or else the old poet would not have gone there in those days

(୧) Prof. R. D. Banerjee, History of Bengal, Pt I.

of inadequate means of communication. (୧) ଅର୍ଥାତ୍ ଆମେ ଜାଣୁ ଯେ ରାଜା ଲକ୍ଷ୍ମଣସେନ ଯାହାଙ୍କ ରାଜତ୍ୱ ୧୧୭୭-୧୨୦୫ ଖ୍ରୀଷ୍ଟାବ୍ଦରେ ସମାପ୍ତ ହୋଇଥିଲା, ସେତେବେଳେ ଜୟଦେବ ଖ୍ରୀଷ୍ଟୀୟ ଦ୍ୱାଦଶ ଶତାବ୍ଦୀରେ ପୁଣ୍ୟକ୍ଷେତ୍ର ପୁରୁଷୋତ୍ତମ (ପୁରୀ)କୁ ତୀର୍ଥଯାତ୍ରୀ ରୂପେ ଯାଇଥିଲେ । ନଚେତ୍ ସେହି ଯାତ୍ରାପଥର ଯୁଗରେ ବୃଦ୍ଧ କବିଙ୍କ ପକ୍ଷରେ ଯିବା ସମ୍ଭବ ନୁହେଁ । ଗାଙ୍ଗୁଲି ମହାଶୟ ବୋଧହୁଏ ଜୟଦେବଙ୍କର ଜୀବିତ କାଳ ଦ୍ୱାଦଶ ଶତାବ୍ଦୀକୁ ପ୍ରତିଷ୍ଠିତ କରିବାପାଇଁ ଚତୁରତାର ସହିତ ଲକ୍ଷ୍ମଣସେନଙ୍କ ରାଜତ୍ୱ ୧୧୯୮ ଖ୍ରୀଷ୍ଟାବ୍ଦରେ ଶେଷ ହୋଇଥିବ ବୋଲି ଲେଖିଛନ୍ତି ଏବଂ ବୃଦ୍ଧ କବି ଜୟଦେବଙ୍କ ପୁରୀକୁ ଯାତ୍ରା କରିବା କେବଳ ତୀର୍ଥ ପାଇଁ ଉଦ୍ଦିଷ୍ଟ ବୋଲି କହିଛନ୍ତି ।

କିନ୍ତୁ ଲକ୍ଷ୍ମଣସେନ ବାସ୍ତବରେ ୧୧୭୭ ରୁ ଆରମ୍ଭ କରି ୧୨୦୫ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ନଦିଆରେ ରହି ରାଜତ୍ୱ କରିଥିବା ଜଣାଯାଏ । ସେ ଦାନ କରିଥିବା ତିନିଗୋଟି ତାମ୍ରଶାସନ (୨) ୧୧୭୦ ଏବଂ ୧୧୭୧ ଖ୍ରୀଷ୍ଟାବ୍ଦରେ ଖୋଦିତ ହୋଇଥିଲା ।

(୧) ସୁନ୍ଦର ବନ ତାମ୍ରଶାସନର ସମୟ—ଜାନୁୟାରି ୧୧୭୦ ଖ୍ରୀଷ୍ଟାବ୍ଦ

(୨) ଅନୁଲିଆ ତାମ୍ରଶାସନର ସମୟ—ଅଗଷ୍ଟ ୧୧୭୦ ଖ୍ରୀଷ୍ଟାବ୍ଦ ଏବଂ

(୩) ଶକ୍ତିପୁର ତାମ୍ରଶାସନ—ଜୁଲାଇ ୧୧୭୧ ଖ୍ରୀଷ୍ଟାବ୍ଦ ।

ଏହୃଷ୍ଟିରୁ ବିଚାର କଲେ ଜଣାଯାଉଛି ଯେ ୧୧୭୦ ଖ୍ରୀଷ୍ଟାବ୍ଦରେ କମ୍ବା ବର୍ଷେ ପୂର୍ବରୁ ସେ ସିଂହାସନ ଆରୋହଣ କରିଥିବେ । ସେ ତାଙ୍କ ବୃଦ୍ଧ ବୟସରେ ନଦିଆସ୍ଥିତ ରାଜପ୍ରାସାଦରେ ରହି ଥିଲାବେଳେ ଅପ୍ରତ୍ୟାଶିତ ଭାବେ ୧୨୦୫ ଖ୍ରୀଷ୍ଟାବ୍ଦରେ ମୁସଲମାନଙ୍କ ଦ୍ୱାରା ନଦିଆ ରାଜଧାନୀ ଆକ୍ରାନ୍ତ ହେବାରୁ, ସେହି ବର୍ଷଠାରୁ ତାଙ୍କର ରାଜତ୍ୱ ୮୨ ବର୍ଷ ବୟସରେ ଶେଷ ହୋଇଗଲା । ନିଜର ଆତ୍ମରକ୍ଷା ସକାଶେ ସେ ଜଗନ୍ନାଥ ଦେଶକୁ ପଳାୟନ କଲେ । ସେତେବେଳେ ଉତ୍କଳର ଶାସକ ଥିଲେ ରାଜରାଜ ଦେବ (୧୧୯୮-୧୨୧୨)

୧୧୯୯ ଖ୍ରୀଷ୍ଟାବ୍ଦରୁ ଆରମ୍ଭ କରି ମହମ୍ମଦ ବକ୍ତିୟାର ଖିଲ୍‌ଜି ରାଢ଼ ଓ ବରେନ୍ଦ୍ରର ରାଜଧାନୀ ନଦିଆ ଆକ୍ରମଣ କରିବାକୁ ମସୁଧା କରିଥିଲେ, ତାହା ୧୨୦୫

(୧) Orissa and Her Remains, P 403 f. M. M. Ganguly, 1986 N. D.

(୨) ଧୀରେନ୍ଦ୍ରନାଥ ବସୁ, 'Chronology of the Sena Kings' I. H. Q. Vol X, PP 728-737.

ଖ୍ରୀଷ୍ଟାବ୍ଦରେ ଫଳପ୍ରଦ ହେଲା । ଏ ସମ୍ବନ୍ଧରେ 'Tabaqat-i-Nasiri' ନାମକ ପେର୍ଶିୟାନ୍ ଗ୍ରନ୍ଥରେ ମିନ୍‌ହାଜ୍ (Minhaj) ନାମକ ଲେଖକ ଯାହା ୧୨୫୯ ଖ୍ରୀଷ୍ଟାବ୍ଦରେ ବର୍ଣ୍ଣନା କରିଛନ୍ତି, ସେଥିରୁ ଜଣାଯାଉଛି ଯେ ୧୧୯୯ ଖ୍ରୀଷ୍ଟାବ୍ଦରେ ନଦିଆ ରାଜଧାନୀ ଅଧିକାର କରିବାକୁ ମହମ୍ମଦ ବକ୍ତିୟାର୍ ଖିଲ୍‌ଜି ପ୍ରଥମେ ମସୁଧା କଲେ, ଯାହାକି ୧୨୦୫ ଖ୍ରୀଷ୍ଟାବ୍ଦରେ କାର୍ଯ୍ୟକାରୀ ହୋଇଥିଲା । ଉକ୍ତ ପେର୍ଶିୟାନ ଗ୍ରନ୍ଥର ଇଂରାଜୀ ଅନୁବାଦରୁ ନିମ୍ନୋକ୍ତ ଅଂଶଟି ଏଠାରେ ଉଦ୍ଧାର କରାଗଲା—

"He (Muhammad-i-Boktyar) then planned the conquest of Bengal and secretly prepared an army and suddenly made a raid on Nadia, the capital of Bengal. In his impetousity, he reached the city with only 18 horsemen with him and entering it in an offensive manner, looking as if he was dealer in horses, reached the palace and at once drawing swords. The palace was in consternation and none opposed him. The aged king Laksmana Sena heard the uproar, as he was about to sit to dinner and knowing the reality fled by the back door. He escaped and went to the Jagannath. The palace and city were taken possession of by the army which soon arrived. It is needless to say that there was no resistance and the city was plundered and even destroyed."

ଅର୍ଥାତ୍, ମହମ୍ମଦ ବକ୍ତିୟାର ଗୁପ୍ତବେଶରେ ଅଶ୍ୱବିକ୍ରେତା ରୂପେ ୧୮ ଜଣ ଅଶ୍ୱାରୋହୀଙ୍କ ସାଥିରେ ବଙ୍ଗର ରାଜଧାନୀ ନଗରୀରେ ପ୍ରବେଶ କଲେ । ଅଶ୍ୱବ୍ୟବସାୟୀ ଭାବି ତାଙ୍କୁ କେହି ବାରଣ କଲେ ନାହିଁ । ସେମାନେ ସିଧା ରାଜପ୍ରାସାଦରେ ପହଞ୍ଚି ହଠାତ୍ ତରବାରିମାନ ଖୋଲି ଦ୍ୱାରପାଳମାନଙ୍କୁ ନିହତ କରି ପ୍ରାସାଦ ଭିତରେ ପ୍ରବେଶ କଲେ । ରାଜ କର୍ମଚାରୀମାନଙ୍କ ମଧ୍ୟରେ ପ୍ରବଳ କୋଳାହଳ ସୃଷ୍ଟି ହେଲା । ଠିକ୍ ସେତିକିବେଳେ ବୃଦ୍ଧ ରାଜା ଲକ୍ଷ୍ମଣସେନ ଭୋଜନ କରିବାକୁ ଉଦ୍ୟମ କରୁଥାନ୍ତି । ସେହି କୋଳାହଳର କାରଣ ବୁଝିପାରି ନିଜର ପ୍ରାଣରକ୍ଷା ସକାଶେ ପଛଦ୍ୱାରବାଟେ ସେ ଲୁଚି ପଳାୟନ କଲେ ଏବଂ ଜଗନ୍ନାଥ ଧାମରେ ଆଶ୍ରୟ ନେଲେ ।

ସମ୍ଭବତଃ ତାଙ୍କ ପୁତ୍ର ବିଶ୍ୱରୂପ ସେନ ପୂର୍ବବଙ୍ଗ ବା ଗୌଡ଼କୁ ପଳାୟନ କରି ଆତ୍ମରକ୍ଷା କରିଥିଲେ । ଇତରଂ "Riaz-us-Salatin" ନାମକ ଅନ୍ୟ ଏକ ପେର୍ଶିୟାନ୍

ଗ୍ରନ୍ଥରେ ଲେଖାଅଛି ଯେ, ନଦିଆ ଆକ୍ରମଣ ପରେ ଲକ୍ଷ୍ମଣସେନ କାମରୂପ (ଆସାମ)କୁ ପଳାଇ ଯାଇଥିଲେ । କିନ୍ତୁ ଧୀରେନ୍ଦ୍ରନାଥ ମୁଖାର୍ଜିଙ୍କ ମତରେ, ଏପରି ଗୋଟିଏ ମିଥ୍ୟା ସମ୍ବାଦ କେହିକେ ମୁସଲ୍‌ମାନଙ୍କୁ ଯୋଗାଇ ଲକ୍ଷ୍ମଣସେନଙ୍କ ପ୍ରକୃତ ଆଶ୍ରୟ ସ୍ଥଳ ଲୁଚାଇ ଦେଇଥିଲେ । ଶ୍ରୀ ମୁଖାର୍ଜିଙ୍କ ମତରେ ଲକ୍ଷ୍ମଣସେନ ବାସ୍ତବରେ ସେତେବେଳେ ଧର୍ମକ୍ଷେତ୍ର ଶ୍ରୀ ଜଗନ୍ନାଥ ଧାମରେ ଆତ୍ମଗୋପନ କରିଥିଲେ । (୧)

ଆମ୍ଭେ ମଧ୍ୟ ଶ୍ରୀ ମୁଖାର୍ଜିଙ୍କ ମତକୁ ସମର୍ଥନ କରୁଛୁ । କାରଣ ଅଶୀତ ବର୍ଷରୁ ଊର୍ଦ୍ଧ୍ୱ ରାଜା ଏପରି ଏକ ପ୍ରାଣ ସଙ୍କଟ ବେଳେ ନିଶ୍ଚିତ ଭାବେ ତାଙ୍କର ମିତ୍ରରାଜ୍ୟ ତଥା ପୁଣ୍ୟକ୍ଷେତ୍ର ଶ୍ରୀ ଜଗନ୍ନାଥ ଧାମରେ ରହିବା ଶ୍ରେୟସ୍କର ବୋଲି ଉତ୍କଳକୁ ଯାତ୍ରା କରିଥିବେ । ତାଙ୍କ ସାଥିରେ କେତେକ ବ୍ରାହ୍ମଣ ପଣ୍ଡିତ ମଧ୍ୟ ସେମାନଙ୍କ ମୂଲ୍ୟବାନ ଗ୍ରନ୍ଥଗୁଡ଼ିକ ସଙ୍ଗରେ ନେଇ ଉତ୍କଳରେ ଆଶ୍ରୟ ନେଇଥିବା ସମ୍ଭବ । ତେଣୁ ଏଘଟଣାର ପ୍ରାୟ ୨୫ ବର୍ଷ ପରେ ଗଙ୍ଗାବଂଶୀୟ ମହାରାଜା ଅନଙ୍ଗ ଭୀମଦେବ (୩ୟ) (୧୨୧୧-୧୨୩୯ ଖ୍ରୀଷ୍ଟାବ୍ଦ) ସେତେବେଳେ ପୁରୀର ଶ୍ରୀମନ୍ଦିର ପ୍ରତିଷ୍ଠା କରି ଉତ୍କଳ ରାଜଧାନୀ ଅଭିନବ-ବାରଣାସୀ-କଟକ ଠାରେ ଶ୍ରୀ ପୁରୁଷୋତ୍ତମଙ୍କର ଉପାସନା ପାଇଁ ଯେଉଁ ମନ୍ଦିର ଗଠିତ ହୋଇଥିଲା, ସେଠାର ଠାକୁର ( ଶ୍ରୀପୁରୁଷୋତ୍ତମ)ଙ୍କ ପ୍ରୀତିବର୍ଦ୍ଧନ ନିମନ୍ତେ ମକର ମାସ ଅମାବାସ୍ୟା ତିଥି ରବିବାର ଦିନ ଭାରଦ୍ୱାଜ ଗୋତ୍ରୀୟ ବ୍ରାହ୍ମଣ ଦେବଧର ଶର୍ମାଙ୍କୁ ଗ୍ରାମବାଟି ଭୂମି କୁଚଣ୍ଡା ବିଷୟରେ ଥିବା ବଳାସପୁର ଗ୍ରାମରେ "ଦାନ ସାଗର" ସ୍ମୃତି ଗ୍ରନ୍ଥର ପଦ୍ଧତି ଅନୁସାରେ ଦାନ କରିଥିଲେ । ଏହା ୧୨୩୦ ଖ୍ରୀଷ୍ଟାବ୍ଦ ମେ ମାସ (ମଇ) ୧୪ ତାରିଖରେ ସମ୍ପନ୍ନ ହୋଇଥିଲା । (୨)

ଆଗରୁ କୁହାଯାଇଛି ଯେ, ଲକ୍ଷ୍ମଣସେନଙ୍କ ପିତା 'ବଲ୍ଲାଳସେନ'ଙ୍କ ନାମରେ 'ଦାନ ସାଗର' ନାମକ ସ୍ମୃତି ଗ୍ରନ୍ଥ ସଙ୍କଳିତ ହୋଇଥିଲା । ତାହା ୧୨୩୦ ଖ୍ରୀଷ୍ଟାବ୍ଦ ପୂର୍ବରୁ, ରାଢ଼ ଓ ବରେନ୍ଦ୍ରରୁ ସମାଗତ ବ୍ରାହ୍ମଣମାନେ, ଉତ୍କଳରେ ପ୍ରଚଳିତ ହେବା ମୂଳରେ ପ୍ରଧାନ କାରଣ କହିଲେ ଅତ୍ୟୁକ୍ତି ହେବ ନାହିଁ । ତେଣୁ ସେହି ନବାଗତ ବଙ୍ଗୀୟ

(୧) I. H. R , Vol. X, P 734 f.

(୨) ଅଭିନବ ବାରାଣସ୍ୟାଂ ଭଗବତଃ ଶ୍ରୀ ପୁରୁଷୋତ୍ତମଦେବସ୍ୟ ସନ୍ନିଧୌ ମକରମାସ-ବାଣ୍ୟାସ୍ତାଂ ରବିବାରେ କୁର୍ଦ୍ଧି (ଚ)ଣ୍ଡା ବିଷୟେ ବଳାସପୁର ଗ୍ରାମେ ଦାନ ସାଗରେ ବିଷ୍ଣୁଧର୍ମୋକ୍ତଂ ଯଦ ଗୋଧୂମେଷୁ ସନ୍ତତାମସ୍ତମ୍ୟନାତିରିକ୍ତାଂ (ତରୁ) ବାଟି ପରିମିତଂ ଭୂମି ଭାରଦ୍ୱାଜ ଗୌତ୍ରାୟ ଦେବଧର ଶର୍ମଣୋ ବ୍ରାହ୍ମଣାୟ ଯଜୁଃ ସାମନ୍ତର୍ଗତ କାଣ୍ୱକୌଥୁମ ଶାଖେନ ଦେଶାଧ୍ୟାୟିନେ ଭଗବତଃ ଶ୍ରୀ ପୁରୁଷୋତ୍ତମସ୍ୟ ପ୍ରୀତୟେ ପ୍ରାଦଦାତ I. O.Vol. V. Pt I. P 92-93

ବ୍ରାହ୍ମଣମାନଙ୍କୁ ଉତ୍କଳରେ ଭୂମିଦାନ ଦେଇ ଅଣାଇ ଥାଆନ୍ତି କରିବା ଉଦ୍ଦେଶ୍ୟରେ ଉତ୍କଳର ଗଙ୍ଗବଂଶୀୟ ରାଜାମାନେ ପ୍ରଚୁର ପରିମାଣରେ ଭୂଦାନ କରିଥିବା ସେମାନଙ୍କ ଅଭିଲେଖ-ଗୁଡ଼ିକରୁ ପ୍ରକଟିତ ହୁଏ ।

ରାଜା ଲକ୍ଷ୍ମଣସେନ ଜଗନ୍ନାଥ କ୍ଷେତ୍ର (ଓଡ଼ିଶାରେ) ଆଶ୍ରୟ ନେଇଥିବା ବଖ୍ତିଆର ଖିଲ୍‌ଜି ନିଶ୍ଚୟ ଅନୁସନ୍ଧାନ କରି ଜାଣିପାରିଥିବେ । ତେଣୁ ଯାଜନଗର (ଉତ୍କଳ) ଆକ୍ରମଣ କରିବା ଆଶାରେ ହିଜିରି ୬୦୧ (ଖ୍ରୀଷ୍ଟାବ୍ଦରେ ୧୨୦୫) ରେ ସେ ତାଙ୍କ ଅନୁଗତ ମହମ୍ମଦ ଇ-ଶେରାନ୍ (Muhamad-i-Seran) ଓ ତାଙ୍କ ଭ୍ରାତା ଅହମଦ୍-ଇ-ଶେରାନ୍ (Ahmad-i-Seran)ଙ୍କୁ ପଠାଇଲେ । କିନ୍ତୁ ତାଙ୍କର ଉଦ୍ୟମ ସଫଳ ହେଲନାହିଁ ।

ଆଗରୁ କୁହାଯାଇଛି ଯେ, ସେତେବେଳେ ଉତ୍କଳର ସିଂହାସନରେ ଆସୀନଥିଲେ ଚୋଡ଼ଗଙ୍ଗଙ୍କ ପୌତ୍ର, ରାଜରାଜଦେବ । ସେ ଅତ୍ୟନ୍ତ ବିଚକ୍ଷଣ ବୀର ଥିବାରୁ ବଙ୍ଗଦେଶରୁ ସମାଗତ ବହୁ ବୈଦିକ ବ୍ରାହ୍ମଣଙ୍କୁ ୧୧୯୧ ଖ୍ରୀଷ୍ଟାବ୍ଦରେ ସେ ସୂର୍ଯ୍ୟୋପରାଗ ପୁଣ୍ୟ ଦିନ ଶ୍ରୀକ୍ଷେତ୍ରର ସିନ୍ଧୁ କୂଳରେ ସ୍ୱୀୟ ମାତା ବାଘଲ୍ଲଦେବୀଙ୍କ ପୁଣ୍ୟାଭିବୃଦ୍ଧି ନିମନ୍ତେ ବହୁ ସଂଖ୍ୟାରେ ସମାଗତ ବୈଦିକ ବ୍ରାହ୍ମଣମାନଙ୍କୁ ଦାନ ଦେଇଥିଲେ । ଏହା ତାଙ୍କର ଦାସଗୋବା ତାମ୍ରଶାସନରେ ଖୋଦିତ ହୋଇଅଛି (E. I., Vol XXXI, PP 249-262 ff) ଏଣୁ ଯେଉଁ ଅଞ୍ଚଳ ମୁସଲମାନଙ୍କ ଅଧିକାରଭୁକ୍ତ ହୋଇଛି କିମ୍ବା ହେବା ଆଶଙ୍କା ରହିଛି, ସେହି ସେହି ଅଞ୍ଚଳରୁ ଅଧିକାଂଶ ବ୍ରାହ୍ମଣ ଉଠି ଆସି ଉତ୍କଳରେ ଆଶ୍ରୟ ନେଇଥିଲେ । କାରଣ ଗଙ୍ଗାବଂଶୀୟ ହିନ୍ଦୁ ରାଜାମାନଙ୍କ ଅଧୀନରେ ଉତ୍କଳ ଏକ ନିରାପଦ ଦେଶ ରୂପେ ଖ୍ୟାତି ବିସ୍ତାର କରିଥିଲା ।

ଉତ୍କଳ ଅଧିକାର କରିବା ଆଶାରେ ଉଦ୍ୟମ କରି ମୁସଲମାନ ବାରମ୍ବାର ବିଫଳ ହୋଇଥିଲେ । ତଥାପି ଘିଆସୁଦ୍ଦିନ ଇଓ୍ୱାଜ (Ghiyas-ud-din-Iwaz)ଙ୍କ ନିର୍ଦ୍ଦେଶକ୍ରମେ ୬୦୧ ହିଜିରି ସାଲ (୧୨୦୫ ରେ ପୁନର୍ବାର ଯାଜନଗର ଅଧିକାର କରିବାକୁ ଯାଇ ମୁସଲମାନ ସୈନ୍ୟ ଘୋର ପରାଜୟର ସମ୍ମୁଖୀନ ହେଲେ । ସେ କଥା ମୁସଲମାନ ଇତିହାସରେ ବର୍ଣ୍ଣିତ ହୋଇ ନଥିଲେ ହେଁ ଓଡ଼ିଶାର ବିଷ୍ଣୁ ନାମକ ଜଣେ ସେନାପତିଙ୍କ ବାହୁ ବଳରେ କେବଳ ମୁସଲମାନ ନୁହଁନ୍ତି ମଧ୍ୟପ୍ରଦେଶର ତୁମ୍ମାଣର ଚେଦୀବଂଶୀୟ ଶମ୍ଭୁ ରାଜା ମଧ୍ୟ ଘୋର ପରାଜୟ ବରଣ କରିଥିଲେ । ଯୁଦ୍ଧରେ ତୁମ୍ମାଣ ରାଜାଙ୍କୁ ଜୟ ଲାଭ କରି ଫେରିଲା ପରେ ସେ 'ଯବନାବନୀନ୍ଦ୍ର' ଅର୍ଥାତ୍ ଘିଆସୁଦ୍ଦିନଙ୍କୁ ମଧ୍ୟ ପରାଜିତ କରି ଉତ୍କଳରେ ଗୃଦ୍ଧେଶ୍ୱରଙ୍କ ମନ୍ଦିର ନିର୍ମାଣ କରାଇଥିଲେ । ସେହି ମନ୍ଦିରରେ ସଂଲଗ୍ନ ଏକ ଶିଳାଲିପିରେ ଲେଖା ଅଛି—

"କର୍ଣ୍ଣୋତ୍ତଂସିତ ସା(ଶା)ୟକସ୍ୟ ସୁଭଟା
ହେନାପିନୋ ନିଘ୍ନତଃ ।
କିଂ ବ୍ରୂମୋଯବନା ବନୀନ୍ଦ୍ର-ସମରେ
ତତ୍ପସ୍ୟ ବୀରବ୍ରତମ୍ ॥" ❊

ଡ଼ା. ବି. ସି. ଏଚ୍. ଛାବ୍ରା ଏଥିର ଇଂରାଜି ଅନୁବାଦ ନିମ୍ନ ପ୍ରକାରେ କରିଅଛନ୍ତି—

"How are we describe that heroism of his (Visnu's) during his fight with the Muslim king, while all alone his arrows apearing as his ear-pendants, he shot dead (many) expert soldiers".

ମହାରାଜା ରାଜ ରାଜଦେବଙ୍କ ରାଜତ୍ୱର ଶେଷ ପର୍ଯ୍ୟାୟରେ ସମ୍ପନ୍ନ ହୋଇଥିଲା । ରାଜରାଜଙ୍କ ପୁତ୍ର ଅନଙ୍ଗ ଭୀମ ମଧ୍ୟ ତାଙ୍କ ରାଜତ୍ୱ କାଳରେ (୧୨୧୧-୧୨୩୯ ଖ୍ରୀଷ୍ଟାବ୍ଦ) ପିତାଙ୍କ ଅପେକ୍ଷା ଅଧିକ ବିକ୍ରମରେ ଉତ୍କଳର ସ୍ୱାଧୀନତା ରକ୍ଷା କରି ବଙ୍ଗ ଏବଂ ଅନ୍ୟାନ୍ୟ ଉପଦ୍ରୁତ ଅଞ୍ଚଳରୁ ଉଠିଆସି ଥିବା ବହୁ ସଂଖ୍ୟକ ବ୍ରାହ୍ମଣଙ୍କୁ ଶାସନ ଦାନ କରି ସେମାନଙ୍କୁ ଉତ୍କଳରେ ଅଣାଇଥିଲେ । ପୁରୀ ଜିଲ୍ଲା ଚନ୍ଦନପୁର ନିକଟସ୍ଥ କଟେପାତେଶ୍ୱର ଗ୍ରାମରୁ ମିଳିଥିବା ଗୋଟିଏ ତାମ୍ରଶାସନରୁ ଜଣାଯାଇଛି ଯେ, ମହାରାଜା ଅନଙ୍ଗଭୀମ (ତୃତୀୟ) କୋଟରବିଙ୍ଗ ବିଷୟରେ ଥିବା ସମୁଦାୟ ପଞ୍ଚବାଟକ ଗ୍ରାମ ସହିତ ରାଲଚ୍ଛନ୍ଦ-ବିଷୟରେ ଥିବା ଅଧିକ ୬୦ ବାଟି ଭୂମି ଏବଂ ବାରଙ୍ଗ ବିଷୟ ମଧ୍ୟଖଣ୍ଡରେ ଥିବା ଖମ୍ୱାର ଗ୍ରାମ ବହୁ ଜ୍ୟୋତିଷ ଶାସ୍ତ୍ରରେ ପଣ୍ଡିତ ଓ ବାଜପେୟ-ଯଜ୍ଞ କରିଥିବା ପଣ୍ଡିତମାନଙ୍କୁ ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ସୋମ ଗ୍ରହଣ ସମୟରେ ଦାନ କରିଥିଲେ । (୧)

ତାଙ୍କର ନଗରୀ ତାମ୍ରଶାସନରେ (୨) ମଧ୍ୟ ସେ ବହୁ ବ୍ରାହ୍ମଣଙ୍କୁ ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ସୂର୍ଯ୍ୟୋପରାଗରେ ଗ୍ରାମଦାନ କରିଥିବା ଜଣାଯାଇଛି । ଦାନ ଗ୍ରହୀତା ବ୍ରାହ୍ମଣ-ମାନେ ନିଶ୍ଚିତ ଭାବେ ପାର୍ଶ୍ୱବର୍ତ୍ତୀ ଅଞ୍ଚଳମାନଙ୍କରୁ ଉଠିଆସି ଉତ୍କଳରେ ବାସ କରିବା

❊ E. I., Vol XXIX, PP 121-133 ff.

(୧) O. H. R. J., (1966); I. O., Vol. V Pt. PP 46-50

(୨) E. I., Vol XXVIII, PP 235-258 ff.

ଏଥିରୁ ପ୍ରମାଣିତ ହୁଏ । ସୁତରାଂ ବିହାର ସମେତ ବଙ୍ଗରେ ବିଧର୍ମୀ ଯବନମାନଙ୍କ ଅତ୍ୟାଚାର ତ୍ରୟୋଦଶ ଶତାବ୍ଦୀରେ ହିନ୍ଦୁମାନଙ୍କ ଉପରେ ପ୍ରବଳ ହୋଇଥିବାରୁ ସେମାନେ ମାତୃଭୂମିରୁ ଉଠିଆସିଥିବା ସମ୍ଭବ ।

ଅନଙ୍ଗଭୀମ ଦେବ କେବଳ ବୀର ନ ଥିଲେ, ସେ ଜଣେ ପ୍ରସିଦ୍ଧ ଧର୍ମପ୍ରାଣ ଓ ଦାନଶୀଳ ରାଜାରୂପେ ପରିଚିତ ଥିଲେ । ତାଙ୍କ ଉଦ୍ୟମରେ ଶ୍ରୀକ୍ଷେତ୍ରରେ ବଡଦେଉଳ ପ୍ରତିଷ୍ଠା ସମ୍ପୂର୍ଣ୍ଣ ହୋଇ ତହିଁ ଠାକୁର ସେଥିରେ ବିଜେ ହୋଇଥିଲେ । ଏହା ଫଳରେ ଶ୍ରୀକ୍ଷେତ୍ରର ପ୍ରସିଦ୍ଧି ଅଧିକ ପ୍ରସାରିତ ହେଲା ।

ବଙ୍ଗ ଦେଶ ମୁସଲମାନ ସୁଲତାନଙ୍କର ଅଧିକାରଭୁକ୍ତ ହେବା ଫଳରେ ସେଠାରେ ହିନ୍ଦୁମାନଙ୍କ ପ୍ରତି ଅତ୍ୟାଚାର ଅଧିକରୁ ଅଧିକ ହେବା ଦେଖାଗଲା । ବହୁ ସଂଖ୍ୟାରେ ହିନ୍ଦୁମାନଙ୍କୁ ଧର୍ମାନ୍ତର ଗ୍ରହଣ କରିବାକୁ ବାଧ୍ୟ କରାଗଲା । ଅନଙ୍ଗ ଭୀମଙ୍କ ପରେ ତାଙ୍କ ପୁତ୍ର ନରସିଂହ ଦେବ (୧ମ) (୧୨୩୯-୧୨୬୫) ଖ୍ରୀ ଉତ୍କଳ ସିଂହାସନାରୂଢ଼ ହୋଇଥିବା ସ୍ୱାଭାବିକ । ତେଣୁ ସେ ରାଢ଼ ଓ ବରେନ୍ଦ୍ରର ହିନ୍ଦୁମାନଙ୍କୁ ଯବନ ଅତ୍ୟାଚାରୀଙ୍କ କବଳରୁ ଉଦ୍ଧାର କରିବା ପାଇଁ ବିପୁଳ ସୈନ୍ୟ ସଜ୍ଜିତ କରି ତାଙ୍କ ଭଣେଇ (ଅନଙ୍ଗ ଭୀମଙ୍କ ଜାମାତା) ପରମର୍ଦ୍ଦି ଦେବଙ୍କ ସଙ୍ଗେ ମିଶି ବଙ୍ଗ ବିରୁଦ୍ଧରେ ଅଭିଯାନ କଲେ ।ନଦିଆରେ ସେନ ରାଜବଂଶର ପତନ ପରେ ସେଠାରେ ପୂର୍ବରୁ ବାସ କରିଥିବା ହିନ୍ଦୁମାନଙ୍କୁ ସୁରକ୍ଷିତ କରିବା ଥିଲା ତାଙ୍କ ବଙ୍ଗ ଅଭିଯାନର ଲକ୍ଷ୍ୟ । ସେହି ଯୁଦ୍ଧରେ ବହୁ ମୁସଲମାନ ସୈନ୍ୟ ନିହତ ହୋଇଥିଲେ । ଏହି ବର୍ଣ୍ଣନା କରିବାକୁ ଯାଇ ନରସିଂହ ଦେବଙ୍କ ପ୍ରଶସ୍ତିରେ ନିମ୍ନୋକ୍ତ ଶ୍ଳୋକଟି ସୁନ୍ଦର ଆଲଙ୍କାରିକ ଭାଷାରେ ଲେଖା ହୋଇଥିବା ତାଙ୍କ ତାମ୍ରଶାସନମାନଙ୍କରୁ ଉପଲବ୍ଧ ହୋଇଛି—

"ରାଢ଼ାବରେନ୍ଦ୍ର-ଯବନୀ-ନୟନାଞ୍ଜନାଶ୍ରୁ-
ପୂରେଣ ଦୂର ବିନବେଶିତ ଶ୍ୟାମଳଶ୍ରୀଃ ।
ତଦ୍ ବିପ୍ରଲମ୍ଭ କରୁଣାଦଭୁତ ନିସ୍ତରଙ୍ଗା
ଗଙ୍ଗାପି ନୂନମ ସୁନା ଯମୁନା ଧୁନାଭୁତ୍ ॥"

ଅର୍ଥାତ୍ ରାଢ଼ ଓ ବରେନ୍ଦ୍ରର ଯବନ ସେନାଙ୍କୁ ଏତେ ସଂଖ୍ୟାରେ ଯୁଦ୍ଧରେ ମହାରାଜା ନରସିଂହଦେବ ନିହତ କରିଥିଲେ ଯେ, ତାଙ୍କର ବିଧବା ପତ୍ନୀମାନଙ୍କ କଜ୍ଜଳ-ରେଖାଙ୍କିତ ଲୋତକପୂର୍ଣ୍ଣ ଚକ୍ଷୁଗୁଡ଼ିକ ଏତେ ପରିମାଣରେ ଗଙ୍ଗା ନଦୀରେ ଧୌତ ହୋଇଥିଲା ଯେ, ବହୁଦୂର ପର୍ଯ୍ୟନ୍ତ ଗଙ୍ଗାନଦୀ ତାଙ୍କୁ ସହାନୁଭୂତ ହେତୁ ତରଙ୍ଗହୀନା ହୋଇ କାଳିମା ଦେଖାଯିବାରୁ (କବି କହନ୍ତି ଯେ) ଧବଳାଙ୍ଗୀ ଗଙ୍ଗା କୃଷ୍ଣାଙ୍ଗୀ ଯମୁନାରେ ପରିଣତ ହୋଇଗଲା କି ?

ସେହି ଯୁଦ୍ଧରେ ମହାରାଜା ଅନଙ୍ଗଭୀମଙ୍କ ଜାମାତା ଓ ନରସିଂହଦେବ (୧ମ)ଙ୍କ ଭଉଣୋଇ ହୈହୟ ବଂଶୀୟ ବୀର ପରମର୍ଦ୍ଦିଦେବ ସ୍ୱୀୟ ବିକ୍ରମ ପ୍ରକାଶ କରି ବଙ୍ଗରେ ମୁସଲମାନଙ୍କ ରାଜଧାନୀ ଲକ୍ଷ୍ମଣବତୀ ଦୁର୍ଗ ପର୍ଯ୍ୟନ୍ତ ଅଗ୍ରସର ହୋଇଥିବା ପ୍ରସଙ୍ଗ ମୁସଲମାନ ଇତିହାସରେ ମଧ୍ୟ ସ୍ଥାନ ପାଇଛି । କାରଣ ସେହି ସମ୍ବନ୍ଧିତ ଘଟଣାକୁ ପ୍ରଚ୍ଛନ୍ନ କରିବା ସମ୍ଭବ ନ ହେବାରୁ ଇତିହାସ ଲେଖକ ମିନ୍‌ହାଜ୍ (Minhaj) ତାଙ୍କ Tabaqat-i-Nasir ଗ୍ରନ୍ଥରେ ସେ ଘଟଣାକୁ ସଂକ୍ଷେପରେ ଲେଖିଥିଲେ—

"The leader of the forces of Jajnagar was a person, by name, Sabantar (Samant-a-Rai) the son-in-law of the Rai (Anangabhima), who during the time of Malik-Izz-ud-din Tughril-i-Tughan Khan, had advanced to the bank of the river of Lakhanawati and, having shown the greatest audacity, had driven the Musalman forces as far as the gate of the city of Lakhanawati." (୧)

ଅର୍ଥାତ୍ 'ଉତ୍କଳ (ଯାଯନଗର)ର ସେନାଧ୍ୟକ୍ଷଙ୍କ ନାମ (ଉପାଧି) ହେଉଛି 'ସାମନ୍ତ ରାୟ' । ସେ ହେଉଛନ୍ତି ରାଜାଙ୍କ (ରାଜା ଅନଙ୍ଗଭୀମ) ଜାମାତା । ସେ ମ ତୁଘ୍ରିଲ୍-ଇ-ତୁଘାନ୍ ଖାଁଙ୍କ ଶାସନ କାଳରେ ଲକ୍ଷ୍ମଣାବତୀ ନିକଟସ୍ଥ ନଦୀ ପର୍ଯ୍ୟନ୍ତ ଅଗ୍ରସର ହୋଇ ଅତ୍ୟନ୍ତଭାବେ ବିକ୍ରମ ପ୍ରକାଶ କରି ମୁସଲମାନ ସୈନ୍ୟମାନଙ୍କୁ ଲକ୍ଷ୍ମଣାବତୀ-ଦୁର୍ଗ ପର୍ଯ୍ୟନ୍ତ ତଡ଼ି ନେଇଥିଲେ ।

ମହାରାଜା ନରସିଂହଦେବ (୧ମ) ପ୍ରାୟ ତ୍ରୟୋଦଶ ଶତାବ୍ଦୀ ମଧ୍ୟଭାଗରେ ବଙ୍ଗ ବିଜୟ ସମ୍ପନ୍ନ କରି ସେଠାରୁ ମୁସଲମାନମାନେ ଲୁଣ୍ଠନ କରିଥିବା ବହୁ ଧନରତ୍ନ ଆଣି ସେଥିରେ ବୋଧହୁଏ ଅତି ମନୋହର ଶିଳ୍ପକଳା ମଣ୍ଡିତ ସୂର୍ଯ୍ୟଦେବଙ୍କ ମନ୍ଦିର ଚନ୍ଦ୍ରଭାଗା ନଦୀ ମୁହାଣ କୋଣାର୍କଠାରେ କରାଇଥିଲେ ।

ବଙ୍ଗର ରାଢ଼ ଓ ବରେନ୍ଦ୍ର ଅଞ୍ଚଳରୁ ଯବନ ସୈନ୍ୟଙ୍କୁ ଉଚ୍ଛେଦ କରିଥିଲେ ହିଁ ସେହି ପ୍ରଦେଶରେ ଉତ୍କଳର ରାଜା କମ୍ବା ତାଙ୍କର ମିତ୍ରରାଜା ଲକ୍ଷ୍ମଣସେନଙ୍କ ବଂଶଧରମାନେ ଶାସନ ବିସ୍ତାର କରିପାରିଲେ ନାହିଁ । କାରଣ ବଙ୍ଗର ତାତ୍କାଳୀନ ତୁଲ୍‌ଖାନଙ୍କ ପକ୍ଷରୁ ଉତ୍କଳ ବିରୁଦ୍ଧରେ ପ୍ରବଳ ଅଭିଯାନ ଚଳାଇ ପୂର୍ବ ପରାଜୟର ପ୍ରତିଶୋଧ ନେବା ଉଦ୍ୟମ ଜାରିତ ହୋଇଥିଲା ।

---

(୧) Tabaqat-i-Nasir, PP 762-763 ff.

ବୋଧହୁଏ ନରସିଂହଦେବ (୧ମ)ଙ୍କ ପୁତ୍ର ଭାନୁଦେବ (୧ମ) (ଖ୍ରୀ ୧୨୬୪-୧୨୭୯)ଙ୍କ ରାଜତ୍ୱ କାଳରେ ତଥା ତାଙ୍କ ପୁତ୍ର ନରସିଂହଦେବ (୨ୟ)ଙ୍କ (୧୨୭୯-୧୩୦୯ ଖ୍ରୀଷ୍ଟାବ୍ଦ) ରାଜତ୍ୱ କାଳରେ ଉତ୍କଳ ଉପରେ ମୁସଲମାନଙ୍କ ପକ୍ଷରୁ ବାରମ୍ବାର ଆକ୍ରମଣ ହୋଇଥିଲେ ସୁଦ୍ଧା ପୂର୍ବ ସୀମାନ୍ତ ନିରାପଦ ରହିଥିଲା । ସେହି ସୀମାକୁ ଦୃଢ଼ କରିବା ସକାଶେ ମହାରାଜା ନରସିଂହ ଦେବ (୨ୟ) ନିଜେ ବାଲେଶ୍ୱର ଜିଲ୍ଲାର ରେମୁଣା-କଟକରେ ଅବସ୍ଥାନ କରି ସେଠାରେ ବ୍ରାହ୍ମଣମାନଙ୍କୁ ଗ୍ରାମଦାନ କରିଥିଲେ, ଏ ବିଷୟ ତାଙ୍କର କେତେକ ତାମ୍ରଶାସନରୁ ଜଣାଯାଇଛି । † ସେତେବେଳେ ବତ୍ସସ ଗୋତ୍ରୀୟ, ଯଜୁର୍ବେଦ, କାଣ୍ୱଶାଖାଧ୍ୟାୟୀ ବ୍ରାହ୍ମଣ ହଳାୟୁଧ ନାମକ ଜଣେ ବ୍ରାହ୍ମଣ ରେମୁଣା କଟକର ପୁରପରୀକ୍ଷା ଓ କୋଷାଧ୍ୟକ୍ଷ ରୂପେ ୧୨୯୪ ଖ୍ରୀଷ୍ଟାବ୍ଦରେ ନିଯୁକ୍ତ ହୋଇଥିବା ଜଣାଯାଏ । ସୁତରାଂ ବଙ୍ଗର ମୁସଲମାନଙ୍କ ଆକ୍ରମଣରୁ ଉତ୍କଳର ପୂର୍ବଭାଗ ସୀମାନ୍ତ ଅଞ୍ଚଳରେ ନିଜେ ରହି ଉତ୍କଳର ସାମରିକ ଶକ୍ତି ସୁଦୃଢ଼ କରିବା ପାଇଁ ରେମୁଣା-କଟକ ସ୍ଥିତ ରାଜପ୍ରାସାଦରେ ଅନ୍ତତଃ ଖ୍ରୀ ୧୨୯୨-୧୨୯୬ (ଚାରିବର୍ଷ) ନରସିଂହଦେବ (୨ୟ) ରହିଥିବା ସ୍ପଷ୍ଟ ଜଣାଯାଇଛି ।

ନରସିଂହଦେବ (୨ୟ)ଙ୍କ ପରେ ଯେତେବେଳେ ତାଙ୍କ ପୁତ୍ର ଭାନୁଦେବ (୨ୟ)ଙ୍କ (ଖ୍ରୀ. ୧୩୦୯-୧୩୨୮) ରାଜତ୍ୱ ଆରମ୍ଭ ହେଲା, ସେତିକବେଳେ ବଙ୍ଗର ସୁଲତାନ୍ ଘିଆସୁଦ୍ଦିନ୍ (Ghiyas-ud-din) ଉତ୍କଳ ଆକ୍ରମଣ କରିବାକୁ ସୈନ୍ୟ ସଜ୍ଜିତ କଲେ । ସେତେବେଳେ ବୋଧହୁଏ ରେମୁଣା କଟକ ପାରି ହୋଇ ମୁସଲମାନ ସୈନ୍ୟ ଉତ୍କଳରେ ପ୍ରବିଷ୍ଟ ହୋଇଥିଲେ । ବୋଧହୁଏ ବୈତରଣୀ କିମ୍ବା ପ୍ରାଚୀ ତଟରେ ଉଭୟ ପକ୍ଷର ଭୀଷଣ ଯୁଦ୍ଧ ଆରମ୍ଭ ହେଲା । ସେଥିରେ ଭାନୁଦେବ (୨ୟ) ବିଜୟଶ୍ରୀ ମଣ୍ଡିତ ହୋଇଥିବା ପ୍ରସଙ୍ଗ ତାଙ୍କର ପ୍ରଶସ୍ତି ଲେଖକ ନିମ୍ନୋକ୍ତ ଶ୍ଲୋକରେ ପ୍ରକାଶ କରିଛନ୍ତି—

> ରାଜ୍ଞଃ ଯସ୍ୟ ଗୟାସଦୀନ ସମରେ ପ୍ରାରବ୍ଧ ଶୌର୍ଯ୍ୟ କ୍ଷତ
> ପ୍ରୋଦାନେକ ନରେନ୍ଦ୍ର-କନ୍ଧର ଗଳତ୍ କୀଲାଳ ପୂର୍ଣ୍ଣାବନୀ ।
> ତତ୍କାଳ କ୍ଷତ ବକ୍ଷସାଂ କରିକୁଳା ସ୍ମାଲୋଡ଼ଥ୍ତ ଶୋଣିତା
> ସାଦ୍ୟୋପି ଦିଗନ୍ତରେଷୁ ବିଲସତ୍ ସନ୍ଧ୍ୟାନୁରାଗ ଛଳାତ୍ ॥" (୧)

---

† ଅଲଲପୁର ତାମ୍ରଶାସନ ଖ୍ରୀ. ୧୨୯୪ (E I. Vol XXXI, PP 21-24)

† କେନ୍ଦୁପାଟଣା ତାମ୍ରଶାସନ ଖ୍ରୀ ୧୨୯୬ (J. A.S B. Vol LXV 1896, Pt. I, P 229)

† କେନ୍ଦୁପାଟଣା ତାମ୍ରଶାସନ ଖ୍ରୀ. ୧୨୯୫ (E. I. Vol XXVIII, PP 189-91)

(୧) O. H. J., Vol I P 278; Ibid., Vol V, No. I P 70 ff.

ଅର୍ଥାତ୍--ସେହି ଯୁଦ୍ଧରେ ସାମନ୍ତ ରାଜାମାନେ ଓ ଯୁଦ୍ଧ ହସ୍ତୀ ଏତେ ସଂଖ୍ୟାରେ ନିହତ ହୋଇଥିଲେ ଯେ ସେମାନଙ୍କ ରକ୍ତରେ ରଣଭୂମି ପ୍ଲାବିତ ହୋଇଥିଲା । ସେଥିର ନିଦର୍ଶନ ରୂପେ ଅଦ୍ୟାବଧି ସନ୍ଧ୍ୟାକାଳୀନ ମେଘ କୋଳରେ ଯେଉଁ ରକ୍ତିମା ଉଦ୍ଭାସିତ ହୁଏ ତାହା ଉପଲକ୍ଷିତ ହେଉଅଛି ।

ଏହି ଯୁଦ୍ଧ ପରେ ଅର୍ଥାତ୍ ୧୩୦୯ ଖ୍ରୀଷ୍ଟାବ୍ଦ ପରେ ବହୁକାଳ ପର୍ଯ୍ୟନ୍ତ ମୁସଲମାନଙ୍କ ପକ୍ଷରୁ ଉତ୍କଳରେ ସମ୍ପୂର୍ଣ୍ଣ ଯୁଦ୍ଧ ସମ୍ଭବ ହେଲାନାହିଁ । ଆଗରୁ କୁହାଯାଇଛି ଯେ, ରାଢ଼, ବରେନ୍ଦ୍ରରୁ ସେନ ରାଜବଂଶର ଉଚ୍ଛେଦ ପରେ ରାଜା ଲକ୍ଷ୍ମଣସେନ ଉତ୍କଳରେ ଆଶ୍ରୟ ନେଇ ନିରାପଦରେ କିଛୁକାଳ ଅବସ୍ଥାନ କରିଥିଲେ । ତେଣୁ ବଙ୍ଗର ମୁସଲମାନ ସୁଲ୍‌ତାନ୍ ବାରମ୍ବାର ଉତ୍କଳ ବିରୁଦ୍ଧରେ ଅଭିଯାନ ଚଳାଇଥିଲେ । କିନ୍ତୁ ସେମାନଙ୍କ ଉତ୍କଳ ଜୟ କରିବା ଆଶା ନିଷ୍ଫଳ ହୋଇଥିଲା । କିନ୍ତୁ ବଙ୍ଗରୁ ତାଙ୍କ ପ୍ରଭୁତ୍ୱ ଛିନ୍ନ ହୋଇନଥିଲା । ତେଣୁ ସେ ଅଞ୍ଚଳରେ ବହୁସଂଖ୍ୟକ ହିନ୍ଦୁ ମୁସଲମାନ ଧର୍ମରେ ଦୀକ୍ଷିତ ହେବାକୁ ବାଧ୍ୟ ହୋଇଥିଲେ ।



# ପଞ୍ଚମ ପରିଚ୍ଛେଦ

ଆଗରୁ କୁହାଯାଇଛି ଯେ 'ଗୀତ ଗୋବିନ୍ଦ'ର ଗୋଟିଏ ଶ୍ଲୋକରେ ଜୟଦେବଙ୍କ ସମେତ ଅନ୍ୟ ଚାରିଜଣ କବି, ଯଥା:—(୧) ଉମାପତି ଧର (୨) ଶରଣ (୩) ଗୋବର୍ଦ୍ଧନାଚାର୍ଯ୍ୟ (୪) ଧୋୟୀଙ୍କ ନାମ ଉଲ୍ଲେଖ କରାଯାଇଛି । ସେହି କବିମାନେ ଲକ୍ଷ୍ମଣସେନଙ୍କ ସଭା ପଣ୍ଡିତ ଥିବା ପ୍ରସଙ୍ଗ ଏକ ବଳିଷ୍ଠ ପ୍ରମାଣ ବୋଲି କେତେକ ଐତିହାସିକ ମତବ୍ୟକ୍ତ କରିଛନ୍ତି । ଲକ୍ଷ୍ମଣସେନ ନଦିଆରେ ଖ୍ରୀ ୧୧୭୯-୧୨୦୫ ମଧ୍ୟରେ ରାଜତ୍ୱ କରିଥିଲେ । ତେଣୁ ତାଙ୍କ ରାଜସଭାରେ ଉପରୋକ୍ତ କବିମାନେ ଏବଂ ଜୟଦେବ ସେହି ସମୟରେ ଅର୍ଥାତ୍ ୧୧୭୯-୧୨୦୫ ଖ୍ରୀଷ୍ଟାବ୍ଦରେ ଜୀବିତ ଥିବା ଆବଶ୍ୟକ । ନଚେତ 'ଗୀତଗୋବିନ୍ଦ'ର ସେହି ଶ୍ଲୋକଟି ପ୍ରକ୍ଷିପ୍ତ ବୋଲି ଜଣାଯିବ । ଏ ପରିପ୍ରେକ୍ଷୀରେ ବର୍ତ୍ତମାନ ସେହି ସେହି କବିମାନଙ୍କ କାଳନିର୍ଣ୍ଣୟ କରିବା ଆବଶ୍ୟକ ।

କବି ଉମାପତିଙ୍କ ସମ୍ପର୍କରେ ସଂଗିତ ଶ୍ଲୋକରେ ଲେଖାଅଛି । 'ବାଚଃ ପଲ୍ଲବୟତ୍ୟୁମାପତି ଧରଃ...ସନ୍ଦର୍ଭ ଶୁଦ୍ଧିଂ ଗିରାଂ" ଅର୍ଥାତ୍ ତାଙ୍କ ଭାଷା ଅତ୍ୟନ୍ତ କୋମଳ ଓ ସୁନ୍ଦର ଥିଲା । ତେଣୁ ସେ ଜୟଦେବଙ୍କ ଦ୍ୱାରା 'ଗୀତଗୋବିନ୍ଦ'ରେ ପ୍ରଶଂସିତ ହୋଇଅଛନ୍ତି । କଥିତ ଅଛି ଯେ, ଉମାପତି ୧ର ରାଢ଼ ଓ ବରେନ୍ଦ୍ରରେ ବିଜୟସେନଙ୍କ ରାଜତ୍ୱ କାଳରୁ ଆରମ୍ଭ କରି ତାଙ୍କ ପୁତ୍ର ବଲ୍ଲାଳ ସେନ ଓ ପୌତ୍ର ଲକ୍ଷ୍ମଣସେନଙ୍କ ରାଜତ୍ୱ କାଳ ପର୍ଯ୍ୟନ୍ତ 'ସନ୍ଧିବିଗ୍ରହକ' (ମନ୍ତ୍ରୀ) ପଦରେ ନିଯୁକ୍ତ ହୋଇଥିଲେ । ଉମାପତି ଧର ଦେଓପାରା ତାମ୍ରଶାସନ ପ୍ରଶସ୍ତିରେ ଲେଖିଥିଲେ ଯେ, ଉତ୍କଳର ମହାରାଜା ରାଘବଦେବଙ୍କ (୧୧୫୭-୧୧୭୦ ଖ୍ରୀ) ସଙ୍ଗେ ସେନବଂଶୀୟ ରାଜାଙ୍କର ଯୁଦ୍ଧ ହୋଇଥିଲା । ସେହି ତାମ୍ରଶାସନଟି ଖ୍ରୀ ୧୧୫୭-୫୮ ମଧ୍ୟରେ ଖୋଦିତ ହୋଇଥିବାରୁ ତାହା ରାଘବ ଦେବଙ୍କ ରାଜତ୍ୱ ଆରମ୍ଭରେ ବଲ୍ଲାଳ ସେନଙ୍କ ସମୟରେ ହୋଇଥିବା ସମ୍ଭବ । କାରଣ ବଲ୍ଲାଳସେନ ଖ୍ରୀ ୧୧୧୯-୧୧୬୭ ମଧ୍ୟରେ ରାଜତ୍ୱ କରିଥିଲେ । ସେ ଯାହାହେଉ ବଲ୍ଲାଳସେନଙ୍କ ପିତା ବିଜୟସେନ ଚୋଡ଼ଗଙ୍ଗଙ୍କର ମିତ୍ର ରାଜା ଥିବା ପ୍ରସଙ୍ଗ 'ବଲ୍ଲାଳ-ଚରିତମ୍'ରେ ଉଲ୍ଲେଖ ହୋଇଅଛି । ଏ ଦୃଷ୍ଟିରୁ ଦେଓପାରା ପ୍ରଶସ୍ତିର ଐତିହାସିକ ସତ୍ୟତା ବିଚାର୍ଯ୍ୟ । ଶଙ୍କର ମିଶ୍ର ତାଙ୍କ 'ଗୀତ-ଗୋବିନ୍ଦ'ର 'ରସ ମଞ୍ଜରୀ' ଟୀକାରେ 'ବାଚଃ ପଲ୍ଲବୟତି' ଶ୍ଲୋକର ଅର୍ଥ ଲେଖିଛନ୍ତି "ଉମାପତି ନାମା ଲକ୍ଷ୍ମଣସେନାମାତ୍ୟୋବାଚଃ ପଲ୍ଲବୟତି ବିସ୍ତାରୟତି ଏହା ୧୫୭୦ ଖ୍ରୀ.ରେ । କବି ଉମାପତି ଧର ବଙ୍ଗର ରାଜସାହି ସ୍ଥିତ ପ୍ରଦ୍ୟୁମ୍ନେଶ୍ବର

ମନ୍ଦିରର ଏକ ଶିଳାଲେଖ ପ୍ରଶସ୍ତିରେ ନିଜର କବିତ୍ୱ ଓ ଶବ୍ଦସଂଯୋଜନାର କୃତିତ୍ୱ ଗାନ କରି ଲେଖିଛନ୍ତି:—

"ନିର୍ମିକ୍ତ ସେନକୁଳ ତିଲକଭୂପତି ମୌକ୍ତିକାନା-
ମଗ୍ରନ୍ଥିଲ ଗ୍ରନ୍ଥନ ପକ୍ଷ୍ମଲ ସୂକ୍ତି ବଲ୍ଲିଃ
ଏଷା କବେଃ ପଦପଦାର୍ଥ ବିଚାର ଶୁଦ୍ଧ-
ବୁଦ୍ଧେ ରୁମାପତିଧରସ୍ୟ କୃତି ପ୍ରଶସ୍ତି ଚ" । (୧)

ଆମ୍ଭେ ଆଗରୁ କହିଛୁ ଯେ, ଶ୍ରୀଧର ଦାସଙ୍କ 'ସଦୁକ୍ତି କର୍ଣ୍ଣାମୃତ' ନାମକ ଗ୍ରନ୍ଥଟି ୧୨୦୫ ଖ୍ରୀଷ୍ଟାବ୍ଦରେ ସଙ୍କଳିତ ହୋଇ ସେଥିରେ ଉମାପତି ଧରଙ୍କ ରଚିତ କେତୋଟି ଶ୍ଳୋକ ସଂଯୋଗ କରାଯାଇଥିଲା । କିନ୍ତୁ ଜୈନ କବି ମେରୁତୁଙ୍ଗଙ୍କ 'ପ୍ରବନ୍ଧ ଚିନ୍ତାମଣି' ନାମକ ଯେଉଁ ଗ୍ରନ୍ଥଟି ୧୩୦୨ ଖ୍ରୀଷ୍ଟାବ୍ଦରେ ଲେଖା ହୋଇଥିଲା, ତାହା ସଙ୍ଗେ ବଲ୍ଲାଳସେନଙ୍କ 'ଭୋଜ ପ୍ରବନ୍ଧ' ପ୍ରଭୃତି ଗ୍ରନ୍ଥର ଐତିହାସିକ ସତ୍ୟତା ସନ୍ଦେହଜନକ ବୋଲି କେତେକ ଐତିହାସିକ ମତ ଦେଇଥିବା ବିଷୟ ପୂର୍ବ ପରିଚ୍ଛେଦରେ ବର୍ଣ୍ଣିତ ହୋଇଅଛି । ତେଣୁ ଏଠାରେ ସେଥିର ପୁନରାବୃତ୍ତି କରିବା ଅନାବଶ୍ୟକ ।

ନଦିଆରେ ଯେଉଁ ଉମାପତି ଧର ରାଜା ଲକ୍ଷ୍ମଣ ସେନଙ୍କ ସଭାପଣ୍ଡିତ ଥିଲେ ଏବଂ 'ସେକ୍ ଶୁଭୋଦୟ' ଗ୍ରନ୍ଥରେ ଯାହାଙ୍କୁ ଜଣେ ଲମ୍ପଟ ଏବଂ ଅସଚ୍ଚରିତ୍ର ମନ୍ତ୍ରୀ ରୂପେ ବର୍ଣ୍ଣନା କରାଯାଇଛି, ସେ କିପରି ଧର୍ମପ୍ରାଣ ବୈଷ୍ଣବ କବି ଜୟଦେବଙ୍କ ଗ୍ରନ୍ଥରେ ବନ୍ଦିତ ହୋଇଥିଲେ, ଏ ପ୍ରଶ୍ନଟି ଆମକୁ ବିସ୍ମିତ କରି ଦେଉଛି । କଳିଙ୍ଗ ତଥା ଉତ୍କଳରୁ ପ୍ରାପ୍ତ ଦୁଇଟି ଶିଳାଲେଖର ଅତି ମନୋଜ୍ଞଭାବେ ପ୍ରଶସ୍ତି ଶ୍ଳୋକମାନ ଗଙ୍ଗାବଂଶୀୟ ରାଜାମାନଙ୍କ ରାଜତ୍ୱକାଳରେ ଯେଉଁ କବି ଉମାପତି ରଚନା କରିଥିଲେ, ସେ ନଦିଆର ରାଜା ଲକ୍ଷ୍ମଣସେନଙ୍କ ସଭାପଣ୍ଡିତ ଉମାପତି ଧର ବୋଲି ଚିହ୍ନିତ ହେବା ଅସମ୍ଭବ । କାରଣ କଳିଙ୍ଗରେ ଅବସ୍ଥିତ ବନ-ଗ୍ରାମର ଅମରେଶ୍ୱର ମନ୍ଦିରରେ ଯେଉଁ ଶିଳାଲେଖର ପ୍ରଶସ୍ତି ଶ୍ଳୋକଗୁଡ଼ିକ କବି ଉମାପତି ରଚନା କରିଥିଲେ, ସେଥିରେ ସେ ନିଜର ନାମ ଉଲ୍ଲେଖ କରି ଗୋଟିଏ ଶ୍ଳୋକ ଲେଖିଛନ୍ତି:—

"କାନନ ନନ୍ଦନନନ୍ଦନୟନ୍ତୀ ଶ୍ରଦ୍ଧାଳୁ ବୈଭବମ୍,
ଚକୋମ୍ବମରନାଥସ୍ୟ ସେନାପତି ରୁମାପତିଃ ।" (୨)

(୧) Ins. of Bengal, Vol. III by N. G. Majumdar, P. 49 f.
(୨) Ins. of Orissa, Vol. V. Pt. I PP 190-91 ff; S.I.I, Vol. X. No 717 f.

ଏହି ଶିଳାଲେଖଟି ଉତ୍କଳର ମହାରାଜ ନରସିଂହଦେବ (୧ମ)ଙ୍କ ରାଜତ୍ୱ କାଳରେ (୧୨୩୮-୧୨୬୪ ଖ୍ରୀ)ରେ ଖୋଦିତ ହୋଇଥିଲା । ସେତେବେଳେ କବିଙ୍କର ଉପାଧି ଥିଲା 'ସେନାପତି' । ସେ ରଚନା କରିଥିବା ଦ୍ୱିତୀୟ ଶିଳାଲେଖ ପ୍ରଶସ୍ତି ନରସିଂହଦେବ (୧ମ)ଙ୍କ ପୁତ୍ର ଭାନୁଦେବ (୧ମ)ଙ୍କ ସମୟରେ ୧୨୭୮ ଖ୍ରୀଷ୍ଟାବ୍ଦରେ ଖୋଦିତ ହୋଇ ଭୁବନେଶ୍ୱରସ୍ଥ ଅନନ୍ତ ବାସୁଦେବ ମନ୍ଦିର ବେଢାର ସଂଲଗ୍ନ ହୋଇଅଛି । ସେଥିରେ କବି ନିଜର ପରିଚୟ ନିମ୍ନୋକ୍ତ ପ୍ରକାରେ ଉଲ୍ଲେଖ କରିଛନ୍ତି—

ଅସ୍ତମତି ଶସ୍କିରୁଂ ମୃଗାଙ୍କ ଚୂଡ଼ାମଣି ମୁରାରି କୃତ ହେଳ ମୌଳିରବଃ
ଅଥିରୁଦ୍ଧନ ଧରଂ ଜହାସ ଦେବଦ୍ୱୟ ମଣ୍ଡନ ଗର୍ଭ ଗୌଦ୍ୱରଶ୍ରୀଃ
ତସ୍ୟୈତସ୍ୟା ବିରଚିତସ୍ୟ ରସାଦ୍ର ପ୍ରଶସ୍ତି ।
ଶ୍ରୀମାନୁମାପତି କବି ସ୍ୱି ପୁରାରି ଦାସଃ ॥" (୧)

ଅମରେଶ୍ୱର ମନ୍ଦିରସ୍ଥ ଶିଳାଲେଖରୁ ନିମ୍ନୋକ୍ତ ଶ୍ଳୋକଟି ସାମାନ୍ୟ ପରିବର୍ତ୍ତିନ ସହ ଅନନ୍ତ ବାସୁଦେବସ୍ଥ ଶିଳାଲିପିରେ ଉଦ୍ଧାର କରାଯାଇଥିବାରୁ ଉଭୟ ଲିପିର କବି ଉମାପତି ଏକ ବୋଲି ସ୍ପଷ୍ଟ ପ୍ରମାଣିତ ହୋଇଛି—

(ଅମରେଶ୍ୱର) "ଶେଷଃ ସ୍ୱୀୟ ଶିରଃ ସହସ୍ର ବଳସନ୍ ମାଣିକ୍ୟ ମାଳାଛଳାଦ୍ (୧) (ଅନନ୍ତ ବାସୁଦେବ) [ଶେଷୋ ନ୍ନମନ୍ନ ମୌଳି ବଳସତ୍ ମାଣିକ୍ୟମାଳା ମିମାଦ୍]

ଯଦ୍ୱେଜଃ କଂଚ ଯତ୍ କରିଘଣ୍ଟା ଝଙ୍କାର ନାସାନିଳୈ
ରୁଦ୍ଭୂତୋ ଗଗନେ ରବିଷ୍ଟିର ମସା ବୃତ୍ତ୍ଡ଼ୀନ ପର୍ଣ୍ଣାୟତେ ॥"

ଏହି ଶ୍ଳୋକଟି ନିମ୍ନ ପ୍ରକାରେ ସ୍ୱର୍ଗୀୟ ପରମାନନ୍ଦ ଆଚାର୍ଯ୍ୟ ଇଂରାଜୀରେ ଅନୁବାଦ କରିଛନ୍ତି—

"Distressed by the sparks of the radiant gems, sesa, the king of snakes felt ashamed of his gems of less lusture upon his thousand hoods and, therefore plunged down into the water of Patala; and the moving sun, the king of the planets, cannot be compared with the gems of the motionless radiance for the reason that the moving sun appears as if a flying leaf carried into the sky by the tempests raised by the blasts issuing from the nostrils of his elephant troops. (1)

(1) Ins. Ori., Vol. V, Pt. I, PP 211-15 ff;
(2) O. H. R. J., Vol. I. No. 4, PP 274-288 ff.

କବି ଉମାପତି 'ଚନ୍ଦ୍ରଚୂଡ଼' ଚରିତ ନାମକ ଗୋଟିଏ କାବ୍ୟ ସଂସ୍କୃତରେ ଲେଖିଥିଲେ । କିନ୍ତୁ ସେ ଗ୍ରନ୍ଥଟି ଅଦ୍ୟାବଧି ଆବିଷ୍କୃତ ହୋଇ ନ ଥିବାରୁ ସେଥିରୁ ବହୁ ଶ୍ଳୋକ ସଂକଳିତ ଗ୍ରନ୍ଥମାନଙ୍କରେ ଉଦ୍ଧୃତ ହୋଇଅଛି । ଉପରେ ଉଲ୍ଲେଖ କରାଯାଇଥିବା ଶ୍ଳୋକ ଦୁଇଟି ଶିଳାଲେଖ ବ୍ୟତୀତ ଉତ୍କଳର ସେହି କବି ଉମାପତିଙ୍କ ସମ୍ପର୍କରେ ଅଧିକ ତଥ୍ୟ ଆମ ଦୃଷ୍ଟିକୁ ଆସିନାହିଁ । ସେ ନିଶ୍ଚିତଭାବେ ଖ୍ରୀ. ୧୨୭୧-୭୮ ମଧ୍ୟରେ ଉତ୍କଳରେ ଗଙ୍ଗାବଂଶୀୟ ରାଜା ନରସିଂହଦେବ (୧ମ) ଏବଂ ତାଙ୍କ ପୁତ୍ର ଭାନୁଦେବ (୧ମ)ଙ୍କ ଅଧୀନରେ ଜଣେ 'ସେନାପତି' ଏବଂ ରାଜକବି ରୂପେ ରହିଥିଲେ । ସୁତରାଂ ତାଙ୍କୁ ବଙ୍ଗର ରାଜା ଲକ୍ଷ୍ମଣସେନ (ଖ୍ରୀ ୧୧୭୦-୧୨୦୫) ସାନ୍ଧିବିଗ୍ରହିକ (ମନ୍ତ୍ରୀ) ଓ ସଭାପଣ୍ଡିତ ଉମାପତି ଧର ବୋଲି କହିବା ଆଦୌ ସଙ୍ଗତ ନୁହେଁ । ଯେଉଁ ଉମାପତିଧର ମନ୍ତ୍ରୀରୂପେ ଲକ୍ଷ୍ମଣସେନଙ୍କ ଶାସନ କାର୍ଯ୍ୟରେ ବ୍ୟାପୃତ ହୋଇଥିଲେ, ସେ ଜଣେ ଭ୍ରଷ୍ଟାଚାର ଓ ହୀନଚରିତ ବ୍ୟକ୍ତି ରୂପେ 'ବ୍ରାହ୍ମଣ ସର୍ବସ୍ୱ'ର ଲେଖକ ହଲାୟୁଧ ତାଙ୍କ 'ସେକ ଶୁଭୋଦୟ' ଗ୍ରନ୍ଥରେ ପ୍ରକାଶ କରିଛନ୍ତି । ଏ ବିଷୟ ଆଗରୁ କୁହାଯାଇଛି । ହଲାୟୁଧ ଜଣେ ନୈଷ୍ଠିକ ବ୍ରାହ୍ମଣ । ସେନ ରାଜବଂଶୀୟ ରାଜାଙ୍କ ଅଧୀନରେ ସେ ନିଯୁକ୍ତ ଥିବା କଥିତ ହୁଏ । କିନ୍ତୁ ସେହି ନାମରେ ଅନ୍ୟ କେତେକ ଗ୍ରନ୍ଥ କର୍ତ୍ତା ମଧ୍ୟ ବିଭିନ୍ନ ସମୟରେ ଭାରତର ବିଭିନ୍ନ ଅଞ୍ଚଳରେ ରହିଥିବା ଜଣାଯାଏ । ଉଦାହରଣ ସ୍ୱରୂପ, ରାଷ୍ଟ୍ରକୂଟ ବଂଶୀୟ ମହାରାଜା କୃଷ୍ଣ (୩ୟ) (ଖ୍ରୀ ୯୦୦-୯୫)ଙ୍କ ପ୍ରଶସ୍ତି ସମ୍ବଳିତ 'ଧାତୁରତ୍ନାବଳି' ନାମକ ଗ୍ରନ୍ଥରେ ସଂସ୍କୃତ-ଧାତୁମାନଙ୍କର ପ୍ରୟୋଗ ବିଧି ବୁଝାଇ ଶ୍ଳୋକମାନ ଲେଖିଅଛନ୍ତି । ଆହୁ ମଧ୍ୟ 'ମୃତ ସଞ୍ଜୀବନୀ' ନାମକ ଗ୍ରନ୍ଥ ତାଙ୍କ ନାମରେ ପ୍ରକାଶ ହୋଇଛି (୧) ସେ ଜଣେ ପ୍ରସିଦ୍ଧ ତାନ୍ତ୍ରିକ ଥିବା ଜଣାଯାଏ । କାରଣ ତାଙ୍କ ଦ୍ୱାରା ଲିଖିତ 'ମତ୍ସ୍ୟ ସୂକ୍ତୋକ୍ତ ମହାତନ୍ତ୍ର' ନାମକ ୬୪ ଅଧ୍ୟାୟର ଏକ ଗ୍ରନ୍ଥ ରଚିତ ହୋଇଥିଲା । (୨)

କବି ରହସ୍ୟ ନାମକ ଅନ୍ୟ ଏକ ଗ୍ରନ୍ଥ ମଧ୍ୟ ସେ ଲେଖିଥିବା ଜଣାଯାଇଛି (Bhandarkar's Report, 1883-84) କିନ୍ତୁ ଖ୍ରୀ ଦଶମ ଶତାବ୍ଦୀର ସେହି ହଲାୟୁଧ ଖ୍ରୀଷ୍ଟାବ୍ଦ ଦ୍ୱାଦଶ ଶତାବ୍ଦୀରେ ଜୀବିତ ଥିବା ଓ ସ୍ମୃତି ଗ୍ରନ୍ଥ 'କର୍ମୋପଦେଶିନୀ'

---

(୧) କାବ୍ୟମାଳା, ନଂ ୯୧ (୧୯୦୮)

(୨) Vide S. C. Banerjee—A Brief history of Tantra literature P 242.

ବା 'ବ୍ରାହ୍ମଣ ସର୍ବସ୍ୱ' ସମେତ 'ସେକ୍ ଶୁଭୋଦୟ' ନାମକ ଦୁଇଟି ଗ୍ରନ୍ଥ ଲେଖିଥିବା ପଣ୍ଡିତ ନୁହଁନ୍ତି । ତେବେ 'ସେକ୍ ଶୁଭୋଦୟ' ଗ୍ରନ୍ଥରେ ହଳାୟୁଧଙ୍କ ପରି ଜଣେ ନୈଷ୍ଠିକ ବ୍ରାହ୍ମଣ ରାଜା ଲକ୍ଷ୍ମଣସେନ ଓ ତାଙ୍କ ମନ୍ତ୍ରୀ ଉମାପତି ଧରଙ୍କ ଚରିତ୍ର ସମ୍ପର୍କରେ ଯେଉଁ ତାଚ୍ଛଲ୍ୟପୂର୍ଣ୍ଣ ବିଷୟ ଲେଖିଛନ୍ତି, ତାହା ସମ୍ଭବ ନୁହେଁ ବୋଲି ଡ଼ା. ରମେଶଚନ୍ଦ୍ର ମଜମୁଦାର ଓ ଡା. ରାଖାଲଦାସ ବାନାର୍ଜି ମତ ବ୍ୟକ୍ତ କରିଅଛନ୍ତି । ଆଉ ମଧ୍ୟ 'ସେକ୍ ଶୁଭୋଦୟ' ଗ୍ରନ୍ଥଟି ପଣ୍ଡିତ ହଳାୟୁଧଙ୍କ ନାମରେ ଅନ୍ୟ କେହି ଲେଖିଥିବେ ବୋଲି ମଧ୍ୟ କେହି କେହି ମତବ୍ୟକ୍ତ କରିଛନ୍ତି । ଏଥିରୁ ସ୍ପଷ୍ଟ ପ୍ରମାଣିତ ହେଉଛି ଯେ, ଲକ୍ଷ୍ମଣସେନଙ୍କ ରାଜତ୍ୱକାଳରେ ଏପରି ଗ୍ରନ୍ଥମାନଙ୍କରେ ବହୁ ଅପ୍ରାସଙ୍ଗିକ ତଥା ପ୍ରଶସ୍ତି ଶ୍ଳୋକମାନ ପରବର୍ତ୍ତୀକାଳରେ ଯୋଡ଼ି ଦିଆଯାଉଥିଲା । ଏଠାରେ କହିବା ଆବଶ୍ୟକ ଯେ, ଲକ୍ଷ୍ମଣସେନଙ୍କ ରାଜତ୍ୱର ପ୍ରାୟ ୪୦ ବର୍ଷ ପରେ ବୋଧହୁଏ ବଟୁଦାସଙ୍କ ପୁତ୍ର ଶ୍ରୀଧରଦାସ ସଂକଳନ କରିଥିବା 'ସଦୁକ୍ତି କର୍ଣ୍ଣାମୃତ' ଗ୍ରନ୍ଥଟି ସମ୍ପୂର୍ଣ୍ଣ ହୋଇଥିଲା । ସେଥିରେ ଲେଖାଅଛି:—

''ରାଜ୍ୟାଭିଷେକ ମାରଭ୍ୟ ତ୍ରିଂଶତ୍ ସମାଯଦା
ମାସଦ୍ୱୟଂ ବ୍ୟତୀତଂ ଚ ସ ପଞ୍ଚଷଷ୍ଠି ହାୟନାଃ
ସହସ୍ରେଽସ୍ମିନ୍ ବିଂଶଯୁକ୍ତେ ଶକାବ୍ଦେ ପୃଥ୍ୱୀଷାପତିଃ ।
ସ୍ଥିତିଃ ସାର୍ଦ୍ଧଂ ମହାଭାଗ ଉତ୍ପପାତଦବଂ ପ୍ରତି ।।''

ଅର୍ଥାତ୍ ରାଜା ଲକ୍ଷ୍ମଣସେନଙ୍କ ରାଜ୍ୟାଭିଷେକରେ ୪୦ ବର୍ଷ ପରେ ଶକାବ୍ଦ ୧୧୨୮ (ଖ୍ରୀ.୧୨୦୭)ରେ ଉକ୍ତ ଗ୍ରନ୍ଥଟି ସମ୍ପୂର୍ଣ୍ଣ ହୋଇଥିଲା । ସେଥିରେ ୭୨ଟି ଶ୍ଳୋକ 'ଜୟଦେବ'ଙ୍କ 'ଗୀତ ଗୋବିନ୍ଦ'ରୁ ଉଦ୍ଧାର କରାଯାଇଛି ବୋଲି କୁହାଯାଇଛି । କିନ୍ତୁ ସେଥିରେ ''ଜୟ ଶ୍ରୀବିନ୍ୟସ୍ତୈର୍ମହିତ ଇବ ମନ୍ଦାର କୁସୁମୈଃ'...ଶ୍ଳୋକଟି ନ ଥିବାରୁ ତାହା 'ଗୀତ ଗୋବିନ୍ଦ'ର ଅନ୍ୟତମ ପ୍ରକ୍ଷିପ୍ତ ଶ୍ଳୋକ ବୋଲି ମଧ୍ୟ ପ୍ରମାଣିତ ହୁଏ । (୧)

ଏଠାରେ କହିବା ଆବଶ୍ୟକ ଯେ, ଶ୍ରୀଧର ଦାସ ଯଦି ୧୨୦୭ ଖ୍ରୀରେ 'ସଦୁକ୍ତି କର୍ଣ୍ଣାମୃତ' ଗ୍ରନ୍ଥଟି ସମ୍ପୂର୍ଣ୍ଣ କରିଥିଲେ, ତେବେ ତାହା ନିଶ୍ଚିତଭାବେ ଶ୍ରୀ ଜଗନ୍ନାଥ କ୍ଷେତ୍ରରେ ହୋଇଥିବା ସମ୍ଭବ । କାରଣ 'ପୃଥ୍ୱୀରାଜ ରାସୋ' ନାମକ ଗ୍ରନ୍ଥରେ ଚାନ୍ଦକବି ପୃଥ୍ୱୀରାଜଙ୍କ ସଭାରେ (ଖ୍ରୀ.୧୧୬୯-୧୧୯୨) ମଧ୍ୟରେ କବି ଜୟଦେବଙ୍କୁ ଭାରତର ଅଷ୍ଟମ କବି ବର୍ଣ୍ଣନା କରିଥିଲେ । ଫଳତଃ ସୁଦୂର ଦିଲ୍ଲୀରେ 'ଗୀତ ଗୋବିନ୍ଦ' ସେତେବେଳେ ଆଦୃତ ହେଉଥିଲା । ଶ୍ରୀଜଗନ୍ନାଥକ୍ଷେତ୍ରକୁ ଉତ୍ତର ଭାରତରୁ ଯାତ୍ରୀମାନେ

---

(୧) ଉତ୍କଳ ପ୍ରସଙ୍ଗ,' ଜୟଦେବ ସଂଖ୍ୟା, (ମେ ୧୯୯୧) ପୃ ୧୧ ଦ୍ରଷ୍ଟବ୍ୟ ।

ଆସି ଶ୍ରୀମନ୍ଦିରରେ 'ଗୀତ ଗୋବିନ୍ଦ'ର ଗାନ ଶୁଣି ଥିବାରୁ ଏତେ ଦୂର ଅଞ୍ଚଳରେ ଗୀତ ଗୋବିନ୍ଦ ପ୍ରଚାରିତ ହୋଇଥିଲା । ୧୨୦୫ ଖ୍ରୀଷ୍ଟାବ୍ଦରେ ରାଜଧାନୀ ନଦିଆ ବକ୍ତିୟାର ଖିଲ୍‌ଜିଙ୍କ ଦ୍ୱାରା ଧ୍ୱଂସପ୍ରାପ୍ତ ହୋଇଥିଲା । ଆଉ ମଧ୍ୟ ବୃଦ୍ଧରାଜା ଲକ୍ଷ୍ମଣସେନ ଆତ୍ମରକ୍ଷା ସକାଶେ ଶ୍ରୀଜଗନ୍ନାଥଙ୍କୁ ପଳାୟନ କରିଥିଲେ । ତାଙ୍କର ସହଯାତ୍ରୀ ରୂପେ ପଣ୍ଡିତ ଶ୍ରୀଧର ଦାସ ଓ ଅନ୍ୟ କେତେକ ରାଜକର୍ମଚାରୀ ଓ ବ୍ରାହ୍ମଣ ପଣ୍ଡିତ ମଧ୍ୟ ଶ୍ରୀକ୍ଷେତ୍ରକୁ ଯାତ୍ରା କରିଥିବା ଅନୁମେୟ । ତେଣୁ 'ସଦୁକ୍ତି କର୍ଣ୍ଣାମୃତ'ରେ ବୋଧହୁଏ 'ଗୀତ ଗୋବିନ୍ଦ'ର ଉଦ୍ଧାର କରି ଶ୍ରୀଧାମରେ ରହି ଶ୍ରୀଧର ଦାସ ଏତେଗୁଡ଼ିଏ ଶ୍ଳୋକ ସଂଯୋଗ କରିପାରିଥିବେ ।

"ସଦୁକ୍ତି କର୍ଣ୍ଣାମୃତ'ରେ ଗୀତ ଗୋବିନ୍ଦର କେତେକ ପ୍ରକ୍ଷିପ୍ତ ଶ୍ଳୋକ ସମ୍ବନ୍ଧରେ ଆଲୋଚନା କରିବାକୁ ଯାଇ ଶ୍ରୀ ପ୍ରଫୁଲ୍ଲଚନ୍ଦ୍ର ତ୍ରିପାଠୀ ତାଙ୍କର ଏକ ପ୍ରବନ୍ଧରେ ଯେଉଁ ସିଦ୍ଧାନ୍ତ ଗ୍ରହଣ କରିଛନ୍ତି ତାହା ପ୍ରଣିଧାନଯୋଗ୍ୟ । ସେ ଲେଖିଛନ୍ତି— "ସେହି ପ୍ରକ୍ଷିପ୍ତ ଶ୍ଳୋକଗୁଡ଼ିକ କେବେ ସୃଷ୍ଟି ହୋଇ "ଗୀତ ଗୋବିନ୍ଦ" ସହ ସନ୍ନିବେଶିତ ହୋଇଛୁ, ତାହା ପ୍ରଥମତଃ ସ୍ଥିର କରିବାକୁ ହେବ । ଗୀତ ଗୋବିନ୍ଦର ଚାରିଗୋଟି ମୂଳ ଶ୍ଳୋକ ସହ ପ୍ରକ୍ଷିପ୍ତ ଶ୍ଳୋକ 'ସଦୁକ୍ତି କର୍ଣ୍ଣାମୃତ'ରେ ବହୁ ପଛରେ ସନ୍ନିବେଶିତ ହୋଇଥିବା ଏଥିରୁ ଜଣାଯାଏ । ଶ୍ରୀ ଜୟଦେବ ଯଦି ଲକ୍ଷ୍ମଣସେନଙ୍କ ସଭା କବି ତଥା "ସଦୁକ୍ତି କର୍ଣ୍ଣାମୃତ'ର ସଂକଳକ ଶ୍ରୀଧରଦାସଙ୍କ ସମସାମୟିକ ହୋଇଥାନ୍ତେ, ତେବେ ତାଙ୍କ ପରବର୍ତ୍ତୀକାଳର ବ୍ୟାଖ୍ୟାକାରମାନଙ୍କ ଦ୍ୱାରା ଉପରୋକ୍ତ ଶ୍ଳୋକଟି (ଜୟଶ୍ରୀ ବିନ୍ୟସ୍ତୈ ମହିତ ଇବ ମନ୍ଦାର କୁସୁମୈଃ...) ଆଦୌ ଉପେକ୍ଷିତ ହୋଇନଥାନ୍ତା ନାହିଁ । (୧)

ଆମ୍ଭର ମନେହୁଏ, ୧୨୦୫ ଖ୍ରୀଷ୍ଟାବ୍ଦରେ ରାଜା ଲକ୍ଷ୍ମଣସେନଙ୍କ ସଙ୍ଗେ ଶ୍ରୀଧର ଦାସଙ୍କ ପରି ଯେଉଁ କବି ବା ପଣ୍ଡିତମାନେ ଉତ୍କଳର ଶ୍ରୀକ୍ଷେତ୍ରରେ ଆଶ୍ରୟ ନେଇଥିଲେ, ସେମାନେ ସେଠା ଶ୍ରୀମନ୍ଦିରରେ ଜୟଦେବଙ୍କ ରଚିତ 'ଗୀତ ଗୋବିନ୍ଦ' ଗାନ ଶୁଣି ସେଥିରେ ନିଜ ନିଜର କେତେକ ଶ୍ଳୋକ ଯୋଗ କରିବାକୁ ଲାଳାୟିତ ହୋଇଥିବା ସମ୍ଭବ । ଉମାପତି ଧରଙ୍କ ବାକ୍‌ପଟୁତା ପାଇଁ ଯେପରି କବି ଜୟଦେବ ପ୍ରଶଂସା କରିଥିଲେ, ସେପରି ସେହି ପ୍ରକ୍ଷିପ୍ତ ଶ୍ଳୋକଟିରେ ଆଚାର୍ଯ୍ୟ ଗୋବର୍ଦ୍ଧନଙ୍କୁ ମଧ୍ୟ ଶୃଙ୍ଗାର-ରସଜ୍ଞ କବି ରୂପେ ପ୍ରଶଂସା କରାଯାଇଛି । ଯଥା—

---

(୧) 'ଉତ୍କଳ ପ୍ରସଙ୍ଗ', ଜୟଦେବ ବିଶେଷାଙ୍କ (ମେ ୧୯୯୧) ପୃ ୧୧-୧୨ ଦ୍ରଷ୍ଟବ୍ୟ

"ଶୃଙ୍ଗାରୋତ୍ତର ସତ୍‌ପ୍ରମେୟ ରଚନୈରାଚାର୍ଯ୍ୟ ଗୋବର୍ଦ୍ଧନ
ସ୍ପର୍ଦ୍ଧୀ କୋଽପି ନ ବିଶ୍ରୁତଃ......" ଇତ୍ୟାଦି

ଦ୍ୱିତୀୟ ପରିଚ୍ଛେଦ ଶେଷରେ ଆମ୍ଭେ ଏ ସମ୍ବନ୍ଧରେ ଅଧିକ ଆଲୋଚନା କରିଛୁ । ମହାକବି ହାଳଙ୍କ ପ୍ରାକୃତ ଭାଷାରେ ରଚିତ 'ସତ୍ତସଈ' ନାମକ ଶୃଙ୍ଗାରରସ ପୂର୍ଣ୍ଣ ଗ୍ରନ୍ଥଟି ଭିତ୍ତି କରି ଗୋବର୍ଦ୍ଧନାଚାର୍ଯ୍ୟ "ଆର୍ଯ୍ୟା ସପ୍ତଶତୀ" ଗ୍ରନ୍ଥ ସଂସ୍କୃତରେ ଲେଖିଥିଲେ । କିନ୍ତୁ ସେଥିରେ ଶୃଙ୍ଗାରରସର ମାଧୁର୍ଯ୍ୟ କ୍ୱଚିତ ଅନୁଭୂତ ହୁଏ । ସୁତରାଂ ଶୃଙ୍ଗାରରସ ପାଇଁ ତାଙ୍କୁ ସମ୍ମାନିତ କରିବା କବି ଜୟଦେବଙ୍କ ପକ୍ଷରେ କେତେଦୂର ସମ୍ଭବ, ଏକଥା ସଂସ୍କୃତ ସାହିତ୍ୟର ଗବେଷକମାନେ ଅନୁଧ୍ୟାନ କରିପାରିବେ ।

'ଆର୍ଯ୍ୟା ସପ୍ତଶତୀ'ର ୩୯ ନମ୍ବର ଶ୍ଳୋକରେ 'ସେନକୁଳ ତିଳକ' (?) ଙ୍କୁ ଲକ୍ଷ୍ୟ କରି ନିମ୍ନୋକ୍ତ ଭାବେ ତାଙ୍କର ଗୁଣଗାନ କରାଯାଇଛି—

"ସକଳ କଳାଃ କଳ୍ପୟିତୁଂ, ପ୍ରଭୁଃ ପ୍ରବନ୍ଧସ୍ୟ କୁମୁଦ ବନ୍ଧୋଶ୍ଚ ।
ସେନକୁଳତିଳକ ଭୂପତିରେକୋ ରାଜା ପ୍ରଦୋଷଶ୍ଚ ॥"

କେତେକ ପଣ୍ଡିତ ସେହି "ସେନକୁଳତିଳକ ଭୂପତି"ଙ୍କୁ ରାଜା ଲକ୍ଷ୍ମଣସେନ ବୋଲି ଚିହ୍ନିତ କରି ଗୋବର୍ଦ୍ଧନାଚାର୍ଯ୍ୟ ତାଙ୍କର ସଭା ପଣ୍ଡିତ ଥିବା ପ୍ରମାଣିତ କରନ୍ତି । ଆଉ କେତେକ ଟୀକାକାର ମଧ୍ୟ ତାଙ୍କୁ ବାକାତକ ବଂଶୀୟ ମହାରାଜା ଦ୍ୱିତୀୟ ପ୍ରବରସେନ (ଖ୍ରୀ ୪ର୍ଥ ଶତାବ୍ଦୀ) ବୋଲି ଉଲ୍ଲେଖ କରିଛନ୍ତି । କାରଣ ବାକାତକ ରାଜବଂଶ ଏବଂ ସାତବାହନ ରାଜବଂଶୀୟ ହାଳଙ୍କ ଜୀବିତ ସମୟ ଖ୍ରୀ. ୩ୟ ବା ୪ର୍ଥ ଶତାବ୍ଦୀ ବୋଲି ନିରୂପଣ କରାଯାଇଛି । ସାତବାହନ ବା ଆନ୍ଧ୍ରଭୃତ୍ୟ ରାଜବଂଶର ସପ୍ତଦଶ ବଂଶଧର ରୂପେ କବି ହାଳ ଦାକ୍ଷିଣାତ୍ୟରେ ରାଜତ୍ୱ କରୁଥିଲେ । ତେଣୁ କେତେକ ଐତିହାସିକଙ୍କ ମତରେ ସାତବାହନ-ହାଳଙ୍କ ଜୀବିତ କାଳ ଖ୍ରୀ ୩ୟ ଶତାବ୍ଦୀରେ ନିରୂପଣ କରାଯାଇଛି । (୧) ସୁତରାଂ 'ସତ୍ତସାଈ' ପ୍ରାକୃତ କାବ୍ୟରେ ଯେଉଁ "ସେନକୁଳତିଳକ ଭୂପତି" ଆଖ୍ୟା ଦିଆଯାଇଛି ତାହା ହାଳଙ୍କ ସମସାମୟିକ ବାକାତକ ବଂଶୀୟ 'ସେନ' ଉପାଧିଧାରୀ ରାଜା ପ୍ରବରସେନ ହୋଇପାରନ୍ତି ବୋଲି ଦୃଢ଼ ମତବ୍ୟକ୍ତ କରାଯାଇଛି । 'ଆର୍ଯ୍ୟାସପ୍ତଶତୀ'ର ମହାରାଷ୍ଟ୍ରୀୟ ଟୀକାକାର ଲେଖିଛନ୍ତି—

(୧) R. G. Bhandarkar, Early History of the Deccan, PP 31-38 (2nd Edition, 1895)

"କୁମୁଦବନେ ବିନୋଷ୍ଟନ୍ଦ୍ରସ୍ୟ ଚ ଷୋଡ଼ଶ କଳାଃ
କଳୟିତୁଂ ବର୍ଦ୍ଧୟିତୁଂ ବା ପକ୍ଷେ
ଦର୍ଶୟିତୁଂ ତିଳକଭୂପତିଃ ସେତୁ କର୍ତ୍ତା
ପ୍ରବରସେନ ନାମାରାଜା, ପୌର୍ଣ୍ଣମାସୀ—ପ୍ରଦୋଷ ଏକ ପ୍ରଭୁଃ ॥"

(ଚୌଖମ୍ବା ହସ୍ତଲିଖିତ ସିରିଜ)

ତଥାପି 'ଆର୍ଯ୍ୟାସପ୍ତଶତୀ'ରେ ଯେଉଁ ରାଜାଙ୍କୁ ଲକ୍ଷ୍ୟ କରି ଏ ଶ୍ଳୋକ ଗୋବର୍ଦ୍ଧନାଚାର୍ଯ୍ୟ ଲେଖିଥିଲେ, ସେ ବୋଧହୁଏ ବଙ୍ଗର 'ସେନ' ଉପାଧିଧାରୀ କୌଣସି ରାଜା ହୋଇଥିବା ମଧ୍ୟ ସମ୍ଭବ । ତେଣୁ ସେହି ରାଜାମାନଙ୍କର ଆନୁମାନିକ ରାଜତ୍ୱ କାଳ ନିମ୍ନରେ ଦିଆଗଲା—

ବିଜୟସେନ ( ଖ୍ରୀ ୧୦୭୬-୧୧୧୯)
↓
ବଲ୍ଲାଳସେନ ( ଖ୍ରୀ. ୧୧୧୯-୧୧୭୬ )
↓
ଲକ୍ଷ୍ମଣସେନ ( ଖ୍ରୀ ୧୧୭୬-୧୨୦୫ )

ଯଦି ଗୋବର୍ଦ୍ଧନାଚାର୍ଯ୍ୟଙ୍କ ଦ୍ୱାରା ସମ୍ବର୍ଦ୍ଧିତ ସେନ ବଂଶୀୟ ରାଜା ହୋଇଥିବେ, ତାହାହେଲେ 'ସେନକୁଳତିଳକ ଭୂପତି' ରାଜା ବିଜୟସେନଙ୍କ ପ୍ରତି ମଧ୍ୟ ପ୍ରଯୁଜ୍ୟ ହୋଇପାରେ । କାରଣ ଦେଓପାଡ଼ା ତାମ୍ରଶାସନରେ ତାଙ୍କ ପ୍ରଶସ୍ତି ଏହି ପ୍ରକାରେ ଲେଖା ହୋଇଛି—

"ତ୍ୱଂ ନାନ୍ୟବୀର ବିଜୟୀତି ଗିରଃ କବୀନାଂ
ଶ୍ରୁତ୍ୱାନ୍ୟଥା ମନନରୂଢ଼ଂ ନିଗୂଢ଼ ରୋଷଃ ।
ଗୌଡ଼େନ୍ଦ୍ର ମଦ୍ରବଦପାକୃତ କାମରୂପ
ଭୂପଂ କଳିଙ୍ଗ ପତି ଯସ୍ତରସା ଜିଗାୟ ॥" (୧)

ଅର୍ଥାତ୍ ରାଜା ବିଜୟସେନ ଗୌଡ଼, ମଦ୍ର, କାମରୂପ ଓ କଳିଙ୍ଗ ପ୍ରଭୃତି ରାଜାମାନଙ୍କୁ ଯୁଦ୍ଧରେ ପରାସ୍ତ କରିଥିଲେ । କେବଳ ସେତିକି ନୁହେଁ କଳିଙ୍ଗର ଗଙ୍ଗବଂଶୀୟ ମହାରାଜା ଚୋଡ଼ଗଙ୍ଗ ଉତ୍କଳ ଜୟକରି ବଙ୍ଗର ପାଳବଂଶୀୟ ରାଜା ରାମପାଳଙ୍କୁ ଜୟ କରିବା ପରେ ବିଜୟସେନ ତାଙ୍କ ସଙ୍ଗେ ମିତ୍ରତା ସ୍ଥାପନ କରିଥିଲେ ।

---

(୧) Ins of Bengal, Vol III P 480 f.

ଏକଥା ଦେଓପାର ତାମ୍ରଶାସନରୁ ଉପଲବ୍ଧ ହୋଇଛି । ଆଉ ମଧ୍ୟ ସେଥିର ୧୯ଶ ନମ୍ବର ଶ୍ଳୋକରୁ ଜଣାଯାଇଛି ଯେ, ଚୋଡ଼ଗଙ୍ଗଙ୍କ ସଙ୍ଗେ ମିଶି ବିଜୟସେନ ବଙ୍ଗର ବରେନ୍ଦ୍ର ଅଞ୍ଚଳ ଅଧିକାର କରିଥିଲେ । ସେହି ଶ୍ଳୋକରେ ବର୍ଣ୍ଣିତ ହୋଇଛି ଯେ, ଶତ୍ରୁ ରାଜାମାନଙ୍କ ପାଇଁ "ଦିବ୍ୟଭୁବ (ସ୍ୱର୍ଗ) ଲୋକଟି ସେ ଛାଡ଼ି ଦେଇ ନିଜେ ଭୂଲୋକ ଗ୍ରହଣ କରିଥିଲେ । (୨)

ଆମେ ଆଗରୁ କହିସାରିଛୁ ଯେ, ପଶ୍ଚିମ ବଙ୍ଗର ହୁଗୁଲି ଜିଲ୍ଲା ସ୍ଥିତ ଗଡ଼-ମନ୍ଦାର ଓ ସେହି ଜିଲ୍ଲାରେ ଥିବା ଆରାମବାଗ (ଭିତର ଗଡ଼) ଠାରୁ ଚୋଡ଼ଗଙ୍ଗଙ୍କ ବଙ୍ଗ ଅଭିଯାନ ଆରମ୍ଭ ହୋଇଥିଲା । କିନ୍ତୁ ସାମ୍ରାଜ୍ୟଟି ଗଙ୍ଗାନଦୀର ପଶ୍ଚିମତଟ ପର୍ଯ୍ୟନ୍ତ ସୀମାରୂପେ ସ୍ଥିର ହୋଇଥିଲା । ରାଜା ରାମପାଳଙ୍କ ମୃତ୍ୟୁପରେ ତାଙ୍କ ପୁତ୍ର କୁମାର ପାଳ ଓ ମନ୍ତ୍ରୀ ବୈଦ୍ୟଦେବ କିଛି କାଳ ଯାଏ ବୋଧହୁଏ ଜଳ ଯୁଦ୍ଧରେ ପ୍ରବୃତ୍ତ ହୋଇଥିଲେ । କିନ୍ତୁ ଅଳ୍ପକାଳ ପରେ ସେମାନଙ୍କର ପତନ ହେବାରୁ ଚୋଡ଼ଗଙ୍ଗଙ୍କ ମିତ୍ର ରାଜା ବିଜୟସେନ ରାଢ଼ ଓ ବରେନ୍ଦ୍ର ଅଞ୍ଚଳ ଅଧିକାର କରି ନଦିଆରେ ତାଙ୍କ ରାଜଧାନୀ ସ୍ଥାପନ କଲେ ।

ଆନନ୍ଦଭଟ୍ଟଙ୍କ ରଚିତ 'ବଲ୍ଲାଳ ଚରିତମ୍' ଗ୍ରନ୍ଥର ବିଜୟସେନଙ୍କ ସମ୍ପର୍କରେ ନିମ୍ନୋକ୍ତ ଶ୍ଳୋକଟି ଉଲ୍ଲେଖ ହୋଇଅଛି ।

"ତସ୍ମାଦ୍ ବିଜୟସେନୋଽଭୂତ୍ ଚୋଡ଼ଗଙ୍ଗ ସଖୋନୃପଃ
ଯୋ ଜୟତ୍ ପୃଥିବୀ କୃତ୍ସ୍ନାଂ ଚତୁଃ ସାଗର ମେଖଳାମ୍ ॥
× × ×
ତସ୍ୟ ପୁତ୍ରୋଽପି ବଲ୍ଲାଳଃ ସାର୍ବଭୌମ ମହୀକ୍ଷିତଃ

('ବଲ୍ଲାଳ ଚରିତମ୍' ୧୨ଶ ଅଧ୍ୟାୟ ଦ୍ରଷ୍ଟବ୍ୟ)

ବାସ୍ତବରେ ଗଙ୍ଗବଂଶୀୟ ମହାରାଜା ଚୋଡ଼ଗଙ୍ଗଙ୍କୁ ଲକ୍ଷ୍ୟକରି "ସଦୁକ୍ତି କର୍ଣ୍ଣାମୃତ"ରେ ନିମ୍ନୋକ୍ତ ଶ୍ଳୋକଟି ସଙ୍କଳିତ ହୋଇଥିବା ଜଣାଯାଏ । ସଦୁକ୍ତି କର୍ଣ୍ଣାମୃତରେ ଜୟଦେବଙ୍କ ନାମରେ ନିମ୍ନୋକ୍ତ ଶ୍ଳୋକଟି ଉଦ୍ଧାର କରାଯାଇଛି ।

---

(୨) ପି. ଏଲ୍. ପାଲ (P. L. Paul) ଏଥିରେ ଅର୍ଥ କରିବାକୁ ଯାଇ କହନ୍ତି ଯେ, 'ଦିବ୍ୟଲୋକ' ହେଉଛି ବଙ୍ଗର ଏକ ବିଷୟ (ଜିଲ୍ଲା) କିନ୍ତୁ ଦିବ୍ୟଲୋକର ପ୍ରକୃତ ଅର୍ଥ ହେଉଛି 'ସ୍ୱର୍ଗଲୋକ' ତେଣୁ ସେ (ବିଜୟସେନ) ତାଙ୍କ ଶତ୍ରୁମାନଙ୍କୁ 'ଦିବ୍ୟଲୋକ'କୁ ପଠାଇ (ନିହତ କରି) ନିଜେ ଭୂଲୋକରେ ରାଜା ହୋଇଥିଲେ ।

"ଲକ୍ଷ୍ମୀକେଳି ଭୁଜଙ୍ଗ ଜଙ୍ଗମ ହରେ ସଂକଳ୍ପ କଳ୍ପଦ୍ରୁମଃ
ଶ୍ରେୟଃ ସାଧକ ସଙ୍ଗ ସଙ୍ଗରକଳା ଗାଙ୍ଗେୟ ବଂଶପ୍ରିୟଃ
ଗୌଡ଼େନ୍ଦ୍ରଃ ପ୍ରତିରାଜ ରାଜକ ସଭାଳଙ୍କାର କର୍ଣ୍ଣାର୍ପିତଃ
ପ୍ରୀତ୍ୟର୍ଥ କ୍ଷିତିପାଳ ପାଳକ ସତାଂ ଦୃଷ୍ଟୋଽସି ତୁଷ୍ଟା ବୟଃ ।"

ଏଥିର ପ୍ରକୃତ ଅର୍ଥ ହେଉଛି ।

ହେ ଲକ୍ଷ୍ମୀଙ୍କ ପ୍ରିୟ-କେଳି ଭୁଜଙ୍ଗ (ଶ୍ରୀକୃଷ୍ଣଙ୍କ) ଚଳନ୍ତି ପ୍ରତିମା, ହେ କଳ୍ପଦ୍ରୁମ ଭୁଲ୍ୟ ବାଞ୍ଛିତ ଲୋକଙ୍କ କାମନା ପୂର୍ଣ୍ଣକାରୀ, ହେ ମଙ୍ଗଳ ସାଧକ; ହେ ଗଙ୍ଗାବଂଶୀୟ ରାଜା (ଚୋଡ଼ଗଙ୍ଗ)ଙ୍କ ପ୍ରିୟ; ହେ ଗୌଡ଼ାଧିପ ପ୍ରଭୃତି ସାମନ୍ତ ରାଜାମାନଙ୍କ ମୁକୁଟମଣି; ହେ ଶତ୍ରୁକୁଳର ଉଚ୍ଛେଦକାରୀ ଓ ସାଧୁମାନଙ୍କ ପରିପାଳକ; ଆପଣଙ୍କ ଦର୍ଶନରେ ଅମ୍ଭେ ପରମ ସନ୍ତୋଷ ଲାଭ କରୁଛୁ ।"

ଉକ୍ତ ଶ୍ଳୋକର 'ଗାଙ୍ଗେୟ ବଂଶପ୍ରିୟଃ' ସମସ୍ତ ପଦକୁ କେହି କେହି ଗାଙ୍ଗେୟ ଗ୍ରାଫ୍ଙ୍କ ବଂଶପ୍ରିୟ ବୋଲି ବିକୃତ ଅର୍ଥ କରିଛନ୍ତି । ବାସ୍ତବରେ ଏ ଶ୍ଳୋକଟି କୌଣସି ରାଜ ପ୍ରଶସ୍ତିରୁ ଉଦ୍ଧାର କରି 'ସଦୁକ୍ତି କର୍ଣ୍ଣାମୃତ'ରେ ତାହା କବି ଜୟଦେବଙ୍କ ରଚିତ ଶ୍ଳୋକ ବୋଲି କୁହାଯାଇଛି । ଆମ୍ଭେ ଏ ମତଟି ଗ୍ରହଣ କରିବାକୁ ଅସମର୍ଥ । କାରଣ କବି ଜୟଦେବଙ୍କ ପରି ଜଣେ ସାଧୁ ବୈଷ୍ଣବ କୌଣସି ରାଜାଙ୍କର ପ୍ରଶସ୍ତି ଗାନ କରିଥିବା ଆଦୌ ସମ୍ଭବ ନୁହେଁ । ଅଧିକ କୌତୂହଳର ବିଷୟ ଏହି ଯେ ଡ଼ା. ପ୍ରଶାନ୍ତ କୁମାର ଦାସଗୁପ୍ତ ଉପରୋକ୍ତ ଶ୍ଳୋକର 'ଗାଙ୍ଗେୟ ବଂଶପ୍ରିୟା' ଶବ୍ଦକୁ ବଦଳାଇ "ଗାଙ୍ଗେୟ ବଙ୍ଗପ୍ରିୟ" ବୋଲି ତାଙ୍କର ଏକ ସମାଲୋଚନାମୂଳକ ପୁସ୍ତକ (Dr. P.K. Das Gupta. Jayadeva and some of his Contemporaries PP. 15-16)

ରାଜା ବିଜୟସେନଙ୍କ ଦେଓପାଡ଼ା ତାମ୍ରଶାସନର ପ୍ରଶସ୍ତି ଲେଖକ ଉମାପତି ଧର ଯେ ନିଶ୍ଚିତ ଭାବେ ବିଜୟସେନଙ୍କର ସଭା ପଣ୍ଡିତ ଥିଲେ, ଏଥିରେ ସନ୍ଦେହ ନାହିଁ । ସେ ମଧ୍ୟ ବିଜୟସେନଙ୍କ ପୁତ୍ର, ବଲ୍ଲାଳସେନ ଏବଂ ପୌତ୍ର ଲକ୍ଷ୍ମଣସେନଙ୍କ ରାଜତ୍ୱ କାଳରେ ମନ୍ତ୍ରୀ ରୂପେ ଶାସନଭାର ଗ୍ରହଣ କରିଥିଲେ । ସେ ବୃଦ୍ଧ ବୟସରେ ଲକ୍ଷ୍ମଣସେନଙ୍କ ମନ୍ତ୍ରୀ ରୂପେ ରହିଥିବାରୁ ଶାସନ କାର୍ଯ୍ୟରେ ତାଙ୍କର ଯଥେଷ୍ଟ ଦୁର୍ବଳତା ରହିଥିବା ସମ୍ଭବ । ତା' ନହେଲେ ମାତ୍ର ଅଠର ଜଣ ଅଶ୍ୱାରୋହୀଙ୍କ ସଙ୍ଗେ ବକ୍ତିୟାର୍ ଖିଲ୍‌ଜି ରାଜଧାନୀ ନଦିଆ ଅଧିକାର କରିବାକୁ ଆଦୌ ସମର୍ଥ ହୁଅନ୍ତେ ନାହିଁ ।

ଏଠାରେ କହିବା ଆବଶ୍ୟକ ଯେ, "ଆର୍ଯ୍ୟା ସପ୍ତଶତୀ"ର ଲେଖକ ଗୋବର୍ଦ୍ଧନାଚାର୍ଯ୍ୟ ତାଙ୍କ ଭ୍ରାତା ଉଦୟନ ଓ ବଳଭଦ୍ରଙ୍କ ଠାରୁ ସାହାଯ୍ୟ ପାଇଁ ସେହି

ଗ୍ରନ୍ଥଟି ପ୍ରାକୃତ ଭାଷାରୁ ସଂସ୍କୃତରେ ଅନୁବାଦିତ କରିଥିବାରୁ, ସେମାନଙ୍କୁ କୃତଜ୍ଞତା ଜ୍ଞାପନ କରିଥିଲେ । କବି ଉଦୟନ ଯେ ନିଶ୍ଚିତ ଭାବେ ଉତ୍କଳର ମହାରାଜା ଅନଙ୍ଗ-ଭୀମଦେବ (୨ୟ)ଙ୍କ ରାଜତ୍ୱ କାଳରେ ଅର୍ଥାତ୍ (୧୧୯୦-୧୧୯୮) ମଧ୍ୟରେ ମେଘେଶ୍ୱର ମନ୍ଦିର ପ୍ରଶସ୍ତି ଲେଖିଥିଲେ, ଏ ଦୃଷ୍ଟିରୁ ବିଚାର କଲେ ଜଣାଯାଉଛି ଯେ, ତାଙ୍କର ଜ୍ୟେଷ୍ଠ ଭ୍ରାତା ଗୋବର୍ଦ୍ଧନାଚାର୍ଯ୍ୟ ଅନ୍ତତଃ ୧୧୮୦ ଖ୍ରୀଷ୍ଟାବ୍ଦରେ ଉଦୟନଙ୍କ ସାହଚର୍ଯ୍ୟରେ 'ଆର୍ଯ୍ୟା ସପ୍ତଶତୀ' ଅନୁବାଦ କରିଥିବେ । ଯେଉଁ ସମୟରେ ବୃଦ୍ଧ ରାଜା ଲକ୍ଷ୍ମଣସେନ ନଦିଆରେ ରହି ରାଜତ୍ୱ କରୁଥିଲେ, ସେତେବେଳେ ଅର୍ଥାତ୍ ୧୧୮୦ ଖ୍ରୀଷ୍ଟାବ୍ଦରେ ଉଦୟନ ନିର୍ଦ୍ଦିଷ୍ଟଭାବେ ଉତ୍କଳରେ ଅବସ୍ଥାନ କରି ତାଙ୍କ ଜ୍ୟେଷ୍ଠ ଭ୍ରାତା ଗୋବର୍ଦ୍ଧନାଚାର୍ଯ୍ୟଙ୍କୁ ସାହାଯ୍ୟ କରୁଥିବା ସମ୍ଭବ । ସୁତରାଂ ସୁଦୂର ନଦିଆର ରାଜସଭାରେ ଗୋବର୍ଦ୍ଧନାଚାର୍ଯ୍ୟଙ୍କ ଉପସ୍ଥିତି କେତେଦୂର ସମ୍ଭବ ତାହା ବିଚାର କରିବାକୁ ହେବ ।

'ସଦୁକ୍ତି କର୍ଣ୍ଣାମୃତ' ଗ୍ରନ୍ଥଟି ସଂକଳନ କରିବାକୁ ଯାଇ ଶ୍ରୀଧର ଦାସ ଯେ କି ଲକ୍ଷ୍ମଣ ସେନଙ୍କ ସଭା ପଣ୍ଡିତ ରୂପେ ରହିଥିଲେ ଏବଂ ତାଙ୍କର ସେହି ଗ୍ରନ୍ଥରେ ଜୟଦେବଙ୍କ 'ଗୀତଗୋବିନ୍ଦ'ରୁ ୭୨ଟି ଶ୍ଳୋକ ଉଦ୍ଧାର କରିଥିଲେ, ସେ କାହିଁକି ଗୋବର୍ଦ୍ଧନାଚାର୍ଯ୍ୟଙ୍କ ପରି ଜଣେ ରସଜ୍ଞ ପଣ୍ଡିତଙ୍କର "ଆର୍ଯ୍ୟା ସପ୍ତଶତୀ"ରୁ ଗୋଟିଏ ହେଲେ ଶ୍ଳୋକ ଉଦ୍ଧାର କଲେ ନାହିଁ, ଅଥଚ 'ଗୀତଗୋବିନ୍ଦ' ଶ୍ଳୋକରୁ (ବାଚଃ ପଲ୍ଲବୟତି···) କିଣ୍ଟିସୟରେ ତାଙ୍କ ନାମ ସେ ଦେଖିପାରିଥାନ୍ତେ, ଯଦି ଶଂସିତ ଶ୍ଳୋକଟି ପରବର୍ତ୍ତୀ କାଳରେ ପ୍ରକ୍ଷିପ୍ତ ହୋଇ ନଥାନ୍ତା । ଏହି ଜଟିଳ ପ୍ରଶ୍ନଗୁଡ଼ିକ ସମାଧାନ ନକରି "ଗୀତଗୋବିନ୍ଦ"ର ସେହି "ବାଚଃ ପଲ୍ଲବୟତି ଉମାପତି ଧର···" ଶ୍ଳୋକଟି ଜୟଦେବଙ୍କ ଲେଖନୀ ପ୍ରସୂତ ନୁହେଁ ବୋଲି ମତ ପ୍ରକାଶ କରିବା ଆଦୌ ସଙ୍ଗତ ନୁହେଁ ।

ଗୋବର୍ଦ୍ଧନାଚାର୍ଯ୍ୟ ତାଙ୍କ 'ଆର୍ଯ୍ୟା ସପ୍ତଶତୀ' ଗ୍ରନ୍ଥରେ ଲେଖିଛନ୍ତି—

"ଉଦୟନ ବଲଭଦ୍ରାଭ୍ୟାଂ ସପ୍ତଶତୀ ଶିଷ୍ୟ ସୋଦରାଭ୍ୟାଂ ମେ ।
ଦ୍ୟୌରିବ ରବିଚନ୍ଦ୍ରାଭ୍ୟାଂ ପ୍ରକାଶିତ ନିର୍ମଳୀ କୃତ୍ୟା ।" †

ବଲଭଦ୍ର ଏବଂ ଉଦୟନ, ଉଭୟେ ଗୋବର୍ଦ୍ଧନାଚାର୍ଯ୍ୟଙ୍କ ଭ୍ରାତା । ତେଣୁ ସେ ଦୁହେଁ ଗୋବର୍ଦ୍ଧନାଚାର୍ଯ୍ୟଙ୍କୁ ସାହାଯ୍ୟ କରିଥିଲେ । ବଲଭଦ୍ରଙ୍କ ପ୍ରଣୀତ କୌଣସି ଗ୍ରନ୍ଥ ପ୍ରକଟିତ ହୋଇନାହିଁ । କିନ୍ତୁ କବି ଉଦୟନଙ୍କ ନାମ ଓଡ଼ିଶାରୁ ପ୍ରାପ୍ତ ଦୁଇଟି ଶିଳାଲେଖରୁ ଅର୍ଥାତ୍ ମେଘେଶ୍ୱର ମନ୍ଦିରସ୍ଥ ଶିଳାଲେଖ ଏବଂ କଟକ ଜିଲ୍ଲାର କିଆଲି ଗ୍ରାମସ୍ଥ ଶୋଭନେଶ୍ୱର ମନ୍ଦିରସ୍ଥ ଶିଳାଲେଖରୁ ପ୍ରକଟିତ ହେଉଛି । ପ୍ରଥମ ଶିଳାଲେଖଟି

---

† "ଆର୍ଯ୍ୟା ସପ୍ତଶତୀ" ଶ୍ଳୋକ ନମ୍ବର ୨୦ ଦ୍ରଷ୍ଟବ୍ୟ

ଉତ୍କଳର ମହାରାଜା ଚୋଡ଼ଗଙ୍ଗଙ୍କ ଚତୁର୍ଥ ପୁତ୍ର ଅନଙ୍ଗଭୀମ ଦେବ (୧ମ) (ଖ୍ରୀ ୧୧୯୦-୯୧) ଙ୍କ ରାଜତ୍ୱ କାଳରେ ରାଜାଙ୍କ ଆଦେଶକ୍ରମେ ରଚିତ ହୋଇଥିବାର ଜଣାଯାଏ। ତେବେ ଯେଉଁ ମନ୍ଦିରଟି (ଶକ ୧୧୦୪) ୧୧୮୨ ଖ୍ରୀଷ୍ଟାବ୍ଦରେ ନିର୍ମିତ ହୋଇଥିଲା, ସେତେବେଳେ ଚୋଡ଼ଗଙ୍ଗଙ୍କର ତୃତୀୟ ପୁତ୍ର ରାଜରାଜଦେବ (୨ୟ) (ଖ୍ରୀ ୧୧୭୦-୧୧୯୦) ଉତ୍କଳରେ ରାଜତ୍ୱ କରୁଥିଲେ । ତେଣୁ ମନ୍ଦିରଟି ନିର୍ମାଣ ହେବାର ଅନ୍ତତଃ ଆଠ ବର୍ଷ ପରେ କବି ଉଦୟନ ସେଥିର ପ୍ରଶସ୍ତି ଶ୍ଳୋକଗୁଡିକ ରଚନା କରିଥିବା ସ୍ପଷ୍ଟ ହେଉଛି । ସେଥିରେ କବି ନିଜର ନାମ ନିମ୍ନୋକ୍ତ ଶ୍ଳୋକରେ ପ୍ରକାଶ କରିଛନ୍ତି —

"ଉଦୟନ କବି ପ୍ରତ୍ୟାଦେଶାତ୍ ପ୍ରଶସ୍ତି ବିଳାସିନୀଂ
ସ୍ଖଳିତ ପଦନ୍ୟାସୈଃ ଶଶ୍ୱଦତ୍ୟ ମନୋରମାମ୍ ।
ଧ୍ୱନିଭିରନିଂଶ କର୍ଣ୍ଣେ ଶ୍ଳିଷ୍ଟାମଲଂ କୃତ
ହାରିଣୀମତ ରସତସ୍ଥା ଶଯ୍ୟାସ୍ଥିତାଂ ପ୍ରସାଧିତ ବାନିମାମ୍" (୧)

କବିଙ୍କ ଜ୍ୟେଷ୍ଠ ଭ୍ରାତା ଗୋବର୍ଦ୍ଧନାଚାର୍ଯ୍ୟଙ୍କ 'ଆର୍ଯ୍ୟା ସପ୍ତଶତୀ' ଗ୍ରନ୍ଥରେ ପ୍ରବର୍ତ୍ତିତ 'ଆର୍ଯ୍ୟାଛନ୍ଦ' ଅନୁକରଣରେ ଏ ଶ୍ଳୋକଟି ରଚିତ ହୋଇଥିବା ଜଣାଯାଏ ।

କବି ଉଦୟନଙ୍କ ରଚିତ ଦ୍ୱିତୀୟ ଶିଳାଲେଖଟି କଟକ ଜିଲ୍ଲା ନିଆଳି ଗ୍ରାମରେ ଥିବା ଶୋଭନେଶ୍ୱର ମନ୍ଦିରରେ ରାଜା ବୈଦ୍ୟନାଥଙ୍କ ପ୍ରଶସ୍ତି ଯୁକ୍ତ ଶିଳାଲେଖ ବିଦ୍ୟମାନ । (୨)

ସେଥିର ୨୩ ନମ୍ବର ଶ୍ଳୋକ ନିମ୍ନରେ ଉଦ୍ଧୃତ ହେଲା—

"ନୈହାନନ୍ଦ ଜଳ ପ୍ରଣାଳ ସରଣିଂ କର୍ଣ୍ଣଦ୍ୱୟୋ ଶୃଣ୍ୱତା
ସ୍ୱାତ୍ୟମ୍ଭୋ ଲହର୍ଷଂ ମନଃ କୁମୁଦନୀ ଚୈତନ୍ୟଚନ୍ଦ୍ର ତ୍ୱିଷମ୍ ।
ମୂର୍ଦ୍ଧାନ୍ତାଷ୍ଟବ ପଣ୍ଡିତାଂ କବି ସଭା କଣ୍ଠାବଲମ୍ବି ସ୍ରଜଂ
ଧୀରେଣୋଦୟନେନ ପ୍ରଶସ୍ତିମତୁଳାଂ ତତ୍ ପ୍ରେରିତ ଶ୍ଚକ୍ରବାନ୍" ॥

ରାଜା ବୈଦ୍ୟନାଥଙ୍କ ଆଦେଶକ୍ରମେ ଏହି ରାଜପ୍ରଶସ୍ତିରେ ଆଲଙ୍କାରିକ ଶ୍ଳୋକଟି କବିନ୍ଦ୍ର ଉଦୟନ ରଚନା କରିଥିଲେ ।

---

(୧) E.P. Ind., Vol VI, P 200 f; In Orissa, Vol III, Pt II, P 336

(୨) J.B.R.S., Vol XVII, P. 481; In. Orissa Vol III, Pt II P 238-347 ff.

ଉପରୋକ୍ତ ଦୁଇଟି ଅଭିଲେଖରୁ ଜଣାଯାଇଛି ଯେ ଖ୍ରୀ. ୧୨ଶ ଶତାବ୍ଦୀ ଶେଷରେ କବି ଉଦୟନ ଏକ ପ୍ରସିଦ୍ଧ କବି ରୂପେ ରହିଥିଲେ । ସେତେବେଳେ ସେ ଜୟଦେବଙ୍କ ସୁପ୍ରସିଦ୍ଧ ସଂସ୍କୃତ କାବ୍ୟ 'ଗୀତଗୋବିନ୍ଦ'ର 'ଭାବ ବିଭାବନୀ' ନାମକ ଟୀକା ସର୍ବପ୍ରଥମେ ଲେଖିଥିଲେ । ଶ୍ରୀ ହର୍ଷଙ୍କ 'ନୈଷଧ' କାବ୍ୟର 'ଉଦୟନକର୍ତ୍ତା' ନାମକ ଟୀକା ମଧ୍ୟ ସେ ଲେଖିଥିଲେ । ସେହି 'ଟୀକା'ଟି ଜାମ୍ମୁ ଓ କାଶ୍ମୀର ଠାରୁ ୧୮୯୪ ସାଲରେ ସେଥିର ବିବରଣୀ ଏମ୍. ଏ. ଷ୍ଟାଇନ୍ (M. A. Stein) ତାଙ୍କ 'Catalogue'ର ୨୮ ପୃଷ୍ଠାରେ ୧୮୯୪ ରେ ଉଲ୍ଲେଖ କରିଛନ୍ତି । କିନ୍ତୁ ତାଙ୍କର 'ଭାବବିଭାବିନୀ' (୧) ଟୀକା ଅଦ୍ୟାପି ପ୍ରକାଶ ହୋଇ ନଥିବାରୁ ତାଙ୍କ ସମ୍ପର୍କରେ ବିଶେଷ କିଛି ବିବରଣୀ ଜଣାଯାଇ ନାହିଁ । ସମ୍ଭବତଃ, ତାଙ୍କର ଜ୍ୟେଷ୍ଠ ଭ୍ରାତା ଗୋବର୍ଦ୍ଧନାଚାର୍ଯ୍ୟ ଆର୍ଯ୍ୟା ଛନ୍ଦରେ "ଆର୍ଯ୍ୟା ସପ୍ତଶତୀ" ଲେଖିଲାବେଳେ ମହାକବି ହାଲଙ୍କ ପ୍ରାକୃତ ଭାଷାରେ ରଚିତ "ସତ୍ତସଇ"ରୁ ଅନୁବାଦ କରି ଯେଉଁ କାବ୍ୟ ସେ ରଚନା କରିଥିଲେ, ସେଥିରେ କବି ଉଦୟନ ସାହାଯ୍ୟ କରିଥିବା କଥା ଉଲ୍ଲେଖ କରାଯାଇଛି । (୨) ଜୟଦେବଙ୍କ 'ଗୀତଗୋବିନ୍ଦ' ସେତେବେଳେ ନିଶ୍ଚିତ ଭାବେ ଉତ୍କଳରେ ପ୍ରସିଦ୍ଧ ଲାଭ କରିଥିଲା । ତେଣୁ ଗୋବର୍ଦ୍ଧନାଚାର୍ଯ୍ୟ ଲେଖିଥିବା "ପ୍ରାକ୍ ପ୍ରତ୍ୟକ୍ ପୃଥ୍ୱୀ ଭୃତୋ....ପରିଷଦ..." ପ୍ରଭୃତି ଶ୍ଲୋକଟି କେଶବ ମିଶ୍ରଙ୍କ 'ଅଳଙ୍କାର ଶେଖର' ଗ୍ରନ୍ଥରେ ପ୍ରକଟିତ କରାଯାଇଛି । ଏ ବିଷୟ ଉପରେ ତୃତୀୟ ପରିଚ୍ଛେଦରେ ବର୍ଣ୍ଣିତ ହୋଇଅଛି ।

ଏଥିର ଦ୍ୱିତୀୟ ପରିଚ୍ଛେଦ ଆରମ୍ଭରେ ଲୁହାଯାଇଛି ଯେ, କବି ଜୟଦେବ ପ୍ରଥମେ ମହାରାଜା ଚୋଡଗଙ୍ଗ ଦେବଙ୍କ ଅବସର ସମୟରେ ଶ୍ରୀ ପୁରୁଷୋତ୍ତମ କ୍ଷେତ୍ରରେ ଶ୍ରୀ ପୁରୁଷୋତ୍ତମଙ୍କ ମନ୍ଦିର ସମ୍ମୁଖରେ 'ଗୀତଗୋବିନ୍ଦ' (କୃଷ୍ଣ ଲୀଳା) ନାଟକ ଦର୍ଶିଣରୁ ସମାଗତ ଗାନ-ସମ୍ପ୍ରଦାୟଙ୍କ ଦ୍ୱାରା ଅଭିନୀତ କରାଇଥିଲେ । ଆଉ ମଧ୍ୟ ସେ ତାଙ୍କର ଶିଷ୍ୟା ପ୍ରେମୋତ୍ତମଦେବୀ ଓ ତାଙ୍କ ପିତା କୋମିନାୟକଙ୍କ ସଙ୍ଗେ କୂର୍ମପାଟକରୁ ଉତ୍କଳକୁ ଆସି ଚୋଡଗଙ୍ଗଙ୍କ ଦ୍ୱିତୀୟ ପୁତ୍ର ରାଘବ ଦେବଙ୍କ ରାଜତ୍ୱ କାଳରେ ଭୁବନେଶ୍ୱରସ୍ଥ ଶ୍ରୀ ଲିଙ୍ଗରାଜ ମନ୍ଦିରକୁ ଯାତ୍ରା କରିଥିଲେ । ସେତେବେଳେ ତାଙ୍କ ବୟସ ପ୍ରାୟ ୭୦ ବର୍ଷ ହୋଇଥିବା ସମ୍ଭବ । ତେଣୁ ସେ ଜଣେ ପ୍ରସିଦ୍ଧ 'ସାଧୁ ପ୍ରଧାନ' ରୂପେ ଶ୍ରୀକୂର୍ମ ପାଟକରେ ସମ୍ମାନିତ ହୋଇଥିଲେ । ସୁତରାଂ ତାଙ୍କ ପ୍ରଣୀତ ରାଧାକୃଷ୍ଣ ଲୀଳା ଉତ୍କଳରେ ପ୍ରଥମେ ଆଦୃତ ହେବାରୁ ଖ୍ରୀ. ୧୨ଶ ଶତାବ୍ଦୀ ଶେଷରେ କବି ଉଦୟନ 'ଗୀତ-

(୧) Catalogue of Sanskrit Mss. of Jammu, P. 28.

(୨) "ଉଦୟନ ବଳଭଦ୍ରାଭ୍ୟାଂ ସପ୍ତଶତୀ ଶିଷ୍ୟ-ସୋଦରାଭ୍ୟାଂ ନଃ
ଦ୍ୟୌରିବ ରବିଚନ୍ଦ୍ରାଭ୍ୟାଂ ପ୍ରକାଶିତା ନିର୍ମଳୀ କୃତା" ।

ଗୋବିନ୍ଦ'ର ପ୍ରଥମ ଟୀକା ଲେଖିଥିବା ସମ୍ଭବ । ସେହି ଟୀକା ପରେ ପଣ୍ଡିତ ନାରାୟଣ ଦାସ ବୋଧହୁଏ ସେଥିର କେତେକ ଅବାନ୍ତର ଅଂଶ ସଂଶୋଧନ କରି 'ସର୍ବାଙ୍ଗ ସୁନ୍ଦରୀ' ନାମରେ ଅନ୍ୟ ଏକ ଟୀକା ଖ୍ରୀ ୧୩ଶ କିମ୍ବା ୧୪ଶ ଶତାବ୍ଦୀରେ ଲେଖିଥିଲେ । ପଣ୍ଡିତ ନାରାୟଣ ଦାସଙ୍କ ଟୀକା (ସର୍ବାଙ୍ଗ ସୁନ୍ଦରୀ)ର ଗୋଟିଏ ପୋଥି ଓଡ଼ିଶାରୁ ସଂଗୃହୀତ ହୋଇଛି ଏବଂ ତାହା ଓଡ଼ିଶା ସଂଗ୍ରହାଳୟର ପୋଥି ବିଭାଗରେ ରକ୍ଷିତ ଅଛି । ପଣ୍ଡିତ ନାରାୟଣ ଦାସ ହେଉଛନ୍ତି ସୁପ୍ରସିଦ୍ଧ 'ସାହିତ୍ୟ ଦର୍ପଣ'ର ପ୍ରଣେତା କବିରାଜ ବିଶ୍ୱନାଥଙ୍କ ବୃଦ୍ଧ ପ୍ରପିତାମହ । ତେଣୁ ସେ ନିଶ୍ଚିତ ଭାବେ ୧୩ଶ କିମ୍ବା ୧୪ଶ ଶତାବ୍ଦୀରେ ଜୀବିତ ଥିବା ନିରୂପଣ କରାଯାଇଛି ।

ଆଗରୁ କୁହାଯାଇଛି ଯେ,'ଗୀତଗୋବିନ୍ଦ'ର "ବାଚଃ ପଲ୍ଲବୟତ୍ୟୁମାପତି ଧରଃ ..." ପ୍ରଭୃତି ଶ୍ଳୋକଟି ପ୍ରକ୍ଷିପ୍ତାଂଶ କିନ୍ତୁ ଡା. ପ୍ରଶାନ୍ତ କୁମାର ଦାସଗୁପ୍ତ ଲେଖିଛନ୍ତି—

Attempts also were made of disprove the genuineness of the verse (Gita Govinda) under discussion as it has been stated that the earliest commentary Sarvanga Sundari does not mention it. But Rasikapriya commentary of 'Gita Govind', said to be the earliest commentary by Rana Kumbhakarna and innumerable other copies of manuscript of 'Gita Govinda' quote it and therefore its genuineness cannot be doubted. (୯)

ଡା. ଦାସଗୁପ୍ତ ରାଣା କୁମ୍ଭକର୍ଣ୍ଣ ଯେ କି, 'ଗୀତଗୋବିନ୍ଦ'ର 'ରସିକପ୍ରିୟା' ଟୀକା ଲେଖିଥିଲେ, ତାଙ୍କର ସେହି ଟୀକାଟି ସର୍ବପ୍ରଥମ ବୋଲି ଦାବୀ କରନ୍ତି । କିନ୍ତୁ ରାଣା କୁମ୍ଭକର୍ଣ୍ଣଙ୍କ ଖ୍ରୀ ୧୫ଶ ଶତାବ୍ଦୀର ଶେଷାର୍ଦ୍ଧ । ଏଦୃଷ୍ଟିରୁ ଆମ୍ଭେ ସ୍ଥିର କରୁଛୁ ଯେ, କବିରାଜ ବିଶ୍ୱନାଥଙ୍କ ବୃଦ୍ଧ ପ୍ରପିତାମହ ନାରାୟଣ ଦାସ, ଯେ କି 'ଗୀତଗୋବିନ୍ଦ'ର ସର୍ବାଙ୍ଗସୁନ୍ଦରୀ ଟୀକା ଉତ୍କଳରେ ଲେଖିଥିଲେ । ସେ ନିଶ୍ଚିତ ଭାବେ ରାଣା କୁମ୍ଭକର୍ଣ୍ଣଙ୍କ ଏକ ଶତାଧିକ ବର୍ଷ ପୂର୍ବେ ଜୀବିତ ଥିଲେ । ତେଣୁ ତାଙ୍କର 'ସର୍ବାଙ୍ଗ-ସୁନ୍ଦରୀ ଟୀକା' ଅନ୍ୟାନ୍ୟ ପ୍ରକାଶିତ ଟୀକା ମଧ୍ୟରେ ସର୍ବପ୍ରଥମ ବୋଲି ସ୍ଥିର କରାଯାଇଛି । ଏ ସମ୍ପର୍କରେ ଏଥିର ତୃତୀୟ ପରିଚ୍ଛେଦରେ ଦ୍ରଷ୍ଟବ୍ୟ ।

ରାଣା କୁମ୍ଭକର୍ଣ୍ଣ ତାଙ୍କର 'ରସିକପ୍ରିୟା' ଟୀକାରେ ମଧ୍ୟ "ବାଚଃ ପଲ୍ଲବୟତ୍ୟୁମାପତିଧର ....." ପ୍ରଭୃତି ଶ୍ଳୋକଟିକୁ "ପ୍ରକ୍ଷେପକ" ବୋଲି କୁହାଯାଇଛି । ଏହା

ବ୍ୟତୀତ ସତ୍ତ୍ୱ ଦୀପିକା (ସନ୍ଦର୍ଭ ଦୀପିକା) ଟୀକାରେ ଶଂସିତ ଶ୍ଳୋକଟି ଆଦୌ ଉଲ୍ଲେଖ କରାଯାଇ ନାହିଁ । (୧) ଧୃତଦାସଙ୍କ ସେହି ଟୀକାଟି (ସନ୍ଦର୍ଭ ଦୀପିକା) ନାରାୟଣ ଦାସଙ୍କ 'ସର୍ବାଙ୍ଗ ସୁନ୍ଦରୀ' ଟୀକାରେ ଉଲ୍ଲେଖ ଥିବାରୁ, ତାହା 'ଗୀତଗୋବିନ୍ଦର' ସର୍ବପ୍ରଥମ ପ୍ରକାଶିତ ଟୀକା ବୋଲି ବୁଝାଯାଇପାରେ । ବାସ୍ତବରେ ପ୍ରଥମ ଟୀକା ଲେଖିଥିଲେ କବି ଉଦୟନ, ରାଜରାଜଦେବ (୨ୟ)ଙ୍କ ରାଜତ୍ୱ ଶେଷରେ ଓ ତାଙ୍କ ପୁଅ ଅନଙ୍ଗଭୀମ (୨ୟ)ଙ୍କ ରାଜତ୍ୱ ଆରମ୍ଭରେ, ଅର୍ଥାତ୍ ୧୧୯୦ ଖ୍ରୀଷ୍ଟାବ୍ଦରେ । ସେତେବେଳେ ସେ ଭୁବନେଶ୍ୱରସ୍ଥ ମେଘେଶ୍ୱର ମନ୍ଦିରର ଶିଳାଲେଖ ପ୍ରଶସ୍ତି ରଚନା କରିଥିବା ପ୍ରସଙ୍ଗ ଆଗରୁ ବର୍ଣ୍ଣିତ ହୋଇଅଛି । ଏ ଦୃଷ୍ଟିରୁ ବିଚାର କଲେ ରାଘବଦେବଙ୍କ ରାଜତ୍ୱକାଳରେ ଅର୍ଥାତ୍ ୧୧୫୭-୧୧୭୧ ଖ୍ରୀଷ୍ଟାବ୍ଦ ବେଳେ ଖୋଦିତ ଲିଙ୍ଗରାଜ ମନ୍ଦିର ଶିଳାଲେଖରୁ ପ୍ରକଟିତ କୂର୍ମପାଟକର ପ୍ରସିଦ୍ଧ ସାଧୁ ପ୍ରଧାନ ଜୟଦେବ ଯେ ତାଙ୍କ ପରିଣତ ବୟସରେ ମଧ୍ୟ ଉତ୍କଳରେ ଉପସ୍ଥିତ ଥିଲେ, ଏକଥା ସ୍ପଷ୍ଟ ପ୍ରମାଣିତ ହୋଇଛି । ଏଣୁ କବି ଉଦୟନ ପ୍ରାୟ ୧୧୯୦ ଖ୍ରୀଷ୍ଟାବ୍ଦରେ 'ଗୀତଗୋବିନ୍ଦ'ର 'ଭାବ ବିଭାବିନୀ ଟୀକା' ଲେଖିଲାବେଳକୁ ଜୟଦେବ ବୋଧହୁଏ ଜୀବିତ ନଥିଲେ । ତଥାପି ତାଙ୍କ ବୃଦ୍ଧ ବୟସରେ ଉଦୟନଙ୍କ ଜ୍ୟେଷ୍ଠ ଭ୍ରାତା ଗୋବର୍ଦ୍ଧନାଚାର୍ଯ୍ୟ ସମ୍ଭବତଃ ଜୀବିତ ଥିବେ । ତଥାପି ସେ ତାଙ୍କ ଦୁଇ ଭ୍ରାତା ଉଦୟନ ଓ ବଳଭଦ୍ରଙ୍କ ସାହାଯ୍ୟରେ "ଆର୍ଯ୍ୟାସପ୍ତଶତୀ" କାବ୍ୟ ଲେଖିଲା ବେଳେ କବି ଜୟଦେବ ଜୀବିତ ଥିବା ସମ୍ଭବ ବୋଲି ଜଣାଯାଉ ନାହିଁ । ଏଣୁ ଆମ୍ଭେ କହିପାରୁ ଯେ, କବି ଉଦୟନ 'ଗୀତଗୋବିନ୍ଦ'ର ଟୀକା ଲେଖିବାକୁ ଯାଇ ସେଥିରେ ସ୍ୱୀୟ ଜ୍ୟେଷ୍ଠ ଭ୍ରାତାଙ୍କ ପ୍ରାଧାନ୍ୟ ବଢ଼ାଇବାକୁ ଯାଇ "ବାଚଃ ପଲ୍ଲବୟତ୍ୟୁମାପତିଧରଃ" ପ୍ରଭୃତି ଶ୍ଳୋକ ଯୋଗକରି ସେଥିର ତୃତୀୟ ପାଦରେ ଲେଖିଥିଲେ—

"ଶୃଙ୍ଗାରୋତ୍ତରସତ୍ପ୍ରମେୟରଚନୈରାଚାର୍ଯ୍ୟ ଗୋବର୍ଦ୍ଧନଃ" ଏ ସମ୍ପର୍କରେ ବିଶେଷତଃ ଜୟଦେବଙ୍କ ଜୀବିତକାଳ ତଥା ଉଦୟନ ଓ ଗୋବର୍ଦ୍ଧନାଚାର୍ଯ୍ୟଙ୍କ ଜୀବିତକାଳ ନିର୍ଣ୍ଣୟ କରିବା ପୁଣି ସେମାନେ କେଉଁ ଅଞ୍ଚଳରେ ରହୁଥିଲେ ସେ ବିଷୟ ସ୍ଥିର କଲେ ସ୍ପଷ୍ଟ ଜଣାଯିବ ଯେ, ବଙ୍ଗର ରାଜା ଲକ୍ଷ୍ମଣସେନ (ଖ୍ରୀ ୧୧୭୬-୧୨୦୫)ଙ୍କ ସଭା ପଣ୍ଡିତ ରୂପେ ଏମାନେ ରହିବା ସମ୍ଭବ ନୁହେଁ । ତେଣୁ ସେମାନଙ୍କ ଜୀବିତକାଳ ସମ୍ବନ୍ଧେ ବିଶ୍ଳେଷଣ କରି ନିମ୍ନରେ ଏକ ସମସାମୟିକ ବିବରଣୀ ଉଲ୍ଲେଖ କରାଗଲା—

---

(୧) କେତେକ ଐତିହାସିକଙ୍କ ମତରେ ଯେ ଖ୍ରୀ ୧୧୭୦-୧୧୯୧ ରେ ଲକ୍ଷ୍ମଣସେନ ରାଜତ୍ୱ କରିଥିଲେ । (ବଙ୍ଗଳା ବିଶ୍ୱକୋଷ) ଆଉ କେତେକଙ୍କ ମତରେ ତାଙ୍କ ରାଜତ୍ୱ ଖ୍ରୀ ୧୧୭୮-୧୨୦୪/୫ ମଧ୍ୟରେ ସମ୍ପନ୍ନ ହୋଇଥିଲା ବୋଲି ମତ ଦିଅନ୍ତି ।

| ଉତ୍କଳ ରାଜା | ବଙ୍ଗରାଜା | |
|---|---|---|
| (୧) ଚୋଡ଼ଗଙ୍ଗ (ଖ୍ରୀ. ୧୧୧୨-୧୧୪୨)<br>↓<br>(୨) କାମାର୍ଣ୍ଣବ (ଖ୍ରୀ ୧୧୪୨-୧୧୫୬ | ବିଜୟସେନ<br>ଖ୍ରୀ ୧୦୭୨-୧୧୧୯<br>↓<br>ବଲ୍ଲାଳସେନ<br>(ଖ୍ରୀ ୧୧୧୯-୧୧୬୭) | କବି ଜୟଦେବ<br>ସାଧୁ ପ୍ରଧାନ<br>ଜୟଦେବ<br>ଧୋଇ କବି |
| (୩) ରାଘବଦେବ (ଖ୍ରୀ. ୧୧୫୬-୧୧୭୦) | ଲକ୍ଷ୍ମଣସେନ<br>(ଖ୍ରୀ ୧୧୬୭-୧୨୦୫) | ମନ୍ତ୍ରୀ ଉମାପତିଧର |
| (୪) ରାଜରାଜଦେବ (୨ୟ) (ଖ୍ରୀ ୧୧୭୦-୧୧୯୦) | | କବି ଗୋବର୍ଦ୍ଧନ |
| (୫) ଅନଙ୍ଗଭୀମ ଦେବ ୨ୟ (ଖ୍ରୀ ୧୧୯୦-୧୧୯୮)<br>(୬) ରାଜରାଜଦେବ (୩ୟ) (ଖ୍ରୀ ୧୧୯୮-୧୨୧୧) | | କବି ଉଦୟନ |
| (୭) ଅନଙ୍ଗଭୀମ (୩ୟ) (୧୨୧୧ ଖ୍ରୀ-୧୨୩୮)<br>(୮) ନରସିଂହଦେବ (୧ମ) (ଖ୍ରୀ ୧୨୩୮-୧୨୬୪)<br>(୯) ଭାନୁଦେବ (୧ମ) (ଖ୍ରୀ ୧୨୬୪-୧୨୬୮) | | କବି ଉମାପତି |
| (୧୦) ନରସିଂହଦେବ (୨ୟ) (ଖ୍ରୀ ୧୨୭୮-୧୩୦୮)<br>(୧୧) ଭାନୁଦେବ (୨ୟ) (ଖ୍ରୀ ୧୩୦୮-୧୩୨୭) | | ନାରାୟଣ ଦାସ<br>ସର୍ବାଙ୍ଗ ସୁନ୍ଦରୀ ଟୀକାକାର । |



# ଷଷ୍ଠ ପରିଚ୍ଛେଦ

କବି ଜୟଦେବଙ୍କ ଜନ୍ମସ୍ଥାନ ସମ୍ପର୍କରେ 'ଗୀତଗୋବିନ୍ଦ'ର ତୃତୀୟ ସର୍ଗ ଦଶମ ଶ୍ଳୋକର ଦ୍ୱିତୀୟ ପାଦରେ ଲେଖାଅଛି—

"କେନ୍ଦୁବିଲ୍ୱ—ସମୁଦ୍ର ସମ୍ଭବ ରୋହିଣୀ ରମଣେନ" ।

ଅର୍ଥାତ୍ "ରୋହିଣୀ ରମଣ, ଚନ୍ଦ୍ର ଯେପରି ସମୁଦ୍ର ଗର୍ଭରୁ ଉଦିତ ହୁଅନ୍ତି, ସେପରି କେନ୍ଦୁବିଲ୍ୱରୁ ସେ ଉଦିତ ହୋଇଥିଲେ । ତାଙ୍କ ପିତାଙ୍କ ନାମ ଭୋଜଦେବ ଏବଂ ମାତାଙ୍କ ନାମ ବାମାଦେବୀ । (୧)

କେନ୍ଦୁବିଲ୍ୱ ଗ୍ରାମର ଅବସ୍ଥିତି ସମ୍ପର୍କରେ ବିଭିନ୍ନ ପଣ୍ଡିତ ଭିନ୍ନ ମତ ପ୍ରକାଶ କରିଅଛନ୍ତି । ବଙ୍ଗର କେତେକ ଐତିହାସିକ ପଣ୍ଡିତ ଜୟଦେବଙ୍କ ଜନ୍ମସ୍ଥାନ ଅଜୟ ନଦୀ ତଟସ୍ଥ ବୀରଭୂମିର ସୁରି-ସବ୍‌ଡିଭିଜନ୍ ଅନ୍ତର୍ଗତ ବୋଲି କହନ୍ତି । ଓଡ଼ିଶାରେ ଅକ୍ଷୟ ତୃତୀୟା ଦିନ ଜୟଦେବ-ଜୟନ୍ତୀ ପାଳିତ ହୁଏ । ପୌଷମାସ ସଂକ୍ରାନ୍ତି ଦିନ କିମ୍ବା ମାଘର ପ୍ରଥମ ଦୁଇ ଦିନ ଗୋଟିଏ ମେଳା କବି ଜୟଦେବଙ୍କ ସ୍ମରଣାର୍ଥେ ଅନୁଷ୍ଠିତ ହୁଏ । ସେହି କେନ୍ଦୁଲି ଗ୍ରାମରେ ଜୟଦେବଙ୍କ ସମାଧି ମଧ୍ୟ ଅଛି । (୨) ତେବେ ଜୟଦେବ କଣ ବୌଦ୍ଧ ବା ମୁସଲମାନ ଧର୍ମ ଗ୍ରହଣ କରିଥିଲେ, ଯାହାଫଳରେ ତାଙ୍କର ମୃତ ପିଣ୍ଡକୁ ଦାହ ନ କରି ସମାଧିରେ ପ୍ରୋଥିତ ହୋଇଥିଲା ? କେତେକ ବଙ୍ଗୀୟ ଲେଖକ ପ୍ରଶ୍ନ କରନ୍ତି ଯେ, ଯଦି ଓଡ଼ିଶାରେ ଜୟଦେବଙ୍କ ଜନ୍ମସ୍ଥାନ କେନ୍ଦୁଲି ଶାସନ ବୋଲି ଓଡ଼ିଆମାନେ ଦାବୀ କରିଥାନ୍ତେ, ତା' ହେଲେ ହଣ୍ଟର୍ ସାହେବ (W.W. Hunter) ୧୮୭୨ ସାଲରେ ଓଡ଼ିଶାର ଇତିହାସ ଲେଖିଲା ବେଳେ କାହିଁକି ସେ କଥା ଉଲ୍ଲେଖ କଲେ ନାହିଁ ? ଓଡ଼ିଶା ଇଂରେଜ ଶାସନଭୁକ୍ତ ହେଲା ୧୮୦୪ ସାଲରେ । ସେତେବେଳେ କଲିକତା ତାଙ୍କର ମୁଖ୍ୟ ରାଜଧାନୀ ହୋଇଥିଲା । ସେଠାରେ ବଙ୍ଗାଳୀମାନଙ୍କ ଉପରେ ଇଂରେଜମାନେ ହିନ୍ଦୁମାନଙ୍କ ଭାଷା, ସାହିତ୍ୟ, ଇତିହାସ ଓ

---

(୧) ଶ୍ରୀ ଭୋଜଦେବ ପ୍ରଭବସ୍ୟ ବାମାଦେବୀ ସୁତ ଶ୍ରୀ ଜୟଦେବସ୍ୟ
ପରାଶରାଦି ପ୍ରିୟବନ୍ଧୁ କଣ୍ଠେ ଶ୍ରୀ ଗୀତଗୋବିନ୍ଦ କବିତ୍ୱମସ୍ତୁ ।

(୨) Bengal Dist. Gazetter, Birbhum (1910)

ସାଂସ୍କୃତିକ କ୍ରିୟାକଳାପ ସମ୍ପର୍କରେ ବିଶେଷ ନିର୍ଭରଶୀଳ ଥିଲେ । ସୁତରାଂ ସଂସ୍କୃତ ଭାଷାର କ୍ରମବିକାଶ ତଥା ଇତିହାସ ବଙ୍ଗୀୟ ପଣ୍ଡିତମାନଙ୍କ ମତକୁ ସେମାନେ ଗ୍ରହଣ କରିଥିଲେ । ଏସ୍. କେ. ଦେ (S. K. De) ଇଂରାଜୀରେ ଲେଖା ହୋଇଥିବା "History of the Sanskrit literature"କୁ ଆଧାର କରି ୟୁରୋପୀୟ ପଣ୍ଡିତମାନେ ଯେଉଁ ଗବେଷଣାତ୍ମକ ଗ୍ରନ୍ଥମାନ ଲେଖି ପ୍ରକାଶ କରିଛନ୍ତି, ତାହାହିଁ ସତ୍ୟମୂଳକ ବିଷୟ ରୂପେ ଖ୍ରୀ. ୧୯ଶ ଶତାବ୍ଦୀରେ ଗୃହୀତ ହୋଇଥିଲା ।

ମୈଥିଳୀ କବି ଚନ୍ଦ୍ରଦତ୍ତ ନାଭାଜୀଙ୍କ 'ଭକ୍ତମାଳା' ଗ୍ରନ୍ଥକୁ ଆଧାର କରି ଖ୍ରୀ ୧୭ଶ ଶତାବ୍ଦୀରେ 'ଜୟଦେବ ଚରିତମ୍' ନାମକ ଗ୍ରନ୍ଥରେ ସେ ଲେଖିଛନ୍ତି—

"ଜଗନ୍ନାଥ ପୁରୀ ପ୍ରାନ୍ତେ ଦେଶେ ଚୈବୋତ୍କଳାଭିଧେ
କେନ୍ଦୁବିଲ୍ୱ ଇତି ଖ୍ୟାତେ ଗ୍ରାମୋ ବ୍ରାହ୍ମଣ ସଙ୍କୁଳ ।
ତତ୍ରୋତ୍କଳେ ଦ୍ୱିଜୋ ଜାତୋ ଜୟଦେବ ଇତି ଶ୍ରୁତଃ,
ବିଦ୍ୟାଭ୍ୟାସଃ ରତଃ ଶାନ୍ତଃ ପୁରୁଷୋତ୍ତମ ପୂଜକଃ ।"

ଉତ୍କଳ ଦେଶର ଶ୍ରୀ ଜଗନ୍ନାଥ-ପୁରୀ ପ୍ରାନ୍ତରେ କେନ୍ଦୁବିଲ୍ୱ ନାମକ ଯେଉଁ ବ୍ରାହ୍ମଣ ଶାସନଟି ବିଦ୍ୟମାନ ସେଠାରେ କବି ଜୟଦେବ ଜନ୍ମି ଥିଲେ । (Published by Venkateswara Press, Bombay) ଗ୍ୱାଲିୟରର କବି ନାଭାଜୀ ତାଙ୍କ 'ଭକ୍ତମାଳା' ଗ୍ରନ୍ଥ ହିନ୍ଦି ଭାଷାରେ ଲେଖି ସେଥିରେ ସେ ଭକ୍ତକବି ଜୟଦେବଙ୍କ ଜନ୍ମ ସ୍ଥାନଟି 'କେନ୍ଦୁବିଲ୍ୱ' ନାମକ ବ୍ରାହ୍ମଣ ଶାସନ ଉତ୍କଳ ଦେଶର ଅବସ୍ଥିତ ବୋଲି ସ୍ପଷ୍ଟ ଉଲ୍ଲେଖ କରିଛନ୍ତି । (୧) ଓଡ଼ିଶାର କବି ରାମଦାସ ମଧ୍ୟ 'ଦାର୍ଢ୍ୟତା ଭକ୍ତି' ନାମକ ଓଡ଼ିଆ ଭାଷାର ନବାକ୍ଷରୀ ଛନ୍ଦରେ ଯେଉଁ ଗ୍ରନ୍ଥଟି ରଚନା କରିଛନ୍ତି ସେଥିରେ ସେ ଜୟଦେବଙ୍କ ଜନ୍ମସ୍ଥାନ ଉତ୍କଳର କେନ୍ଦୁଲୀ ଗ୍ରାମ ବୋଲି ନିର୍ଦ୍ଦେଶ କରିଛନ୍ତି । (୨)

ତେଣୁ ଖ୍ରୀ ୧୯ଶ ଶତାବ୍ଦୀର ଓଡ଼ିଶା ଇତିହାସ ଲେଖକ ହଣ୍ଟର ସାହେବଙ୍କ ବହୁ ପୂର୍ବରୁ ହିନ୍ଦି କବି ନାଭାଜୀ, ମିଥିଳା (ବର୍ତ୍ତମାନ ବିହାର ପ୍ରଦେଶ)ର କବି ରାମଦାସ ପ୍ରଭୃତି କବି ଜୟଦେବଙ୍କ ଜନ୍ମସ୍ଥାନ ଓଡ଼ିଶାରେ ସ୍ଥିର କରିଥିବା ଜଣାଯାଏ ।

(୧) Journal of Kalinga Historical Research Society (J K.H R S), Vol. I, PP 243-245

(୨) ଜନମ କେନ୍ଦୁବିଲ୍ୱ ଗ୍ରାମେ, ବ୍ରାହ୍ମଣ ଜୟଦେବ ନାମେ
ରଚିଲି ଅପୂର୍ବ ପ୍ରବନ୍ଧ, ନାମ ଯା ଶ୍ରୀ ଗୀତଗୋବିନ୍ଦ
ଶୁଣନ୍ତି ଆଜଯାଏ ନିତ୍ୟ ନିକଟେ ଯାହା ଜଗନ୍ନାଥ ।।

ଖ୍ରୀ ୧୪୯୭ରେ କବି ମାଧବ ପଟ୍ଟନାୟକ ମଧ୍ୟ ନବାକ୍ଷରୀ ଛନ୍ଦରେ 'ବୈଷ୍ଣବ ଲୀଳାମୃତ' ନାମକ ଗ୍ରନ୍ଥରେ ଜୟଦେବଙ୍କ ଜନ୍ମସ୍ଥାନ ପ୍ରାଚୀନଦୀ କୂଳରେ ଉତ୍କଳର ଶ୍ରୀକ୍ଷେତ୍ର (ପୁରୀ) ନିକଟବର୍ତ୍ତୀ (ବାଲିଅନ୍ତା) କେନ୍ଦୁଲୀ ଶାସନରେ ନିଆଳି ମାଧବ ସମୀପସ୍ଥ ସେହି ଗ୍ରାମରେ ଜନ୍ମଲାଭ କରିଥିଲେ ବୋଲି ଲେଖିଅଛନ୍ତି । ଯଥାଃ—

"ବିପ୍ର ସେ ଜୟଦେବ ନାମ,        କ୍ଷେତ୍ରବରକୁ ଆଗମନ ।
କେନ୍ଦୁଲୀ ଶାସନ ତା' ଗ୍ରାମ,        ପ୍ରାଚୀନଦୀର ତଟ ପୁଣ ॥
ଶ୍ରୀନୀଳମାଧବ ସମୀପେ,        ଭକ୍ତ କଲି ସେ ନାନାରୂପେ ।
ଶାସ୍ତ୍ର ପୁରାଣେ ବିଚକ୍ଷଣ,        କବିତ୍ୱ ମାର୍ଗେ ତାର ମନ ॥

କେନ୍ଦୁଲୀ ଶାସନଟି କବି ଜୟଦେବଙ୍କ ଜନ୍ମସ୍ଥାନ ହୋଇଥିବାରୁ ସେଠାରେ ଥିବା ବୁଣାକାରମାନେ ଶ୍ରୀପୁରୁଷୋତ୍ତମଙ୍କ ଲାଗି ସକାଶେ ପ୍ରସ୍ତୁତ କରିଥିବା ଖଣ୍ଡୁଆ, ପଟ୍ଟରଣ ଓ ଶାଢ଼ୀମାନଙ୍କରେ 'ଗୀତଗୋବିନ୍ଦ'ରୁ ନିମ୍ନୋକ୍ତ ଅଂଶମାନ ଉଦ୍ଧାର କରି ସେଥି ବୁଣିଥାନ୍ତି ଏବଂ ସେସବୁ ପୁରୀ ଶ୍ରୀମନ୍ଦିରରେ ଠାକୁରମାନଙ୍କ କାମରେ ଲାଗେ । ଯଥାଃ—

**ଦଶାବତାର-ଖଣ୍ଡୁଆରେଃ**—"ପ୍ରିୟେ ଚାରୁଶୀଳେ ମୁଂଚମୟି ମାନମନିଦାନଂ
ସପଦି ମଦନାନଲୋ ଦହତି ନାମ ମାନସମ୍ ।
ଦେହି ମୁଖ କମଳ ମଧୁପାନମ୍ ॥"

× × × ×

"ସ୍ମର ଗରଳ ଖଣ୍ଡନଂ ମମ ଶିରସି ମଣ୍ଡନଂ ଦେହି ପଦପଲ୍ଲବ ମୁଦାରମ୍ ।"

**ପଟ୍ଟରଣରେଃ**—"ଚନ୍ଦନ ଚର୍ଚ୍ଚିତ ନୀଳ କଳେବର
ପୀତବସନ ବନମାଳୀ ।
କେଳି ଚଳନ୍ମଣି କୁଣ୍ଡଳ ମଣ୍ଡିତ
ଗଣ୍ଡଯୁଗ ସ୍ମିତଶାଳୀ ॥"

**ଶାଢ଼ୀରେଃ**—"ଯମୁନାତୀର ବାନୀର ନିକୁଞ୍ଜେ ମନ୍ଦମାସ୍ଥିତମ୍
ପ୍ରାହ ପ୍ରେମଭରୋଦ୍‌ଭ୍ରାନ୍ତଂ ମାଧବଂ ରାଧିକା ସଖୀ ।"

ଦ୍ୱିଜ ଶ୍ରୀଧରଙ୍କ ରଚିତ 'କାଞ୍ଚନ ଲତା' ନାମକ ଓଡ଼ିଆ କାବ୍ୟରେ ନିମ୍ନୋକ୍ତ ଭାବେ କେନ୍ଦୁଲୀ-ଶାଢୀନାମ ଲେଖିଛନ୍ତିଃ—

"ସହଜେ ଦ୍ୱିଜ ନନ୍ଦନୀ ତେଜଧାମା କନକ କାନ୍ତି ।
କଳା କେନ୍ଦୁଲୀ ଶାଢ଼ୀଏ ଭିଡ଼ି ପିନ୍ଧିଛି ମୋତିଦନ୍ତୀ ॥"

ହଣ୍ଟରଙ୍କ ଓଡ଼ିଶା ଇତିହାସରେ ଏ କାବ୍ୟର ନାମ ଲେଖାଅଛି (Hunter's Orissa, Vol. II appendix IX P. 208 (୧)

ଏ ପ୍ରଥା ଅଦ୍ୟାପି ଶ୍ରୀମନ୍ଦିରରେ ପ୍ରଚଳିତ ଅଛି । ପଣ୍ଡିତ ଶ୍ରୀ ଗଣେଶ ପ୍ରସାଦ ପରିଜା କେନ୍ଦୁଲି ବା କେନ୍ଦୁବିଲ୍ୱ ସମ୍ବନ୍ଧରେ ତାଙ୍କର ଗୋଟିଏ ଓଡ଼ିଆ ପ୍ରବନ୍ଧ ("ଓଡ଼ିଶାର କବି ଜୟଦେବ")ରେ ନିମ୍ନ ପ୍ରକାରେ ଯେଉଁ ନୂତନ ତଥ୍ୟ ଦେଇଛନ୍ତି ତାହା ଅଧିକ ଗବେଷଣାସାପେକ୍ଷ ବୋଲି ଆମ୍ଭେ ମନେ କରୁଛୁ । ସେ ଲେଖିଛନ୍ତି:— "ପ୍ରାଚୀନ ତନ୍ତ୍ର ଅନୁସାରୀ (କେନ୍ଦୁଲି) ଗ୍ରାମସ୍ଥିତ କେନ୍ଦୁଗଛ ମୂଳରେ ମୁଗୁନି ପଥରରେ ନିର୍ମିତ ଗୋଟିଏ ଜାଗେଶ୍ୱର ମୂର୍ତ୍ତି ଏବଂ ବେଲଗଛ ମୂଳରେ ଗୋଟିଏ ଅମ୍ବିକା ମୂର୍ତ୍ତି ପୂଜା ପାଉଥିବାରୁ ଏହି ସ୍ଥାନ କେନ୍ଦୁବିଲ୍ୱ ନାମରେ ପ୍ରସିଦ୍ଧ । ଅମ୍ବିକା-ଦେବୀଙ୍କ ଦ୍ୱାରଦେଶରେ ଗୋଟିଏ ସଂକ୍ଷିପ୍ତ ଅଭିଲେଖ ରହିଛି । ତାହା "ଜୟଦେବ ହରେ" । ଏହି ମନ୍ଦିର ୧୧୧୨ ଶକାବ୍ଦ ବା ୧୧୯୦ ଖ୍ରୀଷ୍ଟାବ୍ଦରେ ଜୟଦେବଙ୍କ ସ୍ମୃତି ଉଦ୍ଦେଶ୍ୟରେ ନିର୍ମିତ ହୋଇଥିଲା । ସେହି ଦେବୀମନ୍ଦିରରେ ଦେବୀଙ୍କ ମହାପୂଜା ସମୟରେ ସପ୍ତଶତୀ ଚଣ୍ଡୀ ପାଠ କରାଯାଇ ପରେ 'ଗୀତଗୋବିନ୍ଦ' ପାଠ କରାଯାଏ । (୨) କେନ୍ଦୁଲିର ଅବସ୍ଥିତି ସଂପର୍କରେ ଉତ୍କଳୀୟ ପଣ୍ଡିତମାନଙ୍କ ମତକୁ ଖଣ୍ଡନ କରି କେତେକ ବଙ୍ଗୀୟ ପଣ୍ଡିତ କହନ୍ତି ଯେ, ପଶ୍ଚିମ ବଙ୍ଗର ବୀରଭୂମି ଜିଲ୍ଲାରେ ପ୍ରବାହିତ ଅଜୟନଦୀ ତଟରେ 'ଜୟଦେବ କେନ୍ଦୁଲି' ଅବସ୍ଥିତ । ସେଠାରେ କବି ଜୟଦେବ ଜନ୍ମଗ୍ରହଣ କରିଥିଲେ । ତେଣୁ ପୌଷମାସ ସଂକ୍ରାନ୍ତି ଦିନ ସେଠାରେ ହେଉଥିବା ମେଳାକୁ 'ଜୟଦେବ-ମେଳା' ବୋଲି କୁହାଯାଏ । (୩) କିନ୍ତୁ ଡା. ସୁକୁମାର ସେନ ତାଙ୍କ ବଙ୍ଗଳା ସାହିତ୍ୟର ଇତିହାସରେ ସେଥିର ପ୍ରତିବାଦ କରି ଲେଖିଛନ୍ତି:—

"ଅଜୟ୍ର ଧାରେ ବାଲୁତଟେ ପୌଷସଂକ୍ରାନ୍ତି ସ୍ଥାନେରେ ମେଲା ନିକଟେ ଯେ ଗ୍ରାମ ଆଛେ ତାହା କେନ୍ଦୁଲି ନୟ, ଏ ଖାନେ କେନ୍ଦୁଲିଗ୍ରାମ ଛିଲ ବଲିୟା କୋନ ପ୍ରମାଣ ନାଇ !" ସେ ଆଉ ମଧ୍ୟ ଲେଖିଛନ୍ତି—"ଚୈତନ୍ୟର ସମୟେ ଜୟଦେବ

---

(୧) ଖୁର୍ଦ୍ଧା ଇତିହାସ : କେଦାରନାଥ ମହାପାତ୍ର, ପୃ ୧୫୨

(୨) ଉତ୍କଳ ପ୍ରସଙ୍ଗ : ମଇ, ୧୯୯୧ (ଜୟଦେବ ବିଶେଷାଙ୍କ) ପୃ.୩ ଦ୍ରଷ୍ଟବ୍ୟ

(୩) ବୋଧହୁଏ 'ମକର ସଂକ୍ରାନ୍ତି' ଦିନ ତେଲେଙ୍ଗାମାନେ ଏବଂ ଆଦିବାସୀ ସମ୍ପ୍ରଦାୟ ଯେପରି 'ପାଣ୍ଡୁଗୁ' ନାମକ ଉତ୍ସବ ପାଳନ କରନ୍ତି ସେହି ଉତ୍ସବଟି ସେନବଂଶୀ-ମାନେ ପାଳନ କରୁଥିବେ ।

ସ୍ମୃତି ସମ୍ବଳିତ ମେଳାର କୌଣସି ଉଲ୍ଲେଖ ନାହିଁ ଏବଂ ଜୟଦେବଙ୍କର ଜନ୍ମସ୍ଥାନ ବା ବାସସ୍ଥାନ ରୂପେ କେନ୍ଦୁଲୀର ବା ଅନ୍ୟ କୌଣସି ଗ୍ରାମେର କୋଥାଓ ନାଇ ।''

କଲିକତା ବିଶ୍ୱବିଦ୍ୟାଳୟର ଅଧ୍ୟାପକ ଡ଼ା. ଆଶୁତୋଷ ଭଟ୍ଟାଚାର୍ଯ୍ୟ ବଙ୍ଗଳାର ସାପ୍ତାହିକ ପତ୍ରିକା 'ଯୁଗବାଣୀ' (ତା ୭-୭-୧୯୭୯)ରେ ପ୍ରକାଶିତ ଏକ ପ୍ରବନ୍ଧରେ ଲେଖିଛନ୍ତି—''ଜୟଦେବ ଛିଲେନ୍ ଉଡ଼ିସ୍ୟା ଏବଂ ବୀରଭୂମିର କେନ୍ଦୁଲୀତେ ଅନୁଷ୍ଠିତ ବାର୍ଷିକ ବାଉଲକ ମେଲା ଆସଲେ 'ବାଉଲ୍-ମେଲା' ଓ ଜୟଦେବର ଜନ୍ମେର ସଙ୍ଗେ କୋନ ସମ୍ପର୍କ ନେଇ । ଜୟଦେବ ଲକ୍ଷ୍ମଣସେନର ସଭାକବି ଛିଲେନ୍ ବଲେ ଏଯାବତ୍ ଯେ ସିଦ୍ଧାନ୍ତ ବିଦଗ୍ଧ ସମାଜେ ଗୃହୀତ ହୟେ ଛିଲ ତାଇ ଗ୍ରହଣଯୋଗ୍ୟ ନୟ । ଲକ୍ଷ୍ମଣସେନେର ଅନ୍ୟାନ୍ୟ କବିଦେର ସଙ୍ଗେ ଜୟଦେବ ନିଜେର ନାମକେ ଯୁକ୍ତ କରେଲେ ଓ ତିନି ଲକ୍ଷ୍ମଣସେନର ସଭାକବି ଛିଲେନ୍ ତା ପ୍ରମାଣିତ ହୟନା । ପ୍ରାଚୀନ ନିଦର୍ଶନ ସମ୍ଭୃତ କବିଦେର ନାମେର ସଙ୍ଗେ ନିଜେର ନାମ ଯୁକ୍ତ କରା ରୀତି ଓଖାନେ ଉଡ଼ିଶାୟ ପ୍ରଚଲିତ ହୟେଛେ ।''

କଲ୍ଲବଂଶୀୟ ପଣ୍ଡିତ ଡ଼ା: ପ୍ରସନ୍ନ କୁମାର ଦାସଗୁପ୍ତ ଓଡ଼ିଆମାନଙ୍କୁ ଦୋଷ ଦେଇ ତାଙ୍କ ପୁସ୍ତକରେ ଲେଖିଛନ୍ତି – If the Kenduli Sasana of Puri was popular at that time, Hunter would never have qualified the name of Jayadeva as the 'Beerabhum Poet" in the later part of 19th century.

This oder claims of Bengal is now being challenged by Orissan scholar." (୧)

ଅର୍ଥାତ୍ ''ଯଦି ପୁରୀର କେନ୍ଦୁଲୀ ଶାସନ ସେତେବେଳେ ଜନପ୍ରିୟ ହୋଇଥାନ୍ତା, ତା'ହେଲେ ଖ୍ରୀ ୧୯ଶ ଶତାବ୍ଦୀ ଶେଷରେ ହଣ୍ଟର୍ ସାହେବ ଜୟଦେବଙ୍କୁ 'ବୀରଭୂମି-କବି' ବୋଲି କଦାପି କହିନଥାନ୍ତେ ।''

ହଣ୍ଟର୍ ସାହେବଙ୍କ ବହୁ ପୂର୍ବରୁ ହିନ୍ଦି କବି ନାଭାଜୀ ଏବଂ ମିଥିଲାର କବି ଚନ୍ଦ୍ରଦତ୍ତ ସେମାନଙ୍କ ଗ୍ରନ୍ଥରେ କବି ଜୟଦେବ ଉତ୍କଳର କେନ୍ଦୁଲୀଗ୍ରାମର ବୋଲି ଲେଖିଥିଲେ । ଏହା ଆଗରୁ କୁହାଯାଇଛି ।

(୧) Jayadeva and some of his contemporaries; Cal. 1982, P 32.

ନବଦ୍ୱୀପରେ ଲୋକମୁଖରେ ପ୍ରଚଳିତ (କୌଣସି ଗ୍ରନ୍ଥରେ ନୁହେଁ) ନିମ୍ନୋକ୍ତ ଶ୍ଳୋକଟି ପରବର୍ତ୍ତୀ କାଳରେ ରଚିତ ହୋଇଥିବା ପ୍ରସଙ୍ଗ ସ୍ୱର୍ଗୀୟ କେଦାରନାଥ ମହାପାତ୍ର ସପ୍ରମାଣ କରି ସେଥିର ଅର୍ବାଚୀନତା ପ୍ରମାଣିତ କରିଅଛନ୍ତି ।

''ଗୋବର୍ଦ୍ଧନଶ୍ଚ ଶରଣୋ ଜୟଦେବ ଉମାପତିଃ ।
କବିରାଜଶ୍ଚ ରତ୍ନାନି ସମିତୌ ଲକ୍ଷ୍ମଣସ୍ୟ ଚ ।''

'ଗୀତ ଗୋବିନ୍ଦ'ର ସେହି ପ୍ରକ୍ଷିପ୍ତ (ବାଚଃ ପଲ୍ଲବୟତ୍ୟୁମାପତି ଧର......'' ଇତ୍ୟାଦି) ଶ୍ଳୋକଟିର ମୌଳିକତା ରକ୍ଷା ସକାଶେ ଏହି ଶ୍ଳୋକଟି କେହି ଆଧୁନିକ ପଣ୍ଡିତ ରଚନା କରିଥିବା ଜଣାଯାଏ ।

ରାଜା ଲକ୍ଷ୍ମଣସେନଙ୍କ ସଭାରେ ତଥାକଥିତ ପାଞ୍ଚଜଣ ଶ୍ରେଷ୍ଠକବି (କବିରତ୍ନ) ଥିବା ସମ୍ଭବ ନୁହେଁ ବୋଲି ପୂର୍ବପରିଚ୍ଛେଦରେ କୁହାଯାଇଛି । ବର୍ତ୍ତମାନ 'ପବନଦୂତ' (୧) ନାମକ ଖଣ୍ଡକାବ୍ୟର ଲେଖକ ଧୋଇ (ଧୋଇକ)ଙ୍କ ଜୀବିତ କାଳ ସମ୍ବନ୍ଧରେ ଆଲୋଚନା କରିବା ଆବଶ୍ୟକ । ମହାକବି କାଳିଦାସଙ୍କ ରଚିତ 'ମେଘଦୂତ'ର ଅନୁକରଣରେ ସେ 'ପବନ ଦୂତ' କାବ୍ୟ ରଚନା କରିଥିଲେ । ତାଙ୍କ ସମ୍ବନ୍ଧରେ ଏମ୍ ଭିଣ୍ଟାର୍‌ନିଜ୍ (M. Winternitz) ଲେଖିଛନ୍ତି—

"The Court of King Laksmanasena of Bengal, who came to the throne in 1119 A. D (?) too developed into a centre of poetry and learning Dhoi, Govardhana, and above all Jayadeva, the most famous poet of the Gita-Govinda fame."

ରାଜା ଲକ୍ଷ୍ମଣସେନ ଖ୍ରୀ ୧୧୧୯ରେ ଡ଼.ଡ଼. ଭଟ୍ଟାଚାର୍ଯ୍ୟଙ୍କ ମତାନୁସାରେ ଜନ୍ମଲାଭ କରିଥିଲେ । ତେଣୁ ଭିଣ୍ଟାର୍‌ନିଜ୍‌ଙ୍କ କାଳନିର୍ଣ୍ଣୟ ମନମୋହନ ଚକ୍ରବର୍ତ୍ତୀଙ୍କ ଭୂଲକୁ ଅନୁସରଣ କରି ୧୧୧୯ ଖ୍ରୀଷ୍ଟାବ୍ଦକି ଲକ୍ଷ୍ମଣସେନଙ୍କ ରାଜତ୍ୱ ଆରମ୍ଭ କାଳ ବୋଲି ସେ ଲେଖିଥିଲେ । ଏହା ପରେ ସଂଶୋଧିତ ହୋଇଯାଇଛି ।

ଏଠାରେ କହିବା ଆବଶ୍ୟକ ଯେ, ଧୋଇ କବିଙ୍କ ସେହି 'ପବନଦୂତ' କାବ୍ୟର ଗୋଟିଏ ଶ୍ଳୋକରେ ଲେଖାଅଛି—

---

(୧) ମନମୋହନ ଚକ୍ରବର୍ତ୍ତୀ, J.A.S B (N.S) II, 1906, P 15 ff.

"କଳିଙ୍ଗ ମ୍ୟାନୁସରନଗଣ୍ଡଂ ନାମତାଂ ରାଜଧାନୀ" ।

ଅର୍ଥାତ୍ ବାୟୁକୁ କୁହାଯାଇଛି ଯେ ସେ କଳିଙ୍ଗ ରାଜଧାନୀ (କଳିଙ୍ଗନଗର) ଦେଇଯିବା ଆବଶ୍ୟକ । ଏଥିରୁ ସ୍ପଷ୍ଟ ଉପଲବ୍ଧି ହେଉଛି ଯେ, ଧୋଇ କବିଙ୍କ ସମୟରେ 'କଳିଙ୍ଗ-ନଗର' କଳିଙ୍ଗର ରାଜଧାନୀ ହୋଇଥିଲା । ଓଡ଼ିଶା ଇତିହାସରୁ ସ୍ପଷ୍ଟ ଜଣାଯାଇଛି ଯେ ୧୧୧୨ ଖ୍ରୀଷ୍ଟାବ୍ଦରେ କଳିଙ୍ଗ ମହାରାଜା ଚୋଡ଼ଗଙ୍ଗଦେବ ଉତ୍କଳର ରାଜା କର୍ଣ୍ଣଦେବଙ୍କୁ ଯୁଦ୍ଧରେ ପରାସ୍ତ କରି କଳିଙ୍ଗ ସଂଗେ ଉତ୍କଳକୁ ମିଶାଇ ତାଙ୍କ ସାମ୍ରାଜ୍ୟ ବିସ୍ତାର କଲାପରେ ସେ ତାଙ୍କ ରାଜଧାନୀ କଳିଙ୍ଗ ନଗରରୁ ଉଠାଇ ନେଇ କଟକର ମହାନଦୀ କୂଳରେ ଅନ୍ୟ ଏକ ରାଜଧାନୀ 'ବାରଣାସୀ-କଟକ' ନାମରେ ପ୍ରତିଷ୍ଠା କରିଥିଲେ । ତେଣୁ 'କଳିଙ୍ଗ-ନଗର'ର ପ୍ରାଧାନ୍ୟ ୧୧୧୨ ଖ୍ରୀଷ୍ଟାବ୍ଦରୁ ଅସ୍ତମିତ ହେଲା । ଏପରି ସ୍ଥଳେ ଧୋଇ କବିଙ୍କ କାବ୍ୟଟି ନିଶ୍ଚିତଭାବେ ଲକ୍ଷ୍ମଣସେନଙ୍କ ରାଜତ୍ୱ ୧୧୭୨ ଖ୍ରୀଷ୍ଟାବ୍ଦରେ ଆରମ୍ଭ ହୋଇ ଥିବାର ଅନ୍ୟୂନ ଅର୍ଦ୍ଧଶତାବ୍ଦୀ ପୂର୍ବରୁ ଲେଖା ହୋଇଥିବା ସମ୍ଭବ । ଧୋଇ କବିଙ୍କ କାବ୍ୟରୁ ଆଉ ମଧ୍ୟ ଜଣାଯାଇଛି ଯେ, ଉତ୍କଳରେ ସୋମବଂଶୀୟ ରାଜାମାନଙ୍କ ରାଜଧାନୀ 'ଯଯାତି ନଗର' କଳିଙ୍ଗ (ଦକ୍ଷିଣ ଓଡ଼ିଶା) ଓ ସୁମ୍ହ (ପଶ୍ଚିମବଂଗ) ମଧ୍ୟରେ ଅବସ୍ଥିତ । (୧) ଯଦି 'ଯଯାତିନଗର' ଧୋଇଙ୍କ ସମୟରେ ନିଶ୍ଚିତଭାବେ ରହିଥିଲା, ତେବେ 'ସୁହ୍ମ' ବା ପଶ୍ଚିମବଂଗ ପାଳ ବଂଶୀୟ ରାଜାମାନଙ୍କ ଅଧୀନରେ ଥିଲା ଓ ଲକ୍ଷ୍ମଣସେନଙ୍କ ପିତାମହ ବିଜୟସେନ କିମ୍ବା ଚୋଡ଼ଗଙ୍ଗ ତାହା ଜୟ କରି ନ ଥିଲେ । ଏହି ଐତିହାସିକ ପରିପ୍ରେକ୍ଷୀରୁ ସ୍ପଷ୍ଟ ଜଣାଯାଉଛି ଯେ, ଧୋଇ କବି ଖ୍ରୀ. ୧୨୭୨ ବେଳେ ଜୀବିତ ଥିଲେ ବୋଲି କହିବା ଠିକ୍ ନୁହେଁ ।

ସ୍ୱର୍ଗୀୟ କେଦାରନାଥ ମହାପାତ୍ର ତାଙ୍କର ଗୋଟିଏ ଇଂରାଜୀ ପ୍ରବନ୍ଧରେ ଲେଖିଛନ୍ତି ଗଦା ଦ୍ୱିବେଦୀ (ଖ୍ରୀ ୧୫୫୩-୪)ଙ୍କର "ସମ୍ପ୍ରଦାୟ ପ୍ରଦୀପ" ନାମକ ଗ୍ରନ୍ଥ ଅନୁସାରେ ଜୟଦେବ ଉତ୍କଳରେ ଜନ୍ମିଥିବା ପ୍ରସଙ୍ଗ ମହାମହୋପାଧ୍ୟାୟ ପି. ଭି. କାନେ ତାଙ୍କ "History of Dharmasastra (Vol. I, P. 660)ରେ ଲେଖିଛନ୍ତି । ମହାରାଷ୍ଟ୍ରର କବି ମହୀପତି ତାଙ୍କ 'ଭକ୍ତ ବିଜୟ' ନାମକ ଗ୍ରନ୍ଥରେ ଜୟଦେବଙ୍କୁ ବ୍ୟାସଙ୍କ ଅବତାର ବୋଲି ବର୍ଣ୍ଣନା କରି ଶ୍ରୀଜଗନ୍ନାଥ ଧାମର ତି(କେ)ନ୍ଦୁବିଲ୍ୱ ଗ୍ରାମରେ ଜନ୍ମିଥିବା ଉଲ୍ଲେଖ କରିଛନ୍ତି ।

(୧) ଓଡ଼ିଶାର ଇତିହାସ (୧ମ ଖଣ୍ଡ), ପୃ ୫୩୭ ଦ୍ରଷ୍ଟବ୍ୟ

ଖ୍ରୀ. ୧୭ଶ ଶତାବ୍ଦୀ ଶେଷରେ, ଅର୍ଥାତ୍ ୧୬୯୨ ଖ୍ରୀଷ୍ଟାବ୍ଦରେ ବର୍ଦ୍ଧମାନର ତାତ୍କାଳୀନ ମହାରାଣୀ ନୈରି ଦେବୀଙ୍କ ଉଦ୍ୟମରେ ସେଠାରେ ରାଧାମାଧବଙ୍କ ମନ୍ଦିର ନିର୍ମିତ ହୋଇଥିଲା ।

ସେ ଥିଲେ ସେଠାର ମହାରାଜା କୀର୍ତ୍ତିଚନ୍ଦ୍ର ଦେବଙ୍କ ମାତା । କଥିତ ଅଛି ଯେ, ସେହି ବିଗ୍ରହଟି କେନ୍ଦୁଲି ଗ୍ରାମ ନିକଟସ୍ଥ ଶ୍ୟାମାରୂପାଗଡ଼ ଠାରେ, ମନ୍ଦିରଟି ଜୟଦେବଙ୍କ ସ୍ମୃତିରକ୍ଷା ସକାଶେ ଗଠିତ ହୋଇଥିଲା ବୋଲି କୁହାଯାଉଛି । କିନ୍ତୁ ଡା. ସୁକୁମାର ସେନ ସେଥିର ତୀବ୍ର ପ୍ରତିବାଦ କରି ତାଙ୍କର 'ବଙ୍ଗୀୟ ସାହିତ୍ୟର ଇତିହାସ' (Vol. I. P 41)ରେ ଲେଖିଛନ୍ତି ଯେ, ପୁରୀର ମାର୍କଣ୍ଡେଶ୍ୱର-ମନ୍ଦିର ନିକଟସ୍ଥ ପୁଷ୍କରିଣୀର ଘାଟ ନିର୍ମାଣ କରି ରାଜା କୀର୍ତ୍ତିଚନ୍ଦ୍ର ୧୬୬୭ ଶକାବ୍ଦ ବା ୧୭୪୧ ଖ୍ରୀଷ୍ଟାବ୍ଦରେ ସେଠାରେ ତାଙ୍କ ଇଷ୍ଟ ଦେବତା ରାଧାବିନୋଦଙ୍କର ବିଗ୍ରହ ଏକ କ୍ଷୁଦ୍ର ମନ୍ଦିର ନିର୍ମାଣ କରିଥିଲେ । ସେହି ଗୋପୀନାଥ ମନ୍ଦିରର ଦ୍ୱାରବନ୍ଧ ଉପରେ ନିମ୍ନୋକ୍ତ ଅଭିଲେଖଟି ଆମ୍ଭେ ପାଠ କରିଛୁ—

(୧) "(ଶ୍ରୀ) ଶୁଭମସ୍ତୁ [।।] ଶକାବ୍ଦ ୧୬୬୩
(୨) ଶ୍ରୀକୃଷ୍ଣଃ ।। ଶକାବ୍ଦେ [ଅ]ଗ୍ନିର ମଣ୍ଡିରୁ (ଶ)ଶିଖେ
(୩) ରତ୍ନେ ବ୍ୟଧାପୟତ୍ "ମାର୍କଣ୍ଡେୟ ହ୍ରଦାତ୍ ପ
(୪) ଙ୍କୋଙ୍କାରଂ ସୋପାନ ମତ୍ରପୋ" ହରେ କୃଷ୍ଣେନ
(୫) ନୈନ ସିଂହେନ କୀର୍ତ୍ତିଚନ୍ଦ୍ରନୃପ ଯସଃ (ଶଃ) ।। (୧)

୧୮୦୧ ଖ୍ରୀଷ୍ଟାବ୍ଦରେ ହରେକୃଷ୍ଣ ମୁଖୋପାଧ୍ୟାୟଙ୍କ ରଚିତ "ବୀରଭୂମି ବିବରଣୀ' ଗ୍ରନ୍ଥରେ ଲେଖାଅଛି ଯେ, ବୃନ୍ଦାବନର ନିମ୍ବାର୍କ ପନ୍ଥୀ ଶ୍ରୀ ରାଧାରମଣ ନାମକ ଜଣେ ମହନ୍ତ ବର୍ଦ୍ଧମାନ ରାଜାଙ୍କ ସାହାଯ୍ୟରେ ବର୍ଦ୍ଧମାନଠାରେ ଶ୍ରୀ ରାଧାବିନୋଦଙ୍କ ମନ୍ଦିର ନିକଟରେ ଗୋଟିଏ ମଠପ୍ରତିଷ୍ଠା କରିଥିଲେ । ତାଙ୍କର ଶିଷ୍ୟମାନେ ମଧ୍ୟ ରାଧାକୃଷ୍ଣଙ୍କ ଭକ୍ତ ହୋଇ ନିମ୍ବାର୍କ ପନ୍ଥୀ ରୂପେ ପରିଚିତ ଥିଲେ । ସେମାନେ ବୋଧହୁଏ ସେଠାରେ ଅନୁଷ୍ଠିତ ପୌଷ ସଂକ୍ରାନ୍ତି (ମକର) ମେଳାକୁ 'ଜୟଦେବ-ମେଳା' ନାମ ଦେଇଥିଲେ । ସେ ନିକଟରେ ସେମାନେ ଅନ୍ୟ ଜଣେ ବୈଷ୍ଣବ କବି 'କୃଷ୍ଣ କର୍ଣ୍ଣାମୃତ'ର ଲେଖକ ବିଲ୍ୱମଙ୍ଗଳଙ୍କ ସ୍ମୃତିରକ୍ଷା ପାଇଁ ବିଲ୍ୱମଙ୍ଗଳଢ଼ିପି ନାମରେ ଅଉ ଏକ ସ୍ଥାନକୁ ନାମିତ କରି ତାହା ବିଲ୍ୱମଙ୍ଗଳ ଜନ୍ମସ୍ଥାନ ବୋଲି ପ୍ରଚାର କରୁଥିଲେ । ବାସ୍ତବରେ ବିଲ୍ୱମଙ୍ଗଳ ଯେପରି ସେଠାରେ ଜନ୍ମି ନଥିଲେ, ସେପରି ଜୟଦେବଙ୍କ ଜନ୍ମସ୍ଥାନ ଅଜୟ ନଦୀତୀରସ୍ଥ କେନ୍ଦୁଲୀଗ୍ରାମ ଐତିହାସିକମାନଙ୍କ ପ୍ରଚାର ମାଧ୍ୟମରେ ଭ୍ରାନ୍ତ କରୁଥିବା

(୧) Inscriptions of the temples of Puri and origin of Sri Purusottama Jagannath, Vol. I pp. 89 90.

ଅନୁମେୟ । ଓଡ଼ିଶାର ଲବ୍ଧପ୍ରତିଷ୍ଠ ସାହିତ୍ୟିକ ସଚ୍ଚିଦାନନ୍ଦ ରାଉତରାୟ 'ଗୀତ ଗୋବିନ୍ଦ'ରେ ଥିବା ଗୋଟିଏ ଶ୍ଳୋକର ଉପଧା ମିଳନକୁ ଆଧାର କରି କବି ଜୟଦେବ ଓଡ଼ିଆ ନ ହୋଇ ବଙ୍ଗଳାରେ ଜନ୍ମ ଥିବା ଗୋଟିଏ ଶ୍ଳୋକର ଉପଧା ମିଳନକୁ ଆଧାର କରି କବି ଜୟଦେବ ଓଡ଼ିଆ ନ ହୋଇ ବଙ୍ଗଳାରେ ଜନ୍ମିଥିବା ସମ୍ଭବ ବୋଲି କହନ୍ତି । ସେହି ଶ୍ଳୋକଟି ହେଲା—

"କ୍ଷିତିରତି ବିପୁଳତରେ ତବ ତିଷ୍ଠତି ପୃଷ୍ଠେ
ଧରଣୀ ଧାରଣ କିଣ ଚକ୍ର ଗରିଷ୍ଠେ
କେଶବ, ଧୃତ କଚ୍ଛପ ରୂପ, ଜୟ ଜଗଦୀଶ ହରେ । (୧ମ ସର୍ଗ)

ଓଡ଼ିଆମାନେ 'ପୃଷ୍ଠେ' ଶବ୍ଦଟି ପ୍ରୁଷ୍ଠେ। ଉଚ୍ଚାରଣ କରନ୍ତି । କିନ୍ତୁ ବଙ୍ଗଳାରେ ତାହା "ପ୍ରିଷ୍ଟେ" ଉଚ୍ଚାରିତ ହୁଏ । ଶ୍ଳୋକର ଦ୍ୱିତୀୟ ପାଦ ଶେଷ ପାଦ 'ଗରିଷ୍ଟେ' ହୋଇଥିବାରୁ ପ୍ରଥମପାଦର ଶେଷ ଶବ୍ଦଟି ('ପୃଷ୍ଟେ') 'ଉପଧା ମିଳନ' ଦୃଷ୍ଟିରୁ ବଙ୍ଗୀୟ ଉଚ୍ଚାରଣ ଅନୁସାରେ ହୋଇଥିଲା । ତେଣୁ କବି ଜୟଦେବ ବଙ୍ଗଳାରେ ଜନ୍ମଗ୍ରହଣ କରିଥିଲେ ।

ଆମର ଶ୍ରଦ୍ଧେୟ କବି ସଚ୍ଚିରାଉତରାୟ ବୋଧହୁଏ ଜାଣି ନଥିବେ ଯେ, ସଂସ୍କୃତ ଭାଷାର 'ଋ' ସ୍ୱରଟି ଏକା ବଙ୍ଗରେ ନୁହେଁ, ଭାରତର ଅନ୍ୟାନ୍ୟ ପ୍ରଦେଶ-ମାନଙ୍କରେ ମଧ୍ୟ 'ରି' ରୂପେ ଉଚ୍ଚାରିତ ହେଉଛି । ଜୟଦେବ ଓଡ଼ିଶାରେ ଜନ୍ମଲାଭ କରିଥିଲେ ହିଁ ତାଙ୍କର ଶିକ୍ଷା ଓ କର୍ମକ୍ଷେତ୍ର ଥିଲା କଳିଙ୍ଗ ନଗର ନିକଟସ୍ଥ ଶ୍ରୀ କୂର୍ମକ୍ଷେତ୍ର, ଯେଉଁଠାରେ ରାମାନୁଜ, ମଧ୍ୱାଚାର୍ଯ୍ୟ ଓ ନିମ୍ବାର୍କଙ୍କ ମତର ପଣ୍ଡିତମାନେ ଦକ୍ଷିଣରୁ ଉଠିଆସି ସେଠାରେ ସଂସ୍କୃତ ସାହିତ୍ୟ ଓ ଧର୍ମଶାସ୍ତ୍ର ଶିକ୍ଷା ଦେଉଥିଲେ । ଆଜି ମଧ୍ୟ ସେଠାରେ "ଗାନ୍ଧର୍ବ ଶାସ୍ତ୍ର" ଶିକ୍ଷା ଦିଆଯାଉଥିଲା । ଦାକ୍ଷିଣାତ୍ୟର ସେହି ବିଦ୍ୱାନମାନଙ୍କ ସଂସର୍ଗରେ ରହି କବି ଜୟଦେବ ସଂସ୍କୃତ ଓ ଗାନ୍ଧର୍ବ ବିଦ୍ୟାରେ ସୁପଣ୍ଡିତ ହୋଇ 'ଗୀତ ଗୋବିନ୍ଦ' ରଚନା କରିଥିଲେ । ଖ୍ରୀ ୧୨ଶ ଶତାବ୍ଦୀର ଓଡ଼ିଆ ପ୍ରାକୃତ ଭାଷା ଉପରେ ସଂସ୍କୃତ ଭାଷାର କିଛି ପ୍ରଭାବ ପଡ଼ିଥିବାରୁ 'ପୃଷ୍ଠ' ଶବ୍ଦରୁ ପିଠି ଶବ୍ଦ ଜାତ ହୋଇଥିଲା । ଏଠାରେ ଆଉ ମଧ୍ୟ କୁହାଯାଇପାରେ ଯେ, କବି ଜୟଦେବଙ୍କ ଗୀତଗୁଡ଼ିକରେ 'ଉପଧା-ମିଳନ' ଅନୁସୃତ ହୋଇଥିଲେ ମଧ୍ୟ ଅଳ୍ପକେତେକ ସ୍ଥାନରେ ସେଥିର ବ୍ୟତିକ୍ରମ ଘଟଣା ପରେ କୁହାଯାଇଛି, ଏହି ଭାଷାତତ୍ତ୍ୱ ଭିତ୍ତିକ ଆଲୋଚନା ପଣ୍ଡିତ ଗୋପୀନାଥ ନନ୍ଦଙ୍କ ଭାଷାତତ୍ତ୍ୱ ଗ୍ରନ୍ଥରେ ବିଶଦ୍ ଭାବେ ଆଲୋଚିତ ହୋଇଅଛି । ସୁତରାଂ 'ଉପଧା ମିଳନ' ପରି ଏକ ସାମାନ୍ୟ କଥାକୁ ଭିତ୍ତି କରି ଶ୍ରୀ ରାଉତରାୟଙ୍କ ପରି ଜଣେ ସାହିତ୍ୟିକ ସତ୍ୟ ପଥରୁ ଅପସରି ଯିବା ଦୁଃଖଦାୟକ । ଐତିହାସିକର ମୁଖ୍ୟ ଧର୍ମ ହେଉଛି ସତ୍ୟର

ଉଦ୍ଭବନ । କବି ଜୟଦେବ ଓଡ଼ିଶାରେ ଜନ୍ମିଥାନ୍ତୁ କିମ୍ବା ବଙ୍ଗ, ମିଥିଲା ପ୍ରଭୃତି ଯେ କୌଣସି ସ୍ଥାନରେ ଜନ୍ମନ୍ତୁ ନା କାହିଁକି, ଭାରତର ସାହିତ୍ୟ କ୍ଷେତ୍ରରେ ସେ ଏକ ଉଜ୍ଜ୍ୱଳ ପ୍ରତିଭା । ଏଣୁ ପୃଥିବୀର ସାହିତ୍ୟିକ ପଣ୍ଡିତମାନେ ତାଙ୍କର ଗୁଣଗାନ କରିଛନ୍ତି; ଆଉ ମଧ୍ୟ ତାଙ୍କ ଜୀବନୀ 'ସାହିତ୍ୟ ଇତିହାସ'ରେ ସଠିକ୍ ଭାବେ ଲିପିବଦ୍ଧ ହେବା ଆବଶ୍ୟକ ବୋଲି ମନେ କରନ୍ତି ।

ଅତୀତରେ କବି ଜୟଦେବଙ୍କ ଜୀବନୀ ସଂପର୍କରେ ବହୁ ଅପ୍ରାସଙ୍ଗିକ ଆଖ୍ୟାନ-ଗୁଡ଼ିକ ସୃଷ୍ଟି ହୋଇ ପାଠକମାନଙ୍କୁ ବିଭ୍ରାନ୍ତ କରିଛି । ଉଦାହରଣ ସ୍ୱରୂପ, ନିମ୍ନରେ କେତୋଟି ଆଖ୍ୟାନ ଦିଆଗଲା—

କବି ଜୟଦେବଙ୍କ ପତ୍ନୀ ପଦ୍ମାବତୀ ଅପୂର୍ବ ଭାବେ ସତୀତ୍ୱ ପାଳନ କରୁଥିଲେ । ଏକଦା ଉତ୍କଳ ରାଜାଙ୍କ ଦୂର ସଂପର୍କୀୟ ଭ୍ରାତାଙ୍କ ମୃତ୍ୟୁ ହେବାରୁ ତାଙ୍କର ପତ୍ନୀ ଚିତାଗ୍ନିରେ ନିଜେ ଦଗ୍ଧ ହୋଇ ସତୀତ୍ୱ ରକ୍ଷା କରିବାକୁ ସ୍ଥିର କରିବାରୁ ସତୀଙ୍କୁ ଦେଖିବା ଲୋକ ଗହଣରେ ଶ୍ମଶାନକୁ ଯାଇଥାନ୍ତି । ଯେତେବେଳେ ପଦ୍ମାବତୀ ରାଜନବରକୁ ଯାଇ ରାଣୀଙ୍କ କକ୍ଷରେ ପ୍ରବେଶ ହେବାରୁ ରାଣୀ ତାଙ୍କୁ ପ୍ରଣାମ କରି କହିଲେ, ଆଜି ସତୀଙ୍କ ସହ ମରଣ ଦେଖିବାକୁ ବହୁ ଲୋକ ଶ୍ମଶାନକୁ ଯାଇଛନ୍ତି । ଆପଣ କ'ଣ ଯିବେ ନାହିଁ ? କିନ୍ତୁ ପଦ୍ମାବତୀ ଉତ୍ତର ଦେଲେ "ଜଣେ ପତିବ୍ରତା ନାରୀ ଏପରି ଆତ୍ମାହୁତି ଦେବା ଠିକ୍ ନୁହେଁ । ମୋ ମତରେ ପତିଙ୍କ ମୃତ୍ୟୁ ସମ୍ବାଦ ଶୁଣିବା ସଙ୍ଗେ ସଙ୍ଗେ ପ୍ରକୃତ ସତୀ ପକ୍ଷରେ ଜୀବନ ଧରି ରହିବା ଅସମ୍ଭବ । ସତୀ ନାରୀ ତା ନିଜର ଦେହଜ ବହ୍ନିରେ ଦଗ୍ଧ ହେବା ବାଞ୍ଛନୀୟ । ଏହା ଶୁଣି ରାଣୀ ଆଶ୍ଚର୍ଯ୍ୟ ହୋଇ ପଦ୍ମାବତୀଙ୍କ ସତୀ-ନିଷ୍ଠା ପରୀକ୍ଷା କରିବାକୁ ମନେ ମନେ ଚିନ୍ତା କଲେ । କିଛି ଦିନ ପରେ ପଦ୍ମାବତୀ ରାଣୀଙ୍କୁ ଦେଖା କରିବାକୁ ଯାଇ, ପରେ ନିଜ ଘରକୁ ଫେରିଗଲେ । କିଛି ଦିନ ପରେ କବି ଜୟଦେବଙ୍କୁ ସଙ୍ଗରେ ନେଇ ପୁରୀରେ ଶ୍ରୀଜଗନ୍ନାଥଙ୍କ ଦର୍ଶନ କରିବାକୁ ଯାଇ ସେଠାରେ ରାତ୍ରିଯାପନ କରିଥାନ୍ତି । ସେଦିନ ରାଣୀ ପଦ୍ମାବତୀଙ୍କୁ ଦାସୀ ଦ୍ୱାରା ଡକାଇ ନିଜେ ଉଚ୍ଚସ୍ୱରରେ କାନ୍ଦି କାନ୍ଦି କହିଲେ, "ରାଜାଙ୍କ ସଙ୍ଗେ ତୁମ ପତି ଶ୍ରୀକ୍ଷେତ୍ରକୁ ଯାଇଥିଲେ, ସେଠାରେ ତାଙ୍କର ଦେହାନ୍ତ ହୋଇଛି ।" ଏହା ଶୁଣିବା ସଙ୍ଗେ ସଙ୍ଗେ ପଦ୍ମାବତୀଙ୍କ ମୁଖରୁ ଉଚ୍ଚାରିତ ହେଲା, "ହାୟ ! କ'ଣ ହେଲା ?" ସେହିକ୍ଷଣି ତାଙ୍କର ମୃତପିଣ୍ଡ ତଳେ ପଡ଼ିଗଲା । ଏଥିରେ ରାଣୀ ଭୟଭୀତା ହୋଇ କ୍ରନ୍ଦନ କଲେ । ରାଜପ୍ରାସାଦରେ ସମସ୍ତେ ତଟସ୍ଥ ହୋଇଗଲେ । ଠିକ୍ ସେହିକବେଳେ ରାଜା ଓ ଜୟଦେବ ସେଠାରେ ପ୍ରବେଶ ହେଲେ । ରାଣୀଙ୍କ ଠାରୁ ସବୁ କଥା ଶୁଣି ରାଜା କ୍ରୋଧରେ କହିଲେ, "ରାଣୀ ତୁମେ ଯେଉଁ କାର୍ଯ୍ୟ କରିଛ, ସେଥିର ଦଣ୍ଡ ସ୍ୱରୂପେ ମୁଁ ତୁମକୁ ହତ୍ୟା କରନ୍ତି, କିନ୍ତୁ ସ୍ତ୍ରୀ ହତ୍ୟା ପରିବର୍ତ୍ତେ ମୁଁ ତୁମକୁ ପରିତ୍ୟାଗ କରୁଛି । ସେଦିନ-

ବେଳେ କବି ଜୟଦେବ ରାଜାଙ୍କୁ ବାରଣ କରି କହିଲେ, "ଆପଣ ଶ୍ରୀଜଗନ୍ନାଥଙ୍କୁ ସ୍ମରଣ କରନ୍ତୁ, ମୁଁ ତାଙ୍କୁ ସ୍ମରଣ କରି ଭଜନ କରୁଛି।" ଏହା କହି ସେ 'ଗୀତ ଗୋବିନ୍ଦ'ର ଗୋଟିଏ ଗାନ ଗାଇଲେ । ସେତେବେଳେ ପଦ୍ମାବତୀଙ୍କ ଦେହରେ ଧୀରେ ଧୀରେ ଜ୍ଞାନ ସଂଚାର ହେଲା । (୧)

ଜୟଦେବ ଓ ତାଙ୍କ ସହଧର୍ମିଣୀ ପଦ୍ମାବତୀଙ୍କ ଅଲୌକିକ ପ୍ରତିଭା ସଂପର୍କରେ 'ସେକ୍ ଶୁଭୋଦୟ' ଗ୍ରନ୍ଥରେ କେତୋଟି ଗଳ୍ପ ଲେଖାଅଛି । ନିମ୍ନୋକ୍ତ ଉଦ୍‌ଭଟ ଗଳ୍ପଟି ସେଥିମଧ୍ୟରୁ ଗୋଟିଏ—

ଏକଦା ରାଜା ଲକ୍ଷ୍ମଣ ସେନଙ୍କ ସଭାଗୃହରେ ବୁଢ଼ନ୍ ମିଶ୍ର ନାମକ ଜଣେ ଓସ୍ତାଦ୍ (ଗାୟକ) ପହଞ୍ଚି କହିଲେ ଯେ ସେ ସଙ୍ଗୀତ ବିଦ୍ୟାରେ ଯଥେଷ୍ଟ ପାରଦର୍ଶିତା ଲାଭ କରିଥିବାରୁ ଓଡ଼ିଶାର ଗଜପତି ମହାରାଜା ତାଙ୍କୁ ସମ୍ମାନିତ କରି ଗାଡ଼ି ଦେଇ-ଥିଲେ । ସେ ପାଠ ମନ୍ତ୍ରଶ୍ରୀ (?) ରାଗରେ ଗୀତ ଗାଇବାରୁ ନିକଟରେ ଥିବା ଏକ ଅଶ୍ୱତ୍ଥ ବୃକ୍ଷରୁ ପତ୍ରଗୁଡ଼ିକ ଝଡ଼ିପଡ଼ି ଥିଲା । ଓସ୍ତାଦ ଗାୟକଙ୍କ ଠାରୁ ଏହା ଶୁଣି ସଭା ସଂସଦ-ମାନେ ବୁଢ଼ନ ମିଶ୍ରଙ୍କୁ ପ୍ରଶଂସା କରିବାକୁ ଲାଗିଲେ ଏବଂ ଆନନ୍ଦସୂଚକ ବାଦ୍ୟଧ୍ୱନି ଶୁଣାଗଲା । ତାଙ୍କୁ ରାଜା ଜୟପତ୍ର ଦେବା ସ୍ଥିର ହେଲା । ଠିକ୍ ସେତିକିବେଳେ ଜୟଦେବଙ୍କ ସହଧର୍ମିଣୀ ପଦ୍ମାବତୀ ସ୍ନାନ କରିବାକୁ ଗଙ୍ଗାକୁ ଯାଉଥିଲେ । ସେ କୌତୂହଳବଶତଃ ରାଜସଭାରେ ଆନନ୍ଦ କୋଳାହଳ ହେବାଶୁଣି ସଭାଗୃହକୁ ଯାଇ କହିଲେ "ସଙ୍ଗୀତ ଶାସ୍ତ୍ରରେ ମତେ ଓ ମୋ ସ୍ୱାମୀ ଜୟଦେବଙ୍କୁ ପରାସ୍ତ ନ କରିବା ପର୍ଯ୍ୟନ୍ତ କାହାରିକୁ ଜୟପତ୍ର ଦିଆଯିବ ନାହିଁ।" ସେଠାରେ ସେଖ୍ (ମୁସଲମାନ ସାଧୁ) ଉପସ୍ଥିତ ଥିଲେ । ସେ ପଦ୍ମାବତୀଙ୍କୁ ପୁଣି କହିଲେ, "ତମେ ଗୋଟିଏ ଗୀତ ବୋଲ ତ ଶୁଣିବା କ'ଣ ଅଦ୍‌ଭୁତ ଘଟଣା ଘଟିବ।" ଏହା ଶୁଣି ପଦ୍ମାବତୀ "ଗାନ୍ଧାର-ରାଗ"ରେ ଗୋଟିଏ ଗୀତ ବୋଲିବା ସଙ୍ଗେ ସଙ୍ଗେ ଗଙ୍ଗାରେ ଭାସୁଥିବା ନୌକାଗୁଡ଼ିକ ହଠାତ୍ କୂଳରେ ଆସି ଲାଗିଗଲେ । ଏହା ସମସ୍ତଙ୍କୁ ଆଚମ୍ବିତ କରି ପକାଇଲା । ସେତେବେଳେ ସଙ୍ଗୀତ ବିଶାରଦ ଜଣେ ନାରୀ ସଙ୍ଗେ ପ୍ରତିଯୋଗିତା କରିବାକୁ ଅମଙ୍ଗ ହେବାରୁ 'ଶେଖ୍'ଙ୍କର ହୁକୁମ ମତେ ସେଠାକୁ କବି ଜୟଦେବଙ୍କୁ ଡ଼ାକି ଅଣାଗଲା । ବୁଢ଼ନ ମିଶ୍ରଙ୍କୁ ଶେଖ୍ କହିଲେ, "ଆପଣ ଏ ଅଶ୍ୱତ୍ଥ ବୃକ୍ଷରେ ନୂତନ ପତ୍ର କରିବା ଲାଗି ଦିଅନ୍ତୁ ଦେଖି।" କିନ୍ତୁ ମିଶ୍ରେ ତାହା କରିବାକୁ ମନାକଲେ । ଅର୍ଥାତ୍, ତାଙ୍କର ଅକ୍ଷମତା ପ୍ରକଟିତ ହେଲା । କବି ଜୟଦେବ ସେତେବେଳେ 'ବସନ୍ତ ରାଗ' ଉଚ୍ଚାରଣ

(୧) "କବିରାଜ ଶ୍ରୀ ଜୟଦେବ ଚରିତ" ପୃ ୬୧-୬୩ ଦ୍ରଷ୍ଟବ୍ୟ
(ଅନୁବାଦକ ଭଗବାନ ପଣ୍ଡା) (୧୯୮୭)
J. B. O. R. S., Vol, XIV, Pt IV (1924) PP 489-538 f

କରିବା ସଙ୍ଗେ ସଙ୍ଗେ ବୃକ୍ଷର ପତ୍ର ଝଡ଼ିଗଲା । ଶେଖ୍‌ଙ୍କ ଇଚ୍ଛାନୁସାରେ ବୁଢ଼ନ୍ ମିଶ୍ରଙ୍କୁ ଅଳ୍ପ କିଛି ଉପହାର ଦେଇ ବିଦାୟ କରାଗଲା ।

ଏହି ଗଳ୍ପରେ ଖ୍ରୀ. ୧୪୩୬-୧୪୬୬ର ଗଜପତି ରାଜା କପିଳେନ୍ଦ୍ରଦେବଙ୍କ ନାମ ଉଲ୍ଲେଖ ହୋଇଥିବାରୁ 'ସେକ୍ ଶୁଭୋଦୟ' ଗ୍ରନ୍ଥର ରଚନା କାଳ ୧୫ଶ ୧୬ଶ ଶତାବ୍ଦୀର ପୂର୍ବବର୍ତ୍ତୀ ନୁହେଁ ବୋଲି ସ୍ପଷ୍ଟ ଜଣାଯାଉଛି ।

'ସେକ୍ ଶୁଭୋଦୟ' ଗ୍ରନ୍ଥଟି ବାସ୍ତବରେ ଏପରି କେତେଗୁଡ଼ିଏ ଗଳ୍ପର ସଙ୍କଳନ ବ୍ୟତୀତ ଅନ୍ୟ କିଛି ନୁହେଁ । ତଥାପି ଖ୍ରୀ. ୧୬ଶ ଶତାବ୍ଦୀରେ ରାଜା ଲକ୍ଷ୍ମଣ ସେନ ଓ ତାଙ୍କ ମନ୍ତ୍ରୀ ଉମାପତି ଧରଙ୍କ ନୈତିକ ଚରିତ୍ର ସମ୍ବନ୍ଧରେ ଯେଉଁ କିମ୍ବଦନ୍ତୀ-ଗୁଡ଼ିକ ପ୍ରଚଳିତ ଥିଲା, ତାକୁ ଆଧାର କରି ସେହି ଗ୍ରନ୍ଥଟି ଲେଖା ହୋଇଥିବା ସମ୍ଭବ । ଐତିହାସିକମାନେ ଏଥିର ଐତିହାସିକତା (historicity) ସଂପର୍କରେ ବିଭିନ୍ନ ମତ ପୋଷଣ କରିଅଛନ୍ତି । ପ୍ରସିଦ୍ଧ ଐତିହାସିକ ରାଖାଲ ଦାସ ବାନାର୍ଜି 'ସେକ୍ ଶୁଭୋଦୟ' ସଂପର୍କରେ ଲେଖିଛନ୍ତି —

"The book does not contain a single passage which may be taken as historically accurate" ଅର୍ଥାତ୍ ଏ ପୁସ୍ତକରେ ଗୋଟିଏ ହେଲେ ଅଂଶ ନାହିଁ ଯାହାକୁ ଇତିହାସ ବୋଲି କୁହାଯିବ ।

କିନ୍ତୁ ଡା. ସୁକୁମାର ସେନ ଲେଖିଛନ୍ତି ଯେ, ଏ ପୁସ୍ତକରେ ବିଶେଷ କିଛି ଐତିହାସିକ ଘଟଣା ନଥିଲେ ସୁଦ୍ଧା, କେତୋଟି କିମ୍ବଦନ୍ତୀରେ ଐତିହାସିକତା ପରିଲକ୍ଷିତ ହୁଏ ।

ଭାଷାତତ୍ତ୍ୱବିତ୍ ଡ଼ା. ସୁନୀତି କୁମାର ଚାଟାର୍ଜିଙ୍କ ମତରେ † ଏ ପୁସ୍ତକର ସମୟ ଖ୍ରୀ. ୧୬ଶ ଶତାବ୍ଦୀ, ଯଦିଚ ଏହାକୁ ଗୋଟିଏ ନକଲି ଗ୍ରନ୍ଥ ବୋଲି କୁହାଯାଇଛି, ତଥାପି ବଙ୍ଗୀୟ ସାଂସ୍କୃତିକ ଇତିହାସରେ ଏହା ଗୋଟିଏ ମୂଲ୍ୟବାନ ଗ୍ରନ୍ଥ ।

"Although it is a forgery, its date certainly not later than the 16th century, is sufficiently old for it to retain its importance as a valuable work on early Bengali history and culture. ※

† ଡ଼ା. ଚାଟାର୍ଜିଙ୍କ ସମ୍ପାଦିତ 'ସେକ୍ ଶୁଭୋଦୟ' ଗ୍ରନ୍ଥର ମୁଖବନ୍ଧ, ପୃ-୫ (୧୯୬୩ ସାଲ)
※ Quoted by Dr. Prasanta Kumar Das Gupta in his book, Jayadeva and some of his contemporaries, PP. 99-100 ff.

କବି ଜୟଦେବଙ୍କ ବିଷୟରେ ଅନ୍ୟ ଏକ ଅଦ୍‌ଭୁତ କିମ୍ବଦନ୍ତୀ ଭାରତର ପ୍ରାୟ ସର୍ବତ୍ର ପ୍ରଚଳିତ ହୋଇଛି । ତାହା ନିମ୍ନରେ ପ୍ରଦତ୍ତ ହେଲା ।

କବି ଜୟଦେବ ପ୍ରଥମେ ବିବାହ କରିବାକୁ ଇଚ୍ଛା କରି ନ ଥିଲେ । କାରଣ ତାଙ୍କର ଯାଯାବର ସାଧୁ ଜୀବନ ଯାପନ କରିବା ଅଭିଳାଷ ଥିଲା । ଆଉ ମଧ୍ୟ ସେ ସଙ୍ଗୀତ ଏବଂ ସଂସ୍କୃତ ସାହିତ୍ୟରେ ପାରଦର୍ଶିତା ଲାଭ କରିଥିବାରୁ ପାରିବାରିକ ଧନ୍ଦାରେ ପଶି ତାଙ୍କ ଜୀବନର ଆଦର୍ଶରୁ ଦୂରେଇ ଯିବାକୁ ସେ ଇଚ୍ଛୁକ ନ ଥିଲେ । କିନ୍ତୁ ଦୈବର ନିବନ୍ଧ ଅନ୍ୟ ପ୍ରକାର ଥିଲା ।

ଥରେ ଦେବଶର୍ମା ନାମକ ଜଣେ ଅପୁତ୍ରିକ ବ୍ରାହ୍ମଣ ପଣ୍ଡିତ ଶ୍ରୀକ୍ଷେତ୍ରକୁ ଯାତ୍ରା କରି ଶ୍ରୀ ପୁରୁଷୋତ୍ତମଙ୍କ ମନ୍ଦିରରେ ମହାପ୍ରଭୁଙ୍କୁ ଦର୍ଶନ କଲାବେଳେ ଜଣାଇ ଥିଲେ, "ହେ ପ୍ରଭୁ ! ମୁଁ ସନ୍ତାନହୀନ ହୋଇ ଦୁଃଖ ପାଉଛି । ଆପଣଙ୍କ କୃପାରୁ ଯଦି ମୋର ସନ୍ତାନ ଜନ୍ମ ହୁଏ ତେବେ ପ୍ରଥମ ସନ୍ତାନକୁ ଏଠାରେ ଆପଣଙ୍କ ସେବା ପାଇଁ ଉତ୍ସର୍ଗ କରିବି ।" ସେ ନିଜ ଗୃହକୁ ଫେରିଯିବା ପରେ ତାର ଏକ କନ୍ୟା ଜନ୍ମଲାଭ କଲା । ପରେ ପୁତ୍ର ମଧ୍ୟ ହୋଇଥିଲା । କନ୍ୟାଟି ଯୌବନରେ ପଦାର୍ପଣ କରିବା ଦେଖି ପୂର୍ବ ପ୍ରତିଶ୍ରୁତି ରକ୍ଷା କରିବାକୁ ଦେବଶର୍ମା କନ୍ୟା ପଦ୍ମାବତୀକୁ ସାଙ୍ଗରେ ଧରି ଶ୍ରୀକ୍ଷେତ୍ରରେ ଉପସ୍ଥିତ ହେଲେ । କିନ୍ତୁ ଶ୍ରୀମନ୍ଦିରରେ ସେହି ଯୁବତୀକୁ 'ଦେବଦାସୀ' ରୂପେ ନିଯୁକ୍ତ ନ ମିଳିବାରୁ ସ୍ୱପ୍ନରେ ଶ୍ରୀ ମହାପ୍ରଭୁଙ୍କ ଆଦେଶ ପାଇ ଶ୍ରୀଧାମରେ ରହିଥିବା ଜୟଦେବଙ୍କୁ କନ୍ୟାଦାନ କରି ତାଙ୍କ ସଂଗୀତ ଓ ନୃତ୍ୟ ବ୍ୟବସ୍ଥା କରିବା ଉଦ୍ଦେଶ୍ୟରେ ଜୟଦେବଙ୍କ ଆଶ୍ରମରେ ଉପସ୍ଥିତ ହେଲେ । ଜୟଦେବ ବିବାହ କରିବାକୁ ଅସ୍ୱୀକୃତ ହୋଇଥିଲେ ହେଁ ତାଙ୍କୁ ମଧ୍ୟ ସ୍ୱପ୍ନରେ ମହାପ୍ରଭୁଙ୍କ ଆଦେଶ ମିଳିବାରୁ ସେ ଯଥାବିଧିରେ କନ୍ୟାର ପାଣିଗ୍ରହଣ କଲେ । ପଦ୍ମାବତୀଙ୍କୁ ବୋଧହୁଏ ସେ ଗାନ୍ଧର୍ବ ବିଦ୍ୟା ଶିକ୍ଷା ଦେଇ ସେଥିରେ ତାଙ୍କୁ ସୁପଣ୍ଡିତା କରି ଗଢ଼ିଲେ ।

ଏଠାରେ ଲେଖିବା ଆବଶ୍ୟକ ଯେ କବି ଜୟଦେବଙ୍କ ସଙ୍ଗେ ପଦ୍ମାବତୀଙ୍କର ବିବାହ ସମ୍ପନ୍ନ ହେବା ପୂର୍ବରୁ ବୋଧହୁଏ, ସେ ନୃତ୍ୟ ବିଦ୍ୟାରେ ପାରଦର୍ଶିତା ଲାଭ କରିଥିଲେ । ଦକ୍ଷିଣ ଭାରତରେ ତାଙ୍କୁ ଜଣେ ପ୍ରସିଦ୍ଧ ନର୍ତ୍ତକୀ ବୋଲି କୁହାଯାଉଥିଲା । ଏ ସମ୍ପର୍କରେ କାର୍ତ୍ତିର ଦେବଙ୍କର ୧୧୫୦ ଖ୍ରୀଷ୍ଟାବ୍ଦରେ ଗୁଣ୍ଟୁର ଜିଲ୍ଲାର ଗୋଟିଏ ଶିଳାଲେଖରେ ତାଙ୍କୁ "ନର୍ତ୍ତକୀ ତିଳକାୟାଂ ପଦ୍ମାବତୀ" (୧) ବୋଲି ଲେଖାଅଛି ।

କବି ଜୟଦେବ 'ଗୀତଗୋବିନ୍ଦ' ରଚନା କରୁ କରୁ ଗୋଟିଏ ଶ୍ଳୋକର ଶେଷ ପାଦଟି ଲେଖିବା ପାଇଁ ତାଙ୍କ ମନରେ କଷ୍ଟବୋଧ ହେଲା । ଶ୍ଳୋକଟିର ପ୍ରଥମାଂଶ ହେଉଛି—

(୧) S. I. I., Vol. X, No. 74

"ସ୍ମର ଗରଳ ଖଣ୍ଡନଂ, ମମଶିରସି ମଣ୍ଡନଂ"

ସେଥିର ଦ୍ୱିତୀୟ ପାଦଟି "ଦେହି ପଦପଲ୍ଲବ ମୁଦାରମ୍" ଏହି ପଦଟି ଲେଖିବାକୁ ସେ କୁଣ୍ଠାବୋଧ କରୁଥିଲେ । କାରଣ ମଦନର ବିଷ ଜ୍ୱାଳାରୁ ଉଦ୍ଧାର ହେବା ପାଇଁ ଶ୍ରୀକୃଷ୍ଣଙ୍କ ମସ୍ତକରେ ରାଧାଙ୍କ ପାଦ ସ୍ପର୍ଶ କରିବେ କିପରି ? ଏ ଚିନ୍ତାରେ ଜୟଦେବ ଆକୁଳ ପ୍ରାଣରେ ଶେଷ ପାଦଟି ନ ଲେଖି ପୋଥିରେ ଡୋରି ବାନ୍ଧି ସ୍ନାନ କରିବାକୁ ଚାଲିଗଲେ । ସେ କୁଟୀରରୁ ଚାଲିଯିବା ଅଳ୍ପକ୍ଷଣ ପରେ ତାଙ୍କ ରୂପରେ ମହାପ୍ରଭୁ ଆସି ପଦ୍ମାବତୀ ଠାରୁ ପୋଥି ମାଗି ନେଇ ଅପୂର୍ଣ୍ଣ ପଦଟି ଲେଖିଦେଇ ଚାଲିଗଲେ । ଅଳ୍ପ କ୍ଷଣ ପରେ ସ୍ନାନ ସାରି ଜୟଦେବ ନିଜ ବାସଭବନକୁ ଫେରି ପଦ୍ମାବତୀଙ୍କ ଠାରୁ ପୋଥିଟି ନେଇ ଦେଖିଲେ ଯେ, ଶ୍ଳୋକର ଦ୍ୱିତୀୟ ପାଦଟି ସେ ଲେଖିବାକୁ କୁଣ୍ଠିତ ହେଉଥିବା ସ୍ଥାନରେ ସୁନ୍ଦର ଅକ୍ଷରରେ ଲେଖା ହୋଇଛି । ପଦ୍ମାବତୀଙ୍କ ଠାରୁ ସମସ୍ତ ବିବରଣୀ ଶୁଣି, ନିଶ୍ଚିତ ଭାବେ ଏହି କାମ ସ୍ୱୟଂ ମହାପ୍ରଭୁଙ୍କର ବୋଲି କୃତକୃତ୍ୟ ହୋଇ ତାଙ୍କ ଇଷ୍ଟଦେବତା ଶ୍ରୀ ଗୋବିନ୍ଦଙ୍କୁ ପ୍ରଣାମ କରିଥିଲେ ।

କିମ୍ବଦନ୍ତୀ ଅନୁସାରେ, 'କୃଷ୍ଣଲୀଳାମୃତ'ର ଲେଖକ ଲୀଳାଶୁକବିଲ୍ୱ ତାଙ୍କ ପର-ଜନ୍ମରେ କବି ଜୟଦେବ ରୂପେ ଜନ୍ମଗ୍ରହଣ କରି 'ଗୀତଗୋବିନ୍ଦ' ରଚନା କରିଥିଲେ । † ଲୀଳାଶୁକଙ୍କର ଅପର ନାମ ଥିଲା ବିଲ୍ୱମଙ୍ଗଳ । ସେ ଲେଖିଥିବା 'କୃଷ୍ଣକର୍ଣ୍ଣାମୃତ' ନାମକ ସଂସ୍କୃତ କାବ୍ୟ ଦକ୍ଷିଣ ଭାରତରେ ଆଦୃତ ହେଉଥିଲା । କିନ୍ତୁ 'ଗୀତଗୋବିନ୍ଦ' ଲେଖା ହେବାରୁ ଦକ୍ଷିଣ ଭାରତରେ ଜୟଦେବଙ୍କ କାବ୍ୟ ପ୍ରତି ଅଧିକ ଆଦର ହେଲା ।



† M. Winternitz, His. Ind. Lit., Vol. III, P 140 n. I

# ସପ୍ତମ ପରିଚ୍ଛେଦ

୧୧୧୨ ଖ୍ରୀଷ୍ଟାବ୍ଦରୁ ୧୪୩୫ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଦୀର୍ଘ ୩୨୩ ବର୍ଷ ଗଙ୍ଗ ବଂଶୀୟ ରାଜାମାନେ ନିରଙ୍କୁଶ ଭାବେ ସ୍ୱାଧୀନ ଉତ୍କଳ କଳିଙ୍ଗ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ସାମ୍ରାଜ୍ୟ ପରିଚାଳନ କରି ବହୁ କବି ଓ ପଣ୍ଡିତଙ୍କୁ ରାଜଦରବାରରେ ରଖି ସଂସ୍କୃତ ସାହିତ୍ୟର ଉତ୍କର୍ଷ ସାଧନ କରିଥିଲେ । ସେହି ରାଜବଂଶର ଶେଷ ମହାରାଜ ଚତୁର୍ଥ ଭାନୁଦେବ (୧୧୧୪-୧୪୩୫ ଖ୍ରୀଷ୍ଟାବ୍ଦ) ଯେ କି ନିଃଶଙ୍କଭାନୁ ନାମରେ ପରିଚିତ, ସେ ଏକଦା ବଙ୍ଗ ଜୟ କରି ଫେରିଥିବାରୁ ପୁରୀର ଶ୍ରୀମନ୍ଦିର ସମ୍ମୁଖରେ "ସାହିତ୍ୟ-ଦର୍ପଣ"ର ଲେଖକ ବିଶ୍ୱନାଥ କବିରାଜଙ୍କ କୃତ 'ଚନ୍ଦ୍ରକଳା' ନାମକ ନାଟିକା ମହା-ସମାରୋହରେ ପରିବେଶିତ ହୋଇଥିଲା । (୧) ସେ ପ୍ରାୟ ୨୧ ବର୍ଷ ରାଜତ୍ୱ କରିଥିବା ଜଣାଯାଏ । ତାଙ୍କ ପରେ ଉତ୍କଳରୁ ଗଙ୍ଗ ରାଜତ୍ୱ ଛିନ୍ନ ହୋଇ 'ସୂର୍ଯ୍ୟବଂଶୀୟ ଗଜପତି' ରାଜତ୍ୱ ଆରମ୍ଭ ହେଲା । ଗଙ୍ଗବଂଶର ପ୍ରଥମ ମହାରାଜା ଚୋଡଗଙ୍ଗଙ୍କ ପରି ସୂର୍ଯ୍ୟବଂଶର ପ୍ରତିଷ୍ଠାତା କପିଳେଶ୍ୱର (କପିଳେନ୍ଦ୍ର) ଦେବ ଅପୂର୍ବ ପରାକ୍ରମ ବିସ୍ତାର କରି ପୂର୍ବ ଉତ୍ତରରେ ଗୌଡ (ଆଧୁନିକ ବଙ୍ଗଳା ଦେଶ) ଠାରୁ ଦକ୍ଷିଣରେ କାବେରୀ (ଆଧୁନିକ କର୍ଣ୍ଣାଟ) ପର୍ଯ୍ୟନ୍ତ ସାମ୍ରାଜ୍ୟ ବିସ୍ତାର କରିଥିଲେ । ଗୌଡ, ବିଦର ଓ ତେଲେଙ୍ଗାନାର ମୁସଲମାନଙ୍କୁ ସେ ଜୟ କରି ଭାରତରେ ସାର୍ବଭୌମତ୍ୱ ଲାଭ କରିବାକୁ ସେ ଉଦ୍ୟମ କରିଥିଲେ । ତାଙ୍କର ଉପାଧି ଥିଲା, "ନବକୋଟି-କର୍ଣ୍ଣାଟ-କଲବର୍ଗେଶ୍ୱର" । ସେତେ-ବେଳେ କପିଳେନ୍ଦ୍ରଙ୍କର ଗୌଡ଼, ମାଳବ, ଦିଲ୍ଲୀ, ଗୁଲବର୍ଗ (କଲବର୍ଗ) ପ୍ରଭୃତି ଜୟ କରିଥିବା ପ୍ରସଙ୍ଗ ତାଙ୍କ ସେନାପତି ଗୋପୀନାଥଙ୍କ କୃତ କଟକ ଜିଲ୍ଲାସ୍ଥିତ ଗୋପୀନାଥପୁର ଗ୍ରାମର ଗୋପୀନାଥ ମନ୍ଦିର ଶିଳାଲେଖରୁ ପ୍ରକଟିତ ହୁଏ । ସେହି ଅନୁଶାସନର ମଙ୍ଗଳ ସ୍ତୋତ୍ରରେ ଗୋପୀନାଥ (ରାଧାବଲ୍ଲଭ)ଙ୍କ ସ୍ତୁତି ନିମ୍ନଶ୍ଳୋକରେ କରାଯାଇଛି—

"ଓଁ ନମଃ ଶ୍ରୀ ପୁରୁଷୋତ୍ତମାୟ
ମୌଳୀ ଚଞ୍ଚଲ ଚୂଳମା ଢଳକମା ଭାଲେ ମୁଖେହାସିମା

---

(୧) 'ଚନ୍ଦ୍ରକଳା ନାଟିକା'

କଣ୍ଠେ ମୌକ୍ତିକମାଳିନୀ ମଳୟଜୈଃ ପ୍ରତ୍ୟଙ୍ଗମାଲେପିନୀ ।
ହସ୍ତାବ୍ଜେ ନବନୀତନୀ ଚରଣୟୋଃ କ୍ରୀଡ଼ା ରସା ନର୍ତ୍ତିନୀ
ଜୀୟଦ୍ଦଚ୍ଛେଶ ଶୋଭିନୀ ଚରମଲା ଗୋପାଙ୍ଗନା ଲଙ୍ଗିନୀ ॥ (୧)

ଏ ଶ୍ଳୋକଟି ଶ୍ରୀ ଜଗନ୍ନାଥ ମିଶ୍ରଙ୍କ ଅଳଙ୍କାର ଗ୍ରନ୍ଥ "କବି କଳ୍ପଦ୍ରୁମ"ର ଦଶମ ପଲ୍ଲବରେ ମଧ୍ୟ ଉଲ୍ଲେଖ ଥିବା ଦେଖାଯାଏ (୨) ଖ୍ରୀ ୧୫ଶ ଶତାବ୍ଦୀ ଓ ତତ୍ପୂର୍ବରୁ ଗୋପୀନାଥ ଏବଂ ଗୋପାଳକୃଷ୍ଣଙ୍କୁ ଉତ୍କଳର ବୈଷ୍ଣବ ସମ୍ପ୍ରଦାୟ ଆରାଧନା କରୁଥିଲେ । ତେଣୁ ବାଲେଶ୍ୱର ଜିଲ୍ଲା ରେମୁଣାଠାରେ ଏବଂ ପୁରୀ ଜିଲ୍ଲା ସାକ୍ଷୀଗୋପାଳ ଠାରେ ଗୋପୀନାଥ ରାଧାବଲ୍ଲଭଙ୍କ ବିଗ୍ରହ ପ୍ରତିଷ୍ଠା କରାଯାଇଥିଲା ।

ଉତ୍ତର ଭାରତରେ ମୁସଲମାନଙ୍କ ଯୋଗୁଁ ହିନ୍ଦୁଧର୍ମ ଯେତେବେଳେ ସେ ଅଞ୍ଚଳରେ ନଷ୍ଟ ଭ୍ରଷ୍ଟ ହେବାକୁ ଯାଉଥିଲା, ସେତେବେଳେ ବରାହ ରୂପରେ ବିଷ୍ଣୁ ଯେପରି ପୃଥିବୀକୁ ପଙ୍କ ଗର୍ଭରୁ ଉଦ୍ଧାର କରିଥିଲେ, ସେପରି ମହାରାଜା କପିଳେନ୍ଦ୍ରଦେବ ମୁସଲମାନ (ମହମ୍ମଦ ଶାହ୍)ଙ୍କ ସଙ୍ଗେ ଯୁଦ୍ଧ କରି ହିନ୍ଦୁମାନଙ୍କୁ ସୁରକ୍ଷିତ କରିଥିଲେ । ଏ ବିଷୟଟି ମୁସଲମାନ ଇତିହାସରେ ଲୁଚ୍ଚାଇ ଦିଆଯାଇଥିଲେ ସୁଦ୍ଧା ସମସାମୟିକ ଓ ପରବର୍ତ୍ତୀ ତାମ୍ରଶାସନମାନଙ୍କରୁ ସେଥିର ସତ୍ୟତା ପ୍ରମାଣିତ ହୁଏ । ବାସ୍ତବରେ କହିବାକୁ ହେଲେ, ଭାରତର ଉତ୍ତର-ପୂର୍ବାଞ୍ଚଳ ଯେଉଁ ସମୟରେ ହିନ୍ଦୁମାନଙ୍କ ପକ୍ଷରେ ଘୋର ଅଶାନ୍ତିର ସ୍ଥାନ ହୋଇଥିଲା, ସେତେବେଳେ ଉତ୍କଳର ମହାରାଜା କପିଳେନ୍ଦ୍ର ହିନ୍ଦୁଧର୍ମର ସୁରକ୍ଷା ପାଇଁ ସ୍ୱୀୟ ପରାକ୍ରମ ବିସ୍ତାର କରି ଗୌଡ ଦେଶଠାରୁ କାବେରୀ ପର୍ଯ୍ୟନ୍ତ ଏବଂ ବାହମନୀ ସୁଲ୍ତାନଙ୍କୁ ଦେବରକୋଣ୍ଡା ବିଦର ରାଜ୍ୟ ଅଧିକାର କରିଥିଲେ । ତାଙ୍କର ଅଧୀନସ୍ଥ ବିଦ୍ରୋହୀ ମିତ୍ର ରାଜା ବା ଦଣ୍ଡପାଳମାନଙ୍କୁ ମଧ୍ୟ ସେ ଦଣ୍ଡିତ କରିବାକୁ ପଶ୍ଚାତ୍ପଦ ହୋଇନଥିଲେ । ଶ୍ରୀ ଜଗନ୍ନାଥଙ୍କ ମନ୍ଦିରସ୍ଥ ଜୟ ବିଜୟ ଦ୍ୱାର ନିକଟରେ ଖୋଦିତ ୧୪୬୪ ଖ୍ରୀଷ୍ଟାବ୍ଦର ଏକ ଶିଳାଲେଖରୁ ସ୍ପଷ୍ଟ ଜଣାଯାଇଛି ଯେ, ପ୍ରତ୍ୟେକ ରାଜନୈତିକ ସଙ୍କଟ ଓ ସମସ୍ୟା ଉପୁଜିଲା ବେଳେ ସେ ତାଙ୍କର ଇଷ୍ଟଦେବତା ଜଗନ୍ନାଥଙ୍କୁ ଜଣାଇ ସେଥିର ପ୍ରତିକାର ବ୍ୟବସ୍ଥା କରୁଥିଲେ । ଗୋପୀନାଥପୁର ଶିଳାଲେଖରେ ସ୍ପଷ୍ଟ ଉଲ୍ଲେଖ ଅଛି ଯେ, କପିଳେନ୍ଦ୍ର କେବଳ ମାଳବ (ରାଜସ୍ଥାନ) ନୁହେଁ, ସେ ଗୁର୍ଜର ଓ ନେପାଳ ମଧ୍ୟ ଜୟ କରିଥିଲେ ଏବଂ ଚୋଳ ଓ ପାଣ୍ଡ୍ୟ ଦେଶର ରାଜାମାନଙ୍କୁ ପଦାନତ କରିଥିଲେ । ତେଣୁ ଉତ୍କଳ ଇତିହାସର ପ୍ରାଚୀନ

---

(୧) M. M. Chakravarti, (J. A. S. B.,) Vol LXIX (1909), P. 2, 175 f.

(୨) Invocatory verses from Inscriptions, Vol. I, P. 149

ମହାରାଜା ଖାରବେଳଙ୍କ ପରେ କପିଳେନ୍ଦ୍ରଙ୍କ ବିକ୍ରମ ମଧ୍ୟ ଭାରତର ଚତୁର୍ଦ୍ଦିଗରେ ପ୍ରଭାବ ବିସ୍ତାର କରିଥିଲା । ସେ କୃଷ୍ଣାନଦୀତଟ ଖ୍ରୀ ୧୪୬୭ରେ ପ୍ରାଣତ୍ୟାଗ କଲେ । ବୋଧହୁଏ ତାଙ୍କ ରାଜତ୍ୱକାଳରେ ସର୍ବପ୍ରଥମେ ଓଡ଼ିଆ ଭାଷା ଓ ସାହିତ୍ୟର ବିକାଶ ହୋଇଥିଲା । କିନ୍ତୁ ତାଙ୍କ ପୂର୍ବବର୍ତ୍ତୀ ଗଙ୍ଗବଂଶୀୟ ରାଜାମାନେ ସଂସ୍କୃତ ଭାଷାର ଆଶ୍ରୟ ନେଇ ଯେପରି ପଣ୍ଡିତମାନଙ୍କୁ ଉତ୍ସାହିତ କରୁଥିଲେ, ସେପରି ମହାରାଜା କପିଳେନ୍ଦ୍ରଦେବଙ୍କ ଦ୍ୱାରା ଉତ୍ସାହିତ ହୋଇ ସଂସ୍କୃତରେ ପ୍ରଚଳିତ କେତେକ ପୁରାଣ ବିଶେଷତଃ 'ମହାଭାରତ', ଚଣ୍ଡୀପୁରାଣ ପ୍ରଭୃତି ଓଡ଼ିଆ ଭାଷାରେ ଛନ୍ଦୋବଦ୍ଧ କ୍ରମରେ ଶୂଦ୍ରମୁନି ସାରଳା ଦାସ ଲେଖିଥିବାରୁ ତାହା ପ୍ରଜାମାନଙ୍କର ବିଶେଷ ଆନନ୍ଦ ସୃଷ୍ଟି କଲା ।

କପିଳେନ୍ଦ୍ର ଓ ତାଙ୍କର ପୁତ୍ର ପୁରୁଷୋତ୍ତମଦେବ (ଖ୍ରୀ ୧୪୩୭-୧୪୯୭) ଯେ ସଂସ୍କୃତ ଭାଷାରେ କାବ୍ୟ-ନାଟକ ଲେଖକଙ୍କୁ ଉତ୍ସାହିତ କରୁ ନଥିଲେ ତା' ନୁହେଁ, କପିଳେନ୍ଦ୍ରଙ୍କ ନାମରେ 'ପର୍ଶୁରାମ ବିଜୟ' ନାମକ ନାଟକ ମଧ୍ୟ ଲେଖା ହୋଇଥିଲା । ସେପରି ପୁରୁଷୋତ୍ତମଦେବଙ୍କ ନାମରେ 'ଅଭିନବ ବେଣୀ ସଂହାରମ୍' (୧) ନାଟକ ଏବଂ 'ଅଭିନବ ଗୀତଗୋବିନ୍ଦମ୍' ନାମକ ଦୁଇଟି କାବ୍ୟରଚିତ ହୋଇଥିଲା । କଥିତ ଅଛି ଯେ, ଶ୍ରୀ ଜଗନ୍ନାଥଙ୍କ ମନ୍ଦିରରେ କବି ଜୟଦେବଙ୍କ ରଚିତ ଯେଉଁ 'ଗୀତ ଗୋବିନ୍ଦ' କାବ୍ୟ ପରିବେଶିତ ହେଉଥିଲା, ସେହି ସ୍ଥାନରେ 'ଅଭିନବ ଗୀତଗୋବିନ୍ଦ' ଗାନ କରିବାକୁ ରାଜା ପୁରୁଷୋତ୍ତମଦେବ ଆଦେଶ ଦେବାରୁ ଶ୍ରୀମନ୍ଦିର ସେବକମାନଙ୍କ ପକ୍ଷରୁ ସେଥିର ଘୋର ପ୍ରତିବାଦ ସୃଷ୍ଟି ହେଲା । କାରଣ ମହାକବି ଓ ବୈଷ୍ଣବ ସାଧୁ ଜୟଦେବଙ୍କ ରଚିତ ଗାନ ଶ୍ରବଣ କରି ମହାପ୍ରଭୁ ସନ୍ତୁଷ୍ଟ ହୁଅନ୍ତି ବୋଲି ସେମାନେ ବିଶ୍ୱାସ କରୁଥିଲେ ।

---

(୧) ଏଠାରେ କହିବା ଆବଶ୍ୟକ ଯେ, ସଂସ୍କୃତରେ 'ବେଣୀସଂହାର ନାଟକମ୍' ମହାକବି ଭଟ୍ଟନାରାୟଣ ନାମକ ପଣ୍ଡିତ ରଚନା କରିଥିଲେ । ଐତିହାସିକମାନେ ତାଙ୍କର ଜୀବିତ କାଳ ଖ୍ରୀ ୮ମ ଶତାବ୍ଦୀ ବୋଲି ସ୍ଥିର କରନ୍ତି । କିନ୍ତୁ ବାସ୍ତବରେ ମହାକବି ଭଟ୍ଟନାରାୟଣ (ଭଟ୍ଟନାରାୟଣ) ଖ୍ରୀ ୧୨ଶ ଶତାବ୍ଦୀରେ ଜୀବିତ ଥିବା କଥା ପୁରୀର କେତେକ ମନ୍ଦିରସ୍ଥ ଶିଳାଲେଖରୁ ପ୍ରକଟିତ ହୋଇଛି । ପୁରୀର ମାର୍କଣ୍ଡେଶ୍ୱର ମନ୍ଦିରସ୍ଥ ଶିଳାଲେଖ ଏବଂ ନୃସିଂହ ମନ୍ଦିର ଶିଳାଲେଖରେ ଯଥାକ୍ରମେ ସେ ମହାକବି 'ହର୍ଷବର' ଉପାଧିରେ ଘୋଷିତ ହୋଇଛନ୍ତି । 'ବେଣୀ ସଂହାର' ନାଟକରେ ରାଧାକୃଷ୍ଣଙ୍କ ରାସକ୍ରୀଡ଼ାର ଗୋଟିଏ ଶ୍ଳୋକ ଓ ଅନ୍ୟ ଶ୍ଳୋକ 'ଦ୍ୱୈତଦ୍ୱୈତା ମତ' ରୁ ସେ ୧୨ ଶତାବ୍ଦୀରୁ ପ୍ରମାଣିତ ହୁଏ ।

ପୁରୀର ଠାକୁର ରାଜା ଶ୍ରୀ ଜଗନ୍ନାଥଙ୍କ କରୁଣାରୁ କୌଣସିକାଳରେ ବଞ୍ଚିତ ହୋଇ ନଥିଲେ । ମହାରାଜା ପୁରୁଷୋତ୍ତମଦେବଙ୍କ ରାଜତ୍ୱକାଳରେ କାଞ୍ଚିରାଜାଙ୍କ ସଙ୍ଗେ ତାଙ୍କର ଯୁଦ୍ଧ 'କାଞ୍ଚି କାବେରୀ' ଅଭିଯାନ ସଂପର୍କରେ କିମ୍ବଦନ୍ତୀ ଓଡ଼ିଶାରେ ପ୍ରଚଳିତ ଅଛି । ପୁରୁଷୋତ୍ତମଦେବ କାଞ୍ଚି ଯୁଦ୍ଧରେ ପ୍ରଥମେ ପରାଜିତ ହୋଇ ଫେରି ଆସିବାରୁ ଅଭିମାନରେ ପ୍ରଭୁ ଶ୍ରୀ ଜଗନ୍ନାଥଙ୍କଠାରେ ଶରଣାପନ୍ନ ହେଲେ । ରାଜାଙ୍କ ସ୍ୱପ୍ନରେ ମହାପ୍ରଭୁ ଦେଖାଦେଇ କହିଲେ, "ତୁ ଦ୍ୱିତୀୟବାର ସୈନ୍ୟସଜ୍ଜିତ କରି କାଞ୍ଚି ଅଭିଯାନ କଲେ ଆମେ ଦୁଇ ଭାଇ (ଶ୍ରୀ ବଳଭଦ୍ର ଓ ଶ୍ରୀ ଜଗନ୍ନାଥ) ଅଗ୍ରଗାମୀ ଅଶ୍ୱାରୋହୀ ସୈନିକ ବେଶରେ ଯିବୁ । କାଞ୍ଚିରାଜା ନିଶ୍ଚିତ୍ତ ପରାଜିତ ହେବେ ।" ଏପରି ସ୍ୱପ୍ନାଦେଶ ପାଇ ରାଜା ପୁରୁଷୋତ୍ତମ ଦ୍ୱିତୀୟବାର କାଞ୍ଚି ଅଭିଯାନ କରି ସେଠାର ରାଜକୁମାରୀ ପଦ୍ମାବତୀଙ୍କୁ ବନ୍ଦୀକରି ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କରିଥିଲେ ପୁଣି ମନ୍ତ୍ରୀଙ୍କ କୌଶଳରେ ପଦ୍ମାବତୀଙ୍କ ସଙ୍ଗେ ତାଙ୍କର ବିବାହ ସଂପନ୍ନ ହୋଇଥିଲା । ପୁରୁଷୋତ୍ତମଦେବଙ୍କ ପୁତ୍ର ପ୍ରତାପରୁଦ୍ରଙ୍କ ଅନନ୍ତବରମ୍ (୧) ତାମ୍ରଶାସନ ପ୍ରଶସ୍ତିରେ ଲେଖା ଅଛି ଯେ, ପୁରୁଷୋତ୍ତମଦେବ କର୍ଣ୍ଣାଟ ଜୟ କରି ତୁଙ୍ଗଭଦ୍ରା ନଦୀ ତଟରେ ଗୋଟିଏ ଜୟସ୍ତମ୍ଭ ପୋତିଥିଲେ । ସେଥିରେ ବନ୍ଧା ହୋଇଥିବା ଉତ୍କଳର ଜୟପତାକା ଦୂରରୁ ଅଧିକୃତ ରାଜ୍ୟରେ ପଦକ୍ଷେପ କରିବାକୁ ଭୟ ପାଉଥିଲେ । ପ୍ରକୃତରେ ତାଙ୍କ ଦ୍ୱାରା କର୍ଣ୍ଣାଟର ରାଜା ସାଲୁବ ନରସିଂହ ପରାଜିତ ହୋଇଥିବାରୁ ଅନ୍ତତଃ କର୍ଣ୍ଣାଟର ଉଦୟଗିରି ଦୁର୍ଗ ଉତ୍କଳ ରାଜାଙ୍କ ସୈନ୍ୟନିବାସରୂପେ ରହିଥିଲା । ଦକ୍ଷିଣାପଥରୁ ପୁରୁଷୋତ୍ତମଦେବ ଗଣେଶ (କାଞ୍ଚିଗଣେଶ)ଙ୍କୁ ଆଣି ଶ୍ରୀ ଜଗନ୍ନାଥ ମନ୍ଦିରରେ ସ୍ଥାପନ କଲେ । ଆଉ ମଧ୍ୟ ରାଜମହେନ୍ଦ୍ରୀଠାରୁ ଶ୍ରୀ ଗୋପୀନାଥ (ବେଣୁଗୋପାଳ)ଙ୍କ ବିଗ୍ରହକୁ ଆଣି କଟକର ରାଜପ୍ରାସାଦରେ ରଖି ଆଖି ଧଳା କରୁଥିଲେ । (୨) କିନ୍ତୁ ମୁସଲମାନଙ୍କ ଆକ୍ରମଣ ଭୟରେ ସେହି ବିଗ୍ରହଙ୍କୁ ସାକ୍ଷୀଗୋପାଳଠାରେ ପରେ ସ୍ଥାପନ କରିଥିଲେ । କିମ୍ବଦନ୍ତୀରୁ ପ୍ରକଟିତ ହୋଇଛି ଯେ, ସେହି ବିଗ୍ରହ ବୃନ୍ଦାବନରୁ ଜଣେ ବ୍ରାହ୍ମଣଙ୍କ ସଂଗରେ ସାକ୍ଷୀ ଦେବାକୁ ଆସିଥିଲେ । ସେ ଯାହାହେଉ, ଓଡ଼ିଶାକୁ ୧୫୧୦ ଖ୍ରୀଷ୍ଟାବ୍ଦରେ ଚୈତନ୍ୟଙ୍କ ଆଗମନ ପୂର୍ବରୁ ଗୋପୀନାଥଙ୍କ ଆଖି ଧଳା ଓଡ଼ିଶାର ବୈଷ୍ଣବ ଧର୍ମାବଲମ୍ବୀମାନଙ୍କ ଦ୍ୱାରା ପ୍ରଚଳିତ ହେଉଥିଲା ।

ସୂର୍ଯ୍ୟବଂଶୀ ଦ୍ୱିତୀୟ ମହାରାଜା ପୁରୁଷୋତ୍ତମଦେବ ତାଙ୍କର ୩୮ ଅଙ୍କରେ (ଖ୍ରୀ ୧୪୯୭)ରେ ଦେହାନ୍ତ ହୋଇଥିଲା । ତାଙ୍କ ପୁତ୍ର ପ୍ରତାପରୁଦ୍ରଙ୍କ ରାଜତ୍ୱ ଆରମ୍ଭରେ ବହୁ ଶତ୍ରୁ ରାଜାଙ୍କ ସଙ୍ଗେ ବିଶେଷତଃ ଦାକ୍ଷିଣାତ୍ୟ ରାଜାମାନଙ୍କ ସଙ୍ଗେ ତାଙ୍କ ସଂଘର୍ଷ

(୧) 'ସହକାର' ୨୦ ଭାଗ ଦ୍ରଷ୍ଟବ୍ୟ ।

(୨) 'ଶ୍ରୀ ଚୈତନ୍ୟ ଚରିତାମୃତ' ପଣ୍ଡିତ ସୀତାପତି ଭଟ୍ଟାଚାର୍ଯ୍ୟ ସଂପାଦିତ, ମଧ୍ୟଲୀଳା ପୃ-୧୪୨ ଦ୍ରଷ୍ଟବ୍ୟ ।

ମହାରାଜା କୃଷ୍ଣଦେବ ରାୟଙ୍କ ସଙ୍ଗେ ବିଭିନ୍ନ ସମୟରେ ସେ ଯୁଦ୍ଧକ୍ଷେତ୍ରରେ ଅବତରଣ କରି ଜୟଲାଭ କରିଥିଲେ । ତେଲଙ୍ଗାନାରେ ବାହମନୀ ସୁଲତାନଙ୍କ କୌଶଳ ହେତୁ ଉତ୍କଳ ଏବଂ କର୍ଣ୍ଣାଟର ଦୁଇଟି ପରାକ୍ରାନ୍ତ ହିନ୍ଦୁ ରାଜାଙ୍କ ମଧ୍ୟରେ ଯୁଦ୍ଧବିଗ୍ରହ ଉଭୟ ରାଜଶକ୍ତିକୁ ଦୁର୍ବଳ କରିବାକୁ ଲାଗିଲା । ବଙ୍ଗଦେଶରେ ଦେଖାଦେଇଥିବା ହୁସେନ ସାହାଙ୍କ ମୁସଲମାନ ଶକ୍ତି ହେତୁ ଉତ୍କଳର ପୂର୍ବସୀମାରେ ମଧ୍ୟ ଅସ୍ଥିରତା ସୃଷ୍ଟି ହୋଇଥିଲା । ଏପରିସ୍ଥିତିରେ ସୂର୍ଯ୍ୟବଂଶର ଶେଷରାଜା ବୈଷ୍ଣବ ଧର୍ମରେ ଦୀକ୍ଷା ଗ୍ରହଣ କରି ଦେଶରକ୍ଷା ଭାର ତାଙ୍କ ପୁତ୍ର ବୀରଭଦ୍ର ଏବଂ ସେନାପତିମାନଙ୍କ ଉପରେ ନ୍ୟସ୍ତକରି ଏକପ୍ରକାର ସାଧୁବ୍ରତ ଅବଲମ୍ବନ କରିଥିଲେ । ଅଧିକାଂଶ ସେ ପୁରୀରେ ରହୁଥିଲେ ।

୧୫୧୦ ଖ୍ରୀଷ୍ଟାବ୍ଦରେ ନବଦ୍ୱୀପରୁ ଶ୍ରୀ ଚୈତନ୍ୟ ଉତ୍କଳକୁ ଆସିଥିଲେ ତାଙ୍କ ଆଗମନର ଅଳ୍ପକାଳ ପୂର୍ବରୁ କେତେକ ଗୌଡ଼ୀୟ ବୈଷ୍ଣବ ମଧ୍ୟ ପୁରୀରେ ପହଞ୍ଚିଥିଲେ । ସେମାନେ ଶ୍ରୀ ଜଗନ୍ନାଥଙ୍କ ମନ୍ଦିରରେ ସଂକୀର୍ତ୍ତନ ସହ ଗୀତଗୋବିନ୍ଦ ଗାନରେ ଯୋଗଦେଉଥିଲେ । କିନ୍ତୁ ଶ୍ରୀ ଜଗନ୍ନାଥ ମନ୍ଦିରରେ ପୂର୍ବରୁ ଯେଉଁ ତେଲେଙ୍ଗା ସମ୍ପ୍ରଦାୟ (ପାନ ସମ୍ପ୍ରଦାୟ) ନିଯୁକ୍ତ ହୋଇ ଗୀତଗୋବିନ୍ଦ ଗାନ ଓ ନୃତ୍ୟ ପ୍ରାଚୀନ କଳିଙ୍ଗର ସଙ୍ଗୀତ (ଆଧୁନିକ) ଓଡ଼ିଶୀରୀତିରେ ପରିବେଷିତ ହେଉଥିଲା, ତାହା ବଙ୍ଗରୁ ସମାଗତ ବୈଷ୍ଣବ ସଂପ୍ରଦାୟ ଗାନ କରିବା ସମ୍ଭବ ହେଲାନାହିଁ ।

ଶାସ୍ତ୍ରୀୟ ସଙ୍ଗୀତରେ ଏପରି ବ୍ୟତିକ୍ରମ ଦେଖି ମହାରାଜା ପ୍ରତାପରୁଦ୍ର ତାଙ୍କର ଏକ ଘୋଷଣାପତ୍ର ଅଭିଲେଖ ମାଧ୍ୟମରେ ଶ୍ରୀମନ୍ଦିରସ୍ଥ ଜୟବିଜୟ ଦ୍ୱାର ପରେ ସ୍ଥାପନ କଲେ । ସେଥିରେ ସେ ଆଦେଶ ଦେଇଥିଲେ ଯେ, ଗୀତଗୋବିନ୍ଦ ଗାନ ବୈଷ୍ଣବ ସଂପ୍ରଦାୟ ତେଲେଙ୍ଗା ସଂପ୍ରଦାୟଙ୍କଠାରୁ ଶିକ୍ଷା କରି ଶ୍ରୀମନ୍ଦିରରେ ବିଶୁଦ୍ଧ ଭାବେ ପରିବେଷଣ କରିବା ଆବଶ୍ୟକ । ସେମାନେ ଅନ୍ୟ କୌଣସି ଗାନ ନ ଗାଇ କେବଳ ଜୟଦେବଙ୍କ ଗୀତଗୋବିନ୍ଦର ଗାନ ଗାଇବେ । ସେତେବେଳେ ଏଠାରେ ବିଶଦ୍ ବୈଷ୍ଣବ ଧର୍ମର ନୂତନ ଅଭ୍ୟୁଦୟ ଓଡ଼ିଶାର ରାଜନୈତିକ ସ୍ଥିତି ଆଲୋଚିତ ହେବ । ଖ୍ରୀ ୧୫୧୦ରେ ଶ୍ରୀ ଚୈତନ୍ୟଙ୍କ ଆଗମନ ପୂର୍ବରୁ ଯେଉଁ ବୈଷ୍ଣବ ସାଧୁମାନେ ଓଡ଼ିଶାରେ ରହି ଧର୍ମପ୍ରଚାର କରିଥିଲେ ସେମାନଙ୍କ ମଧ୍ୟରେ ସାଧୁ ପ୍ରଧାନ ଜଗନ୍ନାଥ ଦାସ ଓଡ଼ିଆ ଭାଷାରେ "ଭାଗବତ" ନବାକ୍ଷରୀ ଛନ୍ଦରେ ଏପରି ସୁବୋଧ ଭାଷାରେ ରଚନା କରିଥିଲେ । ଯାହାକି ଉତ୍କଳର ଆବାଳବୃଦ୍ଧ ବନିତା ଶ୍ରୀ କୃଷ୍ଣଙ୍କଲୀଳା ପରମାର୍ଥ ଧର୍ମରେ ବିହ୍ୱଳ ହୋଇ "ଭାଗବତ" ପାରାୟଣକୁ ପରମଧର୍ମ ବୋଲି ଗ୍ରହଣ କରିଥିଲେ । ତେଣୁ ଉତ୍କଳର ପ୍ରତ୍ୟେକ ପୁରପଲ୍ଲୀରେ "ଭାଗବତ ଟୁଙ୍ଗିମାନ" ନିର୍ମିତ ହୋଇ ସେଥିରେ 'ଭାଗବତ ପୁରାଣ ପାଠ କରିବା ପ୍ରଚଳିତ ହେଲା । ଜଗନ୍ନାଥ ଦାସଙ୍କ ଭାଗବତ ପୋଥିକୁ

ମଧ୍ୟ ପରମ ପବିତ୍ର ବସ୍ତୁରୂପେ ଘରେ ଘରେ ପୂଜିତ ହେଲେ । ଜଗନ୍ନାଥ ଦାସ ନିଜେ ସ୍ବୟଂରେ ମହୋଦଧିକୂଳରେ ସାତଲହଡ଼ି ମଠରେ ରହି ଭାଗବତ ପାରାୟଣ କରୁଥିବା ଜଣାଯାଏ । ଶ୍ରୀମନ୍ଦିରର କଳ୍ପବଟ ମୂଳରେ ପୁରାଣପାଠ କରି ତାହା ଆଗ୍ରହୀ ଶ୍ରୋତାଙ୍କୁ ଶୁଣାଇଥିବା ମଧ୍ୟ କଥିତ ହୁଏ ।

ଜଗନ୍ନାଥ ଦାସଙ୍କ ସମୟରେ ବଳରାମ ଦାସ, ଅଚ୍ୟୁତାନନ୍ଦ ଦାସ, ଯଶୋବନ୍ତ ଦାସ ଏବଂ ଅନନ୍ତ୍ରମେ ଦାସ, (ପଞ୍ଚସଖା) ଧର୍ମ ସମ୍ପର୍କୀୟ ଯେଉଁ ଗ୍ରନ୍ଥଗୁଡ଼ିକ ଓଡ଼ିଆରେ ରଚନା କରିଥିଲେ ସେଥିରେ ମୁଖ୍ୟତଃ "ନାଥଧର୍ମ"ର ପ୍ରଭାବ ପଡ଼ିଥିଲା । ଉଦାହରଣ ସ୍ବରୂପ ବଳରାମ ଦାସଙ୍କ "ସପ୍ତାଙ୍ଗ ଯୋଗସାର ଟୀକା" ନାମକ ଗ୍ରନ୍ଥରେ ନାଥ ସମ୍ପ୍ରଦାୟର ଗୋରକ୍ଷନାଥଙ୍କ ଯୋଗ ଓ ପ୍ରାଣାୟାମ ସମ୍ପର୍କରେ ଯେଉଁ ତଥ୍ୟ ବିବୃତ ହୋଇଛି ତାହା ସରଳଭାଷାରେ ଲେଖା ହୋଇଅଛି । ବଳରାମ ଦାସଙ୍କ ପ୍ରଣୀତ "ଗୁପ୍ତ ଗୀତା", "ବ୍ରହ୍ମାଣ୍ଡ ଭୂଗୋଳ", "ବିରାଟଗୀତା"ରେ ବର୍ଣ୍ଣିତ ଅଛି ଯେ, ନିଜେ ଶ୍ରୀକୃଷ୍ଣ "ପିଣ୍ଡବ୍ରହ୍ମାଣ୍ଡ" ସମ୍ବନ୍ଧରେ ତତ୍ତ୍ୱ ବୁଝାଇ ଦେଇଥିଲେ । ସେପରି ଅଚ୍ୟୁତାନନ୍ଦଙ୍କ "ଶୂନ୍ୟ ସଂହିତା"ରେ ମଧ୍ୟ "ଯୋଗ" ସମ୍ପର୍କରେ "ଯୋଗାନ୍ତ" ଓ "ନାଗାନ୍ତ" ବିଷୟକ ତତ୍ତ୍ୱ ବ୍ୟାଖ୍ୟା ମଧ୍ୟ ବୁଝାଇ ଦିଆଯାଇଛି । ଶ୍ରୀ କୃଷ୍ଣଙ୍କଠାରେ "ବୌଦ୍ଧ ତାନ୍ତ୍ରିକ ମତରେ ସେଥିରେ ବିବୃତ ହୋଇଛି । ଅଚ୍ୟୁତାନନ୍ଦ ମଧ୍ୟ "ନିରାକାର" (ବିଷ୍ଣୁ ବା କୃଷ୍ଣଙ୍କ ଭଜନରେ ନିର୍ମଳ ଆନନ୍ଦ ଉପଭୋଗ୍ୟ ବୋଲି ଉଲ୍ଲେଖ କରିଛନ୍ତି, ଯଥା :

"ବୃଦ୍ଧମାତା ଆଦିଶକ୍ତି ସଖିଛନ୍ତି କହି,  
ନିରାକାର ଭଜନେ ନିର୍ମଳ ଆନନ୍ଦ ପାଇଁ,  
ଶୂନ୍ୟବର ବୋଲସିନା ବୋଲନ୍ତି କୃଷ୍ଣଙ୍କୁ  
ବାରେ କହିଦେଲି ରୂ ଧ୍ୟାଇ ନିରାକାରଙ୍କୁ ।" (୧)

ସେମାନଙ୍କ ଲେଖାରୁ ସ୍ପଷ୍ଟ ଜଣାଯାଇଛି ଯେ ପୂର୍ବର ନିମ୍ବାର୍କପନ୍ଥୀ ବୈଷ୍ଣବ-ମାନଙ୍କ ମତରୁ, ଅର୍ଥାତ୍ ଖ୍ରୀ ୧୨ଶ ଶତାବ୍ଦୀର ରାଧା-କୃଷ୍ଣଙ୍କଠାରେ ଯେଉଁ ଭକ୍ତିମୂଳକ ଉପାସନା ପ୍ରବର୍ତ୍ତିତ ହୋଇ ଶ୍ରୀ ଜଗନ୍ନାଥଙ୍କୁ ଶ୍ରୀ କୃଷ୍ଣଙ୍କ ସ୍ଥାନରେ ଉପସ୍ଥାପନ କରାଯାଇଥିଲା ସେଥିରେ କିଛି ପରିବର୍ତ୍ତନ କରି ଖ୍ରୀ ୧୬ଶ ଶତାବ୍ଦୀରେ ଉତ୍କଳୀୟ ବୈଷ୍ଣବମାନେ ଶ୍ରୀ କୃଷ୍ଣଙ୍କ ରାସକେଳିକୁ ଦୁଇ ଭାଗରେ ବିଭକ୍ତ କରିଥିଲେ । ଆଉ ମଧ୍ୟ ନାଥପନ୍ଥୀମାନେ ଯୋଗ ସାଧନାକୁ ଭିତ୍ତିକରି ତାନ୍ତ୍ରିକ ବିଧିରେ ଶୂନ୍ୟ ଭଜନର ପ୍ରାଧାନ୍ୟ ଉପଲବ୍ଧି କରି ଆଂଶିକ ଭାବେ ମଧ୍ୟଯୁଗର ବୌଦ୍ଧଧର୍ମ ପ୍ରଭାବିତ ସମ୍ପ୍ରଦାୟଙ୍କ ଜାତ

---

(୧) ଶୂନ୍ୟସଂହିତା, ୯ମ ।

ଅନୁସରଣ କରିଥିଲେ । ଜଗନ୍ନାଥ ଦାସଙ୍କ ଓଡ଼ିଆ 'ଭାଗବତ'ରୁ ମଧ୍ୟ ଏଥିର ଆଭାସ ଉପଲବ୍ଧ ହୁଏ ।

ପଞ୍ଚସଖାଙ୍କ ମଧ୍ୟରେ ଯଶୋବନ୍ତ ଦାସଙ୍କ ଗୋବିନ୍ଦଚନ୍ଦ୍ର ଗୀତାରୁ ସ୍ପଷ୍ଟ ଉପଲବ୍ଧ ହୁଏ ଯେ ନାଥ ସମ୍ପ୍ରଦାୟର 'ସିଦ୍ଧାଚାର୍ଯ୍ୟ' ହାଡ଼ିପାଙ୍କ ଅଲୌକିକ ଯୋଗ କ୍ରିୟା ବର୍ଣ୍ଣିତ ହୋଇଛି । କେବଳ ସେତିକି ନୁହେଁ ତାଙ୍କର "ପ୍ରେମଭକ୍ତି ବ୍ରହ୍ମ ଗୀତା"ରେ ଶୂନ୍ୟ ମତର ବହୁଳ ପ୍ରଚାର ପରିଦୃଷ୍ଟ ହୁଏ ।

"ପଞ୍ଚସଖା"ର ଶେଷୋକ୍ତ ସଖା ହେଉଛନ୍ତି ଅନନ୍ତ ଦାସ । ସେ ତାଙ୍କର "ଶୂନ୍ୟ ନାମ ଭେଦ ଏବଂ ପିଣ୍ଡ ବ୍ରହ୍ମାଣ୍ଡ" ବିଷୟରେ ଯୋଗ ସମ୍ପର୍କୀୟ ବ୍ୟାଖ୍ୟାନ କରିଥିବା ଦେଖାଯାଏ । ତାଙ୍କର "ଉଦୟ ଭାଗବତ"ରେ ଉପରୋକ୍ତ ଯୋଗର ବିଶଦବର୍ଣ୍ଣନା କରାଯାଇଛି । ସୁତରାଂ ଓଡ଼ିଶାକୁ ଶ୍ରୀ ଚୈତନ୍ୟଙ୍କ ଆଗମନ ପୂର୍ବରୁ ଓ ତାଙ୍କର ଓଡ଼ିଶାରେ ଅବସ୍ଥିତି କାଳର ଯେଉଁ ଉତ୍କଳୀୟ ବୈଷ୍ଣବମାନଙ୍କର ଦ୍ୱିତୀୟ ଶାଖାଟି ବୌଦ୍ଧତାନ୍ତ୍ରିକ ମତକୁ ଅନୁସରଣ କରି ଶୂନ୍ୟବାଦ ପ୍ରସାର ଓ ପ୍ରଚାର କରିଥିଲେ ସେମାନଙ୍କ ସେହି ପ୍ରଚାର ଓଡ଼ିଶାର ରକ୍ଷଣଶୀଳ ବୈଷ୍ଣବ ତଥା ବୈଦିକ ଧର୍ମାବଲମ୍ବୀ ବ୍ରାହ୍ମଣ ଓ ଉଚ୍ଚ ଜାତିମାନଙ୍କୁ ପ୍ରଭାବିତ କରିପାରି ନଥିଲେ । କାରଣ ସେମାନେ ନିମ୍ବାର୍କଙ୍କ ପ୍ରବର୍ତ୍ତିତ ଦ୍ୱୈତ ମତବାଦକୁ ଆଶ୍ରୟକରି ଗୋପୀନାଥ ଓ ଗୋପାଳକୃଷ୍ଣଙ୍କୁ ଅଖି ଧରୀ କରି ବୌଦ୍ଧ ମତବାଦକୁ ପ୍ରତ୍ୟାଖ୍ୟାନ କରିଥିଲେ । ସେତେବେଳେ ଦାକ୍ଷିଣାତ୍ୟ ପଣ୍ଡିତ ଗୋବିନ୍ଦାଚାର୍ଯ୍ୟଙ୍କ ପୁତ୍ର ଶ୍ରୀନିବାସ ଦାସଙ୍କ ସଙ୍କଳିତ "ସକଳାଚାର୍ଯ୍ୟମତ ସଂଗ୍ରହମ୍" ନାମକ ସଂସ୍କୃତ ଗ୍ରନ୍ଥରେ ବୈଷ୍ଣବାଚାର୍ଯ୍ୟମାନଙ୍କ "ଭକ୍ତିଯୋଗ"ରୁ ସ୍ପଷ୍ଟ ଜଣାଯାଏ ଯେ, ବୌଦ୍ଧତାନ୍ତ୍ରିକ ମତ ଆଦୌ ସେମାନେ ଗ୍ରହଣ କରୁନଥିଲେ । ତେଣୁ ବଲ୍ଲଭାଚାର୍ଯ୍ୟ "ଅଚିନ୍ତ୍ୟ ଭେଦାଭେଦ" ଦର୍ଶନ ସମ୍ପର୍କରେ ପୂର୍ଣ୍ଣ ପ୍ରଜ୍ଞା ଭାଷ୍ୟ ଲେଖି ପ୍ରେମଭକ୍ତି ସମେତ ଶ୍ରୀ କୃଷ୍ଣଙ୍କ ଆଖି ଧରା ପ୍ରବର୍ତ୍ତିତ କଲେ ଏବଂ ତାହା ପରବର୍ତ୍ତୀ-କାଳରେ ଜୀବଗୋସ୍ୱାମୀ ତାଙ୍କର "ଷଟ୍ ସନ୍ଦର୍ଭ-ଦର୍ଶନରେ ରୂପଗୋସ୍ୱାମୀ ତାଙ୍କର "ଭକ୍ତି ରସାମୃତ-ସିନ୍ଧୁରେ ଏବଂ ସର୍ବୋପରି ଉତ୍କଳୀୟ ପଣ୍ଡିତ ବଳଦେବ ବିଦ୍ୟାଭୂଷଣ ତାଂକର "ଗୋବିନ୍ଦ ଭାଷ୍ୟ"ରେ ପ୍ରାଞ୍ଜଳ ଭାବେ ବ୍ୟାଖ୍ୟାନ କରି "ପ୍ରେମ ଭକ୍ତି"ର ମହତ୍ତ୍ୱ ପ୍ରତିପାଦନ କରିଛନ୍ତି ।

ଶ୍ରୀ ଚୈତନ୍ୟ କିନ୍ତୁ କୌଣସି ମତବାଦ କିମ୍ବା ଦର୍ଶନ ରୂପକ ଜଙ୍ଗଲରେ ନପଶି ସାଧାରଣ ଲୋକଙ୍କୁ ପ୍ରେମଭକ୍ତିର ମାଧୁର୍ଯ୍ୟ ସମ୍ପର୍କରେ ଶିକ୍ଷାଦେବାକୁ ଯାଇ ସଂକୀର୍ତ୍ତନ ମାଧ୍ୟମରେ ନାମ ଉଚ୍ଚାରଣ କରିବା ରୀତି ପ୍ରସାରିତ କରିଥିଲେ । ସେ ଜାତି-

ବର୍ଣ୍ଣ ନିର୍ବିଶେଷରେ ସମସ୍ତେ ମିଶି ନାମ ସଙ୍କୀର୍ତ୍ତନ କରିବାକୁ ଉପଦେଶ ଦେଇ ନିଜେ ମଧ୍ୟ ନୃତ୍ୟ କରୁଥିଲେ । ଜୟଦେବଙ୍କ 'ଗୀତଗୋବିନ୍ଦ' ଗାନ ଶୁଣିକି ଶ୍ରୀ ଚୈତନ୍ୟ ପୁଲକିତ ହେଉଥିଲେ । ରାଧାକୃଷ୍ଣଙ୍କ କେଳି ପ୍ରସଙ୍ଗ ଭକ୍ତମାନଙ୍କ ମନରେ ଆନନ୍ଦ ସୃଷ୍ଟି କରୁଥିଲା । ଏଣୁ ରୂପଗୋସ୍ୱାମୀ ରାଧାକୃଷ୍ଣଙ୍କ ପ୍ରେମଲୀଳା ଅଧିକ ପ୍ରଚାର ଓ ପ୍ରସାର ପାଇଁ ନିମ୍ନୋକ୍ତ ଗ୍ରନ୍ଥଗୁଡ଼ିକ ରଚନା କରିଥିଲେ ।

(୧) ହଂସଦୂତ (୨) ମୁକୁନ୍ଦ (୩) ମୁକ୍ତାବଳୀ ସ୍ତବମାଳା (୪) ଲଳିତ ମାଧବ (୫) ବିଦଗ୍ଧ ମାଧବ (୬) ପଦ୍ୟାବଳୀ ପ୍ରଭୃତି । ମଥୁରାଦାସଙ୍କ ରଚିତ ରାଧାକୃଷ୍ଣଙ୍କ ପ୍ରେମଲୀଳାତ୍ମକ ସଂସ୍କୃତ ନାଟକ 'ବୃଷଭାନୁଜା' ମଧ୍ୟ ଜନସମାଜରେ ଆଦୃତ ହୋଇଥିଲା । ଏଥି ପୂର୍ବରୁ ବଲ୍ଲଭାଚାର୍ଯ୍ୟଙ୍କ 'ଜ୍ଞାନାମୃତ ସାର' ନାମକ ସଂହିତା ଗ୍ରନ୍ଥ ବୈଷ୍ଣବ ସମ୍ପ୍ରଦାୟ ମଧ୍ୟରେ 'ନାରଦ ପଞ୍ଚରାତ୍ର'ର ସମକକ୍ଷ ହୋଇ ରାଧାକୃଷ୍ଣଙ୍କ ପ୍ରେମଲୀଳା ଉତ୍କଳୀୟ ଜନସମାଜରେ ଉତ୍ସାହ ବଢ଼ାଇ ଥିଲା ।

ଶ୍ରୀ ଚୈତନ୍ୟ ସାକ୍ଷାତ୍ ଶ୍ରୀକୃଷ୍ଣଙ୍କ ଅଂଶ ରୂପେ ପରିକଳ୍ପିତ ହେଲେ । ମହାରାଜା ପ୍ରତାପରୁଦ୍ର ତାଙ୍କର ଶିଷ୍ୟ ହୋଇ ପ୍ରେମଭକ୍ତିରେ ନିମଜ୍ଜିତ ହେଲେ । ରାଜାଙ୍କ କର୍ମଚାରୀମାନେ ମଧ୍ୟ ସେହି ପନ୍ଥାର ପଥିକ ହୋଇଥିଲେ । ଏଣୁ ଉତ୍କଳର ଦକ୍ଷିଣାଞ୍ଚଳରେ ସାମରିକ ଦୁର୍ବଳତା ଦେଖାଦେଲା । ସେତେବେଳେ ରାଜମହେନ୍ଦ୍ରୀ ଓଡ଼ିଶାର ଏକ ମୁଖ୍ୟଶାସନ କେନ୍ଦ୍ର ହୋଇଥିଲା । ସେଠାର ଶାସନ କର୍ତ୍ତାଥିଲେ ଓଡ଼ିଶାର ସ୍ୱନାମଧନ୍ୟ କବି ଓ କୃଷ୍ଣଭକ୍ତ ରାମାନନ୍ଦ ରାୟ । ଶ୍ରୀ ଚୈତନ୍ୟଙ୍କ ଦାକ୍ଷିଣାତ୍ୟ ଯାତ୍ରା ବେଳେ ରାମାନନ୍ଦରାୟଙ୍କ ସଙ୍ଗେ ତାଙ୍କର ସାକ୍ଷାତ ହୋଇଥିଲା । ଶ୍ରୀ ଚୈତନ୍ୟଙ୍କ ଭକ୍ତ ହେବାରୁ ରାମାନନ୍ଦ ତାଙ୍କର ଶିଷ୍ୟତ୍ୱ ଗ୍ରହଣ କରି ଜଗନ୍ନାଥବଲ୍ଲଭ ନାମକ ନାଟକ ରଚନା କରିବାକୁ ଲାଗିଲେ । ସେହି ସୁବିଧାପାଇ ବିଜୟନଗର (କର୍ଣ୍ଣାଟକ)ର ମହାରାଜା

(1) Hist. of Indian Literature, Vol. III Pt. 21 (by M. Winternitz)

(2) Ed. Kavyamala No. 84 (1903)

(3) Ibid Pt. II, 1886

(4) S. K. De, Dacca, Introduction to Padyavali.

(5) Kavyamala, No. 81, (1903)

(6) S. K. De, History Sanskrit Literature P 468 f.

(7) Ed. Kavyamala, No. 40 (1895)

କୃଷ୍ଣଦେବ ରାୟ ଦକ୍ଷିଣରେ ଥିବା ମହାରାଜା କୃଷ୍ଣଦେବ ରାୟ ଓଡ଼ିଶାର କେତେକ ଦୁର୍ଗ ଅଧିକାର କରି ପ୍ରବଳବେଗରେ କଳିଙ୍ଗର ସିଂହାଚଳ, ଶ୍ରୀ କୂର୍ମ ପ୍ରଭୃତି ଦେବ ମନ୍ଦିର-ମାନଙ୍କରେ ଆରାଧନା ସମ୍ପନ୍ନ କଲେ । ମହାରାଜା ପ୍ରତାପରୁଦ୍ରଙ୍କ ପୁତ୍ର ବୀରଭଦ୍ରଙ୍କୁ ବନ୍ଦୀ କରି ଲାଞ୍ଛିତ କଲେ । ଶେଷରେ ପ୍ରତାପରୁଦ୍ରଙ୍କ କନ୍ୟା ତୁକ୍କା (ତୁଗା)ଙ୍କ ପାଣିଗ୍ରହଣ କରି ଗଜପତିଙ୍କ ସଙ୍ଗେ ସନ୍ଧି ସ୍ଥାପନ କଲେ । ଏଥିରୁ ସ୍ପଷ୍ଟ ଜଣାଯାଉଛି ଯେ, ମହାରାଜା ପ୍ରତାପରୁଦ୍ର ଏବଂ ତାଙ୍କ କର୍ମଚ୍ୟାରୀମାନେ ସାମ୍ରାଜ୍ୟର ଦକ୍ଷିଣାଞ୍ଚଳ ସୁରକ୍ଷା କରିବାକୁ ଅସମର୍ଥ ହୋଇଥିବାରୁ ଏହା ସମ୍ଭବ ହୋଇଥିଲା । କିନ୍ତୁ ପ୍ରତାପରୁଦ୍ର ବୈଷ୍ଣବ ଧର୍ମରେ ଦୀକ୍ଷା ଗ୍ରହଣ ପୂର୍ବରୁ ଓଡ଼ିଶାର ସାମରିକ ଶକ୍ତି ଯଥେଷ୍ଟ ଉନ୍ନତ ହୋଇଥିଲା । ଏବିଷୟ ତାଙ୍କ ପ୍ରଶସ୍ତିକାରଙ୍କ ତାମ୍ରଶାସନ ଲେଖାରୁ ନୁହେଁ, ତାଙ୍କ ସଭାସଦ ଓ କବିମାନଙ୍କ କାବ୍ୟରୁ ମଧ୍ୟ ସୂଚିତ ହୋଇଛି । କବି ବାସୁଦେବ ସାର୍ବଭୌମଙ୍କ ରଚିତ "ଅଦ୍ୱୈତ ମକରନ୍ଦ" ନାମକ ଗ୍ରନ୍ଥର ପ୍ରସ୍ତାବନାରେ ଲେଖାଅଛି ଯେ, କର୍ଣ୍ଣାଟରେ ଥିବା କୃଷ୍ଣଦେବଙ୍କ ଗର୍ବକୁ ସେ ଖର୍ବ କରିଥିଲେ ।

"କର୍ଣ୍ଣାଟେଶ୍ୱର କୃଷ୍ଣରାୟ ନୃପତେର୍ଗର୍ବାଗ୍ନି ନିର୍ବାପିତା ରାମାନନ୍ଦ ରାୟ ମଧ୍ୟ ତାଙ୍କ "ଜଗନ୍ନାଥବଲ୍ଲଭ ନାଟକ"ରେ ଲେଖିଥିଲେ ଗୁର୍ଜର, ବଦର୍ଭ, ଗୌଡ଼ ପ୍ରଭୃତି ରାଜାମାନେ ତାଙ୍କ ନାମ ଶୁଣି ଭୟଭୀତ ହେଉଥିଲେ । ମୁସଲମାନ ରାଜା ସେକନ୍ଦର ଗିରି ଗୁହାରେ ଲୁଚି ରହୁଥିଲେ । ବାସ୍ତବରେ ୧୫୧୦ ଖ୍ରୀଷ୍ଟାବ୍ଦ ଅର୍ଥାତ୍ ଉତ୍କଳକୁ ଚୈତନ୍ୟଙ୍କ ଆଗମନବର୍ଷ ପ୍ରତାପରୁଦ୍ର ତାଙ୍କ ସୈନ୍ୟ ସାମନ୍ତଙ୍କ ସହ କୃଷ୍ଣାନଦୀତଟ ଉଦୟଗିରିଠାରେ ଅବସ୍ଥାନ କରି ବ୍ରାହ୍ମଣମାନଙ୍କୁ ଶାସନ ଦାନ କରିଥିବା ପ୍ରସଙ୍ଗ ତାଙ୍କର ନେଲୁର ଜିଲ୍ଲା ଭେଲଚେଲ ଅଭିଲେଖରୁ ପ୍ରକଟିତ ହୁଏ । (୧)

ଚୈତନ୍ୟ କେବଳ ବୈଷ୍ଣବଧର୍ମ ପ୍ରଚାର ଉଦ୍ଦେଶ୍ୟରେ ଓଡ଼ିଶାକୁ ଆସି ନଥିଲେ । ସେ ବଙ୍ଗର ମୁସଲମାନମାନଙ୍କୁ ବୈଷ୍ଣବଧର୍ମରେ ଦୀକ୍ଷିତ କରିବା ଲକ୍ଷ୍ୟରେ ବୋଧହୁଏ ସେତେବେଳେ ଉଦ୍ୟମ କରିଥିବା ସମ୍ଭବ । ତାଙ୍କର ସେହି ଉଦ୍ୟମରେ ଉତ୍ତ୍ୟକ୍ତ ହୋଇ ବଙ୍ଗର ମୁସଲମାନ ହୁସେନ ସାହା ନଦିଆରୁ ଯେଉଁ ବୈଷ୍ଣବମାନଙ୍କୁ ନିର୍ଶ୍ଚିହ୍ନ କରିବା ଉଦ୍ଦେଶ୍ୟରେ ପ୍ରବଳ ଉଦ୍ୟମ କରିବା ଜାଣିପାରି ଚୈତନ୍ୟ ଓ ତାଙ୍କର ସହଧର୍ମୀମାନେ ନିରାପତ୍ତା ସକାଶେ ଓଡ଼ିଶାରେ ଆଶ୍ରୟ ନେବାକୁ ଆସିଥିବା ସମ୍ଭବ । ତେଣୁ ହୁସେନ ସାହାଙ୍କ ଓଡ଼ିଶା ଅଭିଯାନ ଖ୍ରୀ ୧୫୧୮ରେ ଆରମ୍ଭ ହୋଇଥିଲା । ସେତେବେଳେ ମହାରାଜା ପ୍ରତାପରୁଦ୍ର ଦାକ୍ଷିଣାତ୍ୟରେ ଏହି ଖବର ପାଇବାକ୍ଷଣି

(୧) South Indian Inscription, Vol. IV, No. 12 (1920-21)

ଶ୍ରୀ ଜଗନ୍ନାଥ ମନ୍ଦିର ଏବଂ ଓଡ଼ିଶାର ରାଜଧାନୀର ସୁରକ୍ଷା ପାଇଁ ବାଳମ୍ବ ନକରି ଓଡ଼ିଶାକୁ ଫେରିଆସି ହୁସେନ ସାହାଙ୍କୁ ବଙ୍ଗର ମନ୍ଦାରଣଗଡ ପର୍ଯ୍ୟନ୍ତ ଗୋଡ଼େଇ ନେଇଥିଲେ ।

କର୍ଣ୍ଣାଟର ରାଜା କୃଷ୍ଣଦେବ ରାୟଙ୍କ ଅଭିଷେକ ୧୫୦୯ ଖ୍ରୀଷ୍ଟାବ୍ଦରେ ସପନ୍ନ ହୋଇଥିଲା । ଓଡ଼ିଶାର ଗଜପତି ରାଜାମାନଙ୍କ ହସ୍ତରେ ବାରମ୍ବାର କର୍ଣ୍ଣାଟର ପୂର୍ବରାଜା-ମାନେ ପରାଜିତ ହୋଇଥିବାରୁ କୃଷ୍ଣଦେବ ରାୟଙ୍କ ମନରେ ଗଜପତିଙ୍କ ବିଦ୍ୱେଷ ବହ୍ନି ଉଦ୍ଦୀପିତ ହୋଇଥିଲା ତଥାପି ପ୍ରତାପରୁଦ୍ରଙ୍କଠାରୁ ପରାଜିତ ହୋଇ ସେ ଅଧିକ ବଳ ସଞ୍ଚୟ କରିବାରେ ଲାଗିଥିଲେ । ତାଙ୍କର କୂଟନୈତିକ ମନ୍ତ୍ରୀ ତିମ୍ମରସଙ୍କ ଉପଦେଶକ୍ରମେ ଓଡ଼ିଶାର ସୈନ୍ୟମାନେ କୃଷ୍ଣାନଦୀ କୂଳରୁ ସ୍ୱଦେଶକୁ ଫେରିଯିବା ଖବର ପାଇ କୃଷ୍ଣଦେବ ରାୟ ତାଙ୍କର ସମସ୍ତ ଶକ୍ତି ଖଟାଇ ଦକ୍ଷିଣରେ ଗଜପତି ମହାରାଜାଙ୍କ ଦୁର୍ଗ-ଗୁଡ଼ିକ ଅଧିକାର କରିଥିଲେ ।

ଚୈତନ୍ୟଙ୍କ "ନାମ ସଙ୍କୀର୍ତ୍ତନ" ଏବଂ ବୈଷ୍ଣବଧର୍ମର ନୂତନ ଓ ସରଳ ପ୍ରେମଭକ୍ତିର ପ୍ରଚାର ଓଡ଼ିଶାରେ ଅଭୂତପୂର୍ବ ପ୍ରଭାବ ବିସ୍ତାର କଲା । ଦାକ୍ଷିଣାତ୍ୟରେ ଓଡ଼ିଶାର ସାମରିକଶକ୍ତି ହ୍ରାସ ହେବାରୁ ପ୍ରତାପରୁଦ୍ରଙ୍କ ମନରେ ନିଶ୍ଚିତ ଭାବେ ନୈରାଶ୍ୟଜାତ ହୋଇଥିବ । ସେଥିରୁ ନିବୃତ୍ତ ହେବାପାଇଁ ସେ ଗୌଡ଼ୀୟ ବୈଷ୍ଣବଧର୍ମରେ ଦୀକ୍ଷାନେଇ ମହାପୁରୁଷ ଶ୍ରୀ ଚୈତନ୍ୟଙ୍କଠାରୁ ଉପଦେଶ ପାଇ ସାଧୁସନ୍ଥ ଜୀବନ ଅତିବାହିତ କଲେ ।

ଆଗରୁ କୁହାଯାଇଛି ଯେ, "ଭାଗବତ ଧର୍ମ" ଓଡ଼ିଶାର ପୁରପଲ୍ଲୀରେ ବ୍ୟାପି ଯାଇଥିଲା । ଏବେ ଚୈତନ୍ୟଙ୍କ "ନାମ ସଙ୍କୀର୍ତ୍ତନ" ଲୋକମାନଙ୍କ ମନରେ ଆଧ୍ୟାତ୍ମିକ ଚେତନା ଅଧିକ ସୃଷ୍ଟି କଲା । ତେଣୁ ଚୈତନ୍ୟଙ୍କୁ ସେମାନେ ଶ୍ରୀ କୃଷ୍ଣଙ୍କ ଅଂଶାବତାର ରୂପେ ପୂଜା କରିବାକୁ ଲାଗିଲେ । ତାଙ୍କର ଶିଷ୍ୟମାନଙ୍କୁ ବିଶେଷତଃ ଗଜପତି ମହାରାଜା ପ୍ରତାପରୁଦ୍ରଙ୍କୁ ମଧ୍ୟ ସେମାନେ ଆଦର୍ଶପୁରୁଷ ବୋଲି ଜ୍ଞାନ କଲେ । ଏଥିର ନିଦର୍ଶନରୂପେ ବୈଷ୍ଣବ କବି କର୍ଣ୍ଣପୁରଙ୍କ (ଖ୍ରୀ ୧୬ଶ ଶତାବ୍ଦୀ ମଧ୍ୟଭାଗ) ରଚିତ "ଚୈତନ୍ୟ ଚନ୍ଦ୍ରୋଦୟ" ନାମକ ନାଟକ ଉଦାହରଣରୂପେ ଉଲ୍ଲେଖ କରାଯାଇପାରେ । ଏହି ନାଟକଟି ୧୦ଟି ଅଙ୍କରେ ପୂର୍ଣ୍ଣ ହୋଇଅଛି । ନାଟକରେ "କଳି" (ଯୁଗ) ଏବଂ ଅଧର୍ମ ନାଟ୍ୟ ଭୂମିକାରେ ଅବତୀର୍ଣ୍ଣ ହୋଇ ସେ ଦହେଁ ଅଭିଯୋଗ କରନ୍ତି ଯେ, ଚୈତନ୍ୟଙ୍କ ହେତୁ ସେମାନଙ୍କ ପ୍ରଭୁତ୍ୱ କ୍ଷୁଣ୍ଣ ହୋଇଅଛି । ସେଥି ସଙ୍ଗେ ସଙ୍ଗେ ଚୈତନ୍ୟ ତାଙ୍କ ଶିଷ୍ୟ ସଙ୍ଗେ ଆବିର୍ଭୂତ ହୋଇ ଦୁର୍ନୀତିର ନିରାକରଣ ପାଇଁ ତାଙ୍କର ଜନ୍ମ ବୋଲି ଘୋଷଣା କରିଥିଲେ । ଏହି ନାଟକଟି ଯେଉଁମାନଙ୍କୁ ଭୂମିକାରେ ଉପସ୍ଥିତ କରାଯାଇଛି, ସେମାନେ ହେଲେ ଭକ୍ତି, ମୈତ୍ରୀ, ନାରଦ, କୃଷ୍ଣ ଓ ରାଜା ପ୍ରତାପରୁଦ୍ର ।

ଚୈତନ୍ୟଙ୍କ ଧର୍ମ ପ୍ରଚାର ହେତୁ ଓଡ଼ିଶା ତାର ସାମରିକ ଶକ୍ତି ହରାଇଲା ବୋଲି ବହୁ ଐତିହାସିକ ମତ ଦେଇଛନ୍ତି । ଅଧ୍ୟାପକ ରାଖାଲ ଦାସ ବାନାର୍ଜି ଲେଖିଛନ୍ତି—

"Suddenly from the beginning of the 16th century a decline in the military spirit of the people. The decline is intimately connected with the long residence of the Begali Vaishnava saint Chaitanya in the country. ❊

ଚୈତନ୍ୟ ବୃନ୍ଦାବନ ଯାତ୍ରା କରି ସେଠାରୁ ଖ୍ରୀ ୧୫୧୬ରେ ଫେରି ଆସି ପୁରୀରେ ୧୭ ବର୍ଷ ଅର୍ଥାତ୍ ପ୍ରାୟ ଖ୍ରୀ ୧୫୩୩ ପର୍ଯ୍ୟନ୍ତ ଅବସ୍ଥାନ କରିଥିଲେ । ସେତେବେଳେ ଶ୍ରୀ ଜଗନ୍ନାଥଙ୍କ ଦୈନିକ ନୀତି ଏବଂ ଉତ୍ସବାଦି ପୂର୍ବାପେକ୍ଷା ଅଧିକ ଆଡ଼ମ୍ବର ସହକାରେ ପାଳିତ ହୋଇଥିବା ଜଣାଯାଏ । କାରଣ ତାଙ୍କର ଶିଷ୍ୟ ମହାରାଜା ପ୍ରତାପରୁଦ୍ର ଦେବ ଅଧିକାଂଶ ସମୟ ଶ୍ରୀଧାମରେ ରହି ଧର୍ମକାର୍ଯ୍ୟରେ କାଳ ଅତିବାହିତ କରୁଥିଲେ । ୧୫୩୩ ଖ୍ରୀଷ୍ଟାବ୍ଦରେ ଶ୍ରୀ ଚୈତନ୍ୟଙ୍କ ଦେହତ୍ୟାଗ ସମ୍ବନ୍ଧରେ ବହୁ ଉଦ୍‌ଭଟ କାହାଣୀ ଶୁଣିବାକୁ ମିଳେ । କିନ୍ତୁ ପ୍ରକୃତ ଘଟଣା ଅଦ୍ୟାପି ଆବିଷ୍କୃତ ହୋଇନାହିଁ । ଯେଉଁପରି ମହାକବି ଜୟଦେବଙ୍କ ଦେହାନ୍ତ କେବେ ଓ କେଉଁଠାରେ ହୋଇଥିଲା ତାହା ଜଣାଯାଇ ନାହିଁ ।

ଚୈତନ୍ୟ ଯେତେ ଦିନ ଶ୍ରୀକ୍ଷେତ୍ର ବାଲି ସାହିରେ ଥିବା ଶ୍ରୀରାଧାକାନ୍ତ ମଠର ଏକ "ଗମ୍ଭୀରା"ରେ ରହି ନାମ ଜପ କରୁଥିଲେ । ସେଠାରେ ତାଙ୍କର କଠଉ ଏବଂ ଗଣ୍ଠା ଅଦ୍ୟାପି ପବିତ୍ର ବସ୍ତୁ ରୂପେ ସଞ୍ଚିତ ହୋଇଥିବାରୁ ଭକ୍ତମାନେ ଦର୍ଶନ କରିଥାନ୍ତି । କିନ୍ତୁ କବି ଜୟଦେବଙ୍କର ସେପରି କିଛି ସଙ୍କେତ କୌଣସି ସ୍ଥାନରେ ଥିବା ଦେଖାଯାଏ ନାହିଁ । ତଥାପି ତାଙ୍କ ରଚିତ ଗୀତଗୋବିନ୍ଦ ଗାନ, ନିତ୍ୟ ଶ୍ରୀଜଗନ୍ନାଥ ଏବଂ ଶ୍ରୀମନ୍ଦିରରେ ପରିବେଷିତ ହେଉଥିବାରୁ ତାହା ଶୁଣିଲାବେଳେ ଚୈତନ୍ୟ ଜ୍ଞାନ ହରାଇ ଦେଉଥିଲେ । ତାହାହିଁ ତାଙ୍କ ସ୍ମୃତିକୁ ଉଜ୍ଜ୍ୱଳ କରି ରଖିପାରିଛି ।



---

❊ History of Orissa, Vol. I, P 330 f.

# ଅଷ୍ଟମ ପରିଚ୍ଛେଦ

କବି ଜୟଦେବଙ୍କ 'ଗୀତଗୋବିନ୍ଦ' ଓ ଗୌଡୀୟ ବୈଷ୍ଣବ ଧର୍ମ ତଥା ରାଧା-କୃଷ୍ଣଙ୍କ ବାଲ୍ୟଲୀଳା ସମ୍ପର୍କରେ ଓଡ଼ିଶାର କବି ଓ ପଣ୍ଡିତମାନେ ବହୁଗ୍ରନ୍ଥ ଖ୍ରୀ ୧୬ଶ ଶତାବ୍ଦୀ ଠାରୁ ଅର୍ଥାତ୍ ଶ୍ରୀ ଚୈତନ୍ୟଙ୍କ ଆବିର୍ଭାବଠାରୁ ଆରମ୍ଭ କରି ସଂସ୍କୃତ ଏବଂ ଓଡ଼ିଆ ଭାଷାରେ ରଚନା କରିଥିଲେ । ସେଥିର କେତୋଟି ଗ୍ରନ୍ଥର ଉଦାହରଣ ନିମ୍ନରେ ଉଲ୍ଲେଖ କରାଗଲା ।

ଭୋଇବଂଶୀୟ ରାଜା ରାମଚନ୍ଦ୍ର ଦେବଙ୍କ ରଚିତ "ଶ୍ରୀକୃଷ୍ଣ ଭକ୍ତ ବାତ୍ସଲ୍ୟ ଚରିତମ୍" ନାମକ ସଂସ୍କୃତ ନାଟକ ଶ୍ରୀଜଗନ୍ନାଥଙ୍କ ପୁନଃ ପ୍ରତିଷ୍ଠା ଉପଲକ୍ଷ୍ୟରେ ଶ୍ରୀନୀଳାଚଳଧାମରେ ଅଭିନୀତ ହୋଇଥିଲା । ଦିବ୍ୟସିଂହ ଦେବଙ୍କ (୧ମ) ରାଜତ୍ୱ କାଳରେ ଜଣେ ପ୍ରସିଦ୍ଧ ସଙ୍ଗୀତଜ୍ଞ କବି ରଘୁନାଥ ରଥ 'ନାଟ୍ୟ ମନୋରମା' ଏବଂ 'ସଙ୍ଗୀତାର୍ଣ୍ଣବ ଚନ୍ଦ୍ରିକା' ନାମକ ଦୁଇଟି ଉତ୍କୃଷ୍ଟ ଗ୍ରନ୍ଥ ଲେଖିଥିଲେ । ପ୍ରଥମ ଗ୍ରନ୍ଥଟି ଅଦ୍ୟାପି ଅନାବିଷ୍କୃତ ହୋଇରହିଛି । (୧)

ବୃନ୍ଦାବନଙ୍କ ପ୍ରଣୀତ 'ଗୋପୀଚନ୍ଦନ' ନାମକ ଓଡ଼ିଆ କାବ୍ୟରେ କୃଷ୍ଣଲୀଳା ବର୍ଣ୍ଣିତ ହୋଇଥିବା ଦେଖାଯାଏ । (୨) ଏହା ପଣ୍ଡିତ ନୀଳମଣି ମିଶ୍ରଙ୍କ ସମ୍ପାଦିତ ସେହି କାବ୍ୟଟିର କବି ବୃନ୍ଦାବନ ଦାସ ରାଜା ରାମଚନ୍ଦ୍ରଦେବ (୧ମ)ଙ୍କ ସଭାରେ ରହି ସଙ୍ଗୀତ ମଧ୍ୟ ରଚନା କରିଥିଲେ ।

ବୈଷ୍ଣବ କବି ଦୀନକୃଷ୍ଣ ଦାସ 'ରସବିନୋଦ' ନାମକ କାବ୍ୟ ଖ୍ରୀ ୧୭ଶ ଶତାବ୍ଦୀ ଦ୍ୱିତୀୟାର୍ଦ୍ଧରେ ରଚନା କରିଥିଲେ । ସେହି ସମୟର ବିଶିଷ୍ଟ ସଙ୍ଗୀତଜ୍ଞ ପୁରୁଷୋତ୍ତମ ମିଶ୍ର ପାରଳାଖେମୁଣ୍ଡିର ତତ୍କାଳୀନ ଧର୍ମପ୍ରାଣ ମହାରାଜ ଜଗନ୍ନାଥ ନାରାୟଣ ଦେବଙ୍କ ଅନୁରୋଧକ୍ରମେ ତାଙ୍କ ନାମରେ 'ସଙ୍ଗୀତ ନାରାୟଣ' ନାମକ ସଙ୍ଗୀତ ଗ୍ରନ୍ଥ

---

(୧) ଏହି ଗ୍ରନ୍ଥଟି ୧୯୦୪ ମସିହାରେ ସ୍ୱର୍ଗତ ଗୋବିନ୍ଦ ରଥଙ୍କ ଦ୍ୱାରା ଓଡ଼ିଆ ଅକ୍ଷରରେ ପ୍ରକାଶିତ ହୋଇଥିଲା । (ଖୁର୍ଦ୍ଧା ଇତିହାସ, ପୃ ୩୭)

(୨) 'ଓଡ଼ିଶା ସାହିତ୍ୟ ଏକାଡେମୀ' ପ୍ରକାଶିତ 'ପ୍ରାଚୀନ ଗଦ୍ୟପଦ୍ୟାଦର୍ଶ' ।

ସମ୍ଭ୍ରାନ୍ତ ସ୍ୱୟଂରେ ଲେଖି ପ୍ରାଚୀନ 'ଗୀତଗୋବିନ୍ଦ' ରାଗ ଓ ସ୍ୱର ପଦ୍ଧତି ଅନୁସାରେ କେତେକ ସଙ୍ଗୀତ ସେଥିରେ ନିଜେ ରଚନା କରି ଯୋଗ କରିଥିଲେ । (୧) ସେହି ସଙ୍ଗୀତରୁ ହିଁ ପରବର୍ତ୍ତୀ କାଳରେ ତାହା 'ଓଡ଼ିଶୀ-ସଙ୍ଗୀତ' ନାମରେ ପରିଚିତ ହେଉଛି । ରାଜା ଜଗନ୍ନାଥ ନାରାୟଣ ଦେବ ତାଙ୍କର ପରିଣତ ବୟସ ବୃନ୍ଦାବନ ଧାମକୁ ଯାଇ ସେଠାରେ ଗୌଡ଼ୀୟ ମଠରେ ଦୀକ୍ଷା ଗ୍ରହଣ କରି ଫେରିଆସି ନିଜେ 'ଶ୍ରୀ ବୃନ୍ଦାବନ ବିହାର' ନାମକ ଓଡ଼ିଆ କାବ୍ୟ ପ୍ରଣୟନ କରିଥିଲେ । ତାଙ୍କ ସମୟରେ ଦକ୍ଷିଣ ଓଡ଼ିଶାର ବହୁ ସ୍ଥାନରେ ଗୋପୀନାଥଙ୍କ ମନ୍ଦିରମାନ ଗଠିତ ହୋଇ ସେଥିରେ ନାମ ସଙ୍କୀର୍ତ୍ତନ ପ୍ରବର୍ତ୍ତିତ ହେଲା । ଅବଶ୍ୟ ଚୈତନ୍ୟଙ୍କ ଦାକ୍ଷିଣାତ୍ୟ ଯାତ୍ରାବେଳେ ସେ ଯେଉଁ ଯେଉଁ ଗ୍ରାମ ଓ ନଗର ଦେଇ ଯାଇଥିଲେ ସେହି ସ୍ଥାନମାନଙ୍କରେ ଗୌଡ଼ୀୟ ବୈଷ୍ଣବ ସମ୍ପ୍ରଦାୟର ଛାୟା ପଡ଼ିଥିବା ଜଣାଯାଏ ।

ମହାରାଜ ପ୍ରତାପରୁଦ୍ର ଦେବ ବୈଷ୍ଣବ ଧର୍ମରେ ଦୀକ୍ଷା ଲାଭ କରି ଚୈତନ୍ୟଙ୍କ ଭକ୍ତି-କୀର୍ତ୍ତନର ଆଶ୍ରୟ ନେବାରୁ ପୂର୍ବରେ ଅଧିକାଂଶ ଓଡ଼ିଆ କବି ଶ୍ରୀକୃଷ୍ଣଲୀଳା ଭିତ୍ତିକ କାବ୍ୟମାନ ଲେଖିବାକୁ ଉତ୍ସାହିତ ହେଲେ । ସେହି କବିମାନଙ୍କ ମଧ୍ୟରେ ମାଧବ ପଟ୍ଟନାୟକ ପ୍ରତାପରୁଦ୍ରଙ୍କ ୪୮ ଅଙ୍କ (ଖ୍ରୀ ୧୫୩୨) ରେ ବୈଷ୍ଣବଲୀଳା ମୃତ ନାମକ ଗୋଟିଏ ଗ୍ରନ୍ଥ ୯ଟି ଅଧ୍ୟାୟରେ ଲେଖି, ସେଥିରେ ଓଡ଼ିଶାରେ ବୈଷ୍ଣବ ଧର୍ମର ବିକାଶ କପିଳ ଚୋଡ଼ଗଙ୍ଗଙ୍କ ରାଜତ୍ୱ କାଳରୁ (ଖ୍ରୀ ୧୨ଶ ଶତାବ୍ଦୀରୁ) ଚୈତନ୍ୟଙ୍କ ଆଗମନ କାଳ (ଖ୍ରୀ ୧୫୧୦) ପର୍ଯ୍ୟନ୍ତ ହୋଇଥିଲା ତାହା ସେଥିରେ ପ୍ରକାଶିତ କରିଥିଲେ । (୨) ସେହି ଗ୍ରନ୍ଥର ଦ୍ୱିତୀୟ ଅଧ୍ୟାୟରେ ଜୟଦେବଙ୍କ ସମ୍ବନ୍ଧରେ ଲେଖାଅଛି ।

"ବିପ୍ର ସେ ଜୟଦେବ ନାମ, କ୍ଷେତ୍ରବରକୁ ଆଗମନ
କେନ୍ଦୁଲୀ ଶାସନ ତା ଗ୍ରାମ, ପ୍ରାଚୀନଦୀର ତଟ ପୂର୍ଣ ॥
ନିଆଲି ମାଧବ ସମୀପେ, ଭକତ କଲା ନାନା ରୂପେ ।
ଶାସ୍ତ୍ର-ପୁରାଣେ ବିଚକ୍ଷଣ, କବିତ୍ୱ ମାର୍ଗେ ତାର ମାନ ॥

(୧) O. H. R. J. Vol. VIII Nos. 3 and 4 (1960) and ibid Vol X, No. 1 and 2 (1961)

(୨) ଏ ସମ୍ପର୍କରେ ବିଶଦ ବିବରଣୀ ସମ୍ବଲପୁର ବିଶ୍ୱବିଦ୍ୟାଳୟର ଓଡ଼ିଆ ଅଧ୍ୟାପକ ଡ଼ା. ବି. ସି. ଆଚାର୍ଯ୍ୟ ଏହି ଅପ୍ରକାଶିତ ଗ୍ରନ୍ଥ ସମ୍ବନ୍ଧରେ ଅଧିକ ତଥ୍ୟ Jagannath Jyoti (Jagannath University, Journal of Indology, No. 5 PP. 167-174 (1992-93)

ଗୀତ ସେ ରଚିବ ବୋଇଲା,  କ୍ଷେତ୍ରବାସଙ୍କୁ ମନ କଲା ।
ଶ୍ରୀଜଗନ୍ନାଥର ସମୀପେ,  ସ୍ତୁତି-ସାତ୍ତ୍ୱିକ ମତ ହବେ" ॥ (୩)

କବି ମାଧବ ପଟ୍ଟନାୟକ ଆଉ ମଧ୍ୟ ସେହି ଅଧ୍ୟାୟରେ ଲେଖିଛନ୍ତି—

"ଗୀତ ଗୋବିନ୍ଦ ନାଟ ସେବା,  ମନ୍ଦରେ ପ୍ରତ୍ୟହ ହୋଇବା ॥
ରାଜା ସେ ସେବା ଭିଆଇଲା,  କେନ୍ଦୁଲୀ-ଶାଢ଼ୀ ଯୋଗାଇଲା
ଶ୍ରୀ ଗୀତ ଗୋବିନ୍ଦ ରସ ଏ,  ଶ୍ରୀ ଜଗନ୍ନାଥର ପ୍ରିୟ ଏ ॥
ବୋଲି କଳିକ ଏ ଭିଆଣ,  ଭକତେ ହେଲେ ତୋଷ ମନ ।"
×  ×  ×  ×
ଶ୍ରୀମଦେବର ଏ ଚରିତ,  କାଳେ ସେ ଗଲା କୀର୍ତ୍ତି ଥାପି ।

ଉପରୋକ୍ତ ପଦ୍ୟାଂଶରୁ ଜଣାଯାଉଛି ଯେ, ଖ୍ରୀ: ୧୬ଶ ଶତାବ୍ଦୀ ପୂର୍ବରୁ କବି ଜୟଦେବ ଓ ତାଙ୍କ ରଚିତ 'ଗୀତଗୋବିନ୍ଦ' ସମ୍ପର୍କରେ ଯେଉଁ କିମ୍ବଦନ୍ତୀ ପ୍ରଚଳିତ ଥିଲା, ତାହାହିଁ କବି ମାଧବ ପଟ୍ଟନାୟକ ତାଙ୍କ "ବୈଷ୍ଣବ ଲୀଳାମୃତ" ଗ୍ରନ୍ଥରେ ଚୈତନ୍ୟଙ୍କ ଜୀବିତ କାଳରେ ଉଲ୍ଲେଖ କରିଥିଲେ ।

ଠିକ୍ ସେହି ସମୟରେ ମୁସଲମାନ (ଯବନ) ଜାତିର କବି ସାଲବେଗ ପୁରୀ ଜିଲ୍ଲାରେ ରହି ଶ୍ରୀ ପୁରୁଷୋତ୍ତମ—ଜଗନ୍ନାଥଙ୍କଠାରେ ସେ ପରମଭକ୍ତ ରୂପେ ପରିଚିତ ହୋଇ ଯେଉଁ ସଙ୍ଗୀତଗୁଡିକ ରଚନା କରିଥିଲେ, ତାହା 'ଓଡ଼ିଶୀ ସଙ୍ଗୀତ' ଭତ୍ତିକ ବୋଲି କୁହାଯାଇପାରେ । ଗୌଡ଼ୀୟ ବୈଷ୍ଣବ କବି ଶ୍ରୀ ରାମାନନ୍ଦଙ୍କ ଶିଷ୍ୟତ୍ୱ ସେ ଗ୍ରହଣ କରିଥିବା 'ରସିକ ମଙ୍ଗଳ' ଗ୍ରନ୍ଥରୁ ପ୍ରତିପାଦିତ ହୁଏ ।

ଖ୍ରୀ ୧୬୭୭ରେ ପୁରୀର ଯତୀନ୍ଦ୍ର ରଘୁତ୍ତମ ତୀର୍ଥପାଦ, 'ମୁକୁନ୍ଦ ବିଳାସ' ନାମକ ଗୋଟିଏ ସଂସ୍କୃତ କାବ୍ୟ 'ଗୀତଗୋବିନ୍ଦ' ଅନୁକରଣରେ ଲେଖିଥିବା ଅନୁମିତ ହୁଏ । ୰ କେଦାରନାଥ ମହାପାତ୍ର ତାଙ୍କ 'ଖୁର୍ଦ୍ଧା ଇତିହାସ'ରେ ଲେଖିଛନ୍ତି—

"ଏହି 'ଗୀତଗୋବିନ୍ଦ' ମହାକାବ୍ୟର ଅନୁକରଣରେ ଲିଖିତ ହୋଇଥିଲେ ମଧ୍ୟ, ଗ୍ରନ୍ଥାରମ୍ଭରେ ଉଦାର ହୃଦୟ ଦାର୍ଶନିକ ତୀର୍ଥପାଦ ବେଦାନ୍ତାଶ୍ରିତ ଗୁଣାତୀତ ଗୁଣସିନ୍ଧୁ ଶ୍ରୀକୃଷ୍ଣଙ୍କ ପ୍ରଣୀତ ପୂର୍ବକ ବିଭିନ୍ନ ସମ୍ପ୍ରଦାୟ ଦ୍ୱାରା ସ୍ୱ ସ୍ୱ ଇଷ୍ଟଦେବତା ରୂପେ ପୂଜିତ ଗଣେଶ, ସୂର୍ଯ୍ୟ, ଶିବ, ଦୁର୍ଗା, ବିଷ୍ଣୁ, ବ୍ରହ୍ମା ଓ ଶ୍ରୀ ରାଧିକାବଲ୍ଲଭ କୃଷ୍ଣଙ୍କ ମଧ୍ୟରେ ଅଭେଦତ୍ୱ ପ୍ରତିପାଦିତ କରିଛନ୍ତି । କବି ବ୍ରହ୍ମାପତ୍ନୀ ସରସ୍ୱତୀ, ନାରାୟଣ ସଙ୍ଗିନୀ ଲକ୍ଷ୍ମୀ,

(୩) Ibid P. 171

ଈଶାନାଙ୍କ ଶମ୍ଭାରଣୀ ଭଗବତୀ, ଶ୍ରୀ ରାମଚନ୍ଦ୍ର-ପ୍ରିୟା, ସୀତା, ବାସୁଦେବ ଗୃହିଣୀ ରୁକ୍ମିଣୀ, ବଳରାମ ବକ୍ଷସ୍ଥ ରେବତୀ ଏବଂ ଶ୍ରୀକୃଷ୍ଣ ଦୟିତା ଶ୍ରୀ ରାଧିକାଙ୍କର ଏକତ୍ୱ ତଥା ଅଭିନ୍ନତ୍ୱ ବର୍ଣ୍ଣନା କରିଛନ୍ତି । କବିଙ୍କ ମତରେ ସ୍ତ୍ରୀ ପୁରୁଷ ଦେହାଶ୍ରିତ ହରିମୂର୍ତ୍ତି; ପୁଣ୍ୟନୀଳାଚଳର ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନ ରୂପେ ପ୍ରକଟିତ ଚତୁର୍ଦ୍ଧାମୂର୍ତ୍ତି ତଥା ଶ୍ରୀରାଧାକୃଷ୍ଣଙ୍କ ଯୁଗଳ ମୂର୍ତ୍ତି 'ଏକମେବ ଅଦ୍ୱିତୀୟମ୍' ପରମବ୍ରହ୍ମଙ୍କର ବିଭିନ୍ନ ପ୍ରକାଶ ମାତ୍ର" (୧)

୧୬୮୮ ଖ୍ରୀଷ୍ଟାବ୍ଦରେ ସଙ୍ଗୀତଜ୍ଞ କବି ଦୀନବନ୍ଧୁ ମିଶ୍ର 'ହରିଭକ୍ତି ସୁଧାକର' ନାମକ ଗୋଟିଏ ୩୬୪୧ ଶ୍ଳୋକ ବିଶିଷ୍ଟ ଗ୍ରନ୍ଥ ରଚନା କରି ଖଣ୍ଡପଡ଼ାର ରାଜା ନାରାୟଣ ମଙ୍ଗରାଜଙ୍କ ଆଶ୍ରୟ ଲାଭ କରିଥିଲେ । ସେ ତାଙ୍କ ପୃଷ୍ଠପୋଷକ ରାଜାଙ୍କ ଗୁଣଗାନ କରି ଲେଖିଛନ୍ତି:—

ଛନ୍ଦ ଷଡ଼୍‌ଭୌ ସର୍ବଗୁଣୈ ନୃପେନ୍ଦ୍ରଃ
ସଙ୍ଗୀତ ବିଦ୍ୟା ଭୃତ ଯଶାଃ ସୁଗୀତଃ
ଯୋବାଂସି ବେଦ୍ୟାର୍ଣ୍ଣବ କର୍ଣ୍ଣଧାରୋ
ବିଭାତି ନାରାୟଣ ମଙ୍ଗରାଜଃ ।।" (୨)

ଏଥିରୁ ସ୍ପଷ୍ଟ ଜଣାଯାଉଛି ଯେ, ଖ୍ରୀ ୧୭ଶ ଶତାବ୍ଦୀରେ ଭାଗବତ-ଧର୍ମାବଲମ୍ବୀ ଓଡ଼ିଶାର କେତେକ ରାଜା ନିଜ ନିଜ ସଭାରେ ପଣ୍ଡିତ ଓ କବିମାନଙ୍କୁ ଉତ୍ସାହିତ କରି ଶ୍ରୀକୃଷ୍ଣଲୀଳା ବିଷୟକ କାବ୍ୟ ଓ ଗୀତମାନ ରଚନା କରାଇ ଓଡ଼ିଶୀ ସଙ୍ଗୀତର ବିକାଶ ସାଧନ କରୁଥିଲେ ।

କବି ନିତ୍ୟାନନ୍ଦଙ୍କ ରଚିତ 'ଶ୍ରୀକୃଷ୍ଣଲୀଳାମୃତ' ନାମକ ଗୋଟିଏ ମହାକାବ୍ୟ 'ଗୀତ ଗୋବିନ୍ଦ' ଅନୁକରଣରେ ଲେଖାହୋଇଥିଲା । କବି ଖୁର୍ଦ୍ଧା ରାଜା 'ମୁକୁନ୍ଦଦେବ'ଙ୍କ ସମୟରେ ନୂଆଗଡ଼ ରାଜାଙ୍କ ରାଜସଭାରେ 'ଦଶବୋଲି' ନାମରେ ଗୋଟିଏ କ୍ଷୁଦ୍ର ପୁସ୍ତକ ଲେଖିଥିଲେ ।

ରାଜା ମୁକୁନ୍ଦଦେବଙ୍କ ରାଜତ୍ୱକାଳରେ ବଦଗାଦାସ ସଂସ୍କୃତ 'ଗୀତ ଗୋବିନ୍ଦ' କାବ୍ୟକୁ ସରଳ ଓଡ଼ିଆ ନବାକ୍ଷରୀ ଛନ୍ଦରେ ଅନୁବାଦ କରିଥିଲେ । ସେହି ପୁସ୍ତକଟିର ନାମ ହେଉଛି 'ଅର୍ଥ ଗୋବିନ୍ଦ' । ଅଦ୍ୟାପି ଅପ୍ରକାଶିତ ହୋଇ 'ଓଡ଼ିଶା ସଂଗ୍ରହାଳୟ'

---

(୧) 'ଖୁର୍ଦ୍ଧା ଇତିହାସ', ପୃ ୧୦୬-୭

(୨) ଏଜନ, ପୃ ୧୦୮

ପୋଥିଭଣ୍ଡାରରେ ରକ୍ଷିତ ଅଛି । ଭାଷ୍ୟାଦୃଷ୍ଟିରୁ ତେଲେଙ୍ଗା ମୁକୁନ୍ଦଦେବଙ୍କ ୨୧ ଅଙ୍କ (ଖ୍ରୀ ୧୫୭୨)ରେ ଏ ଗ୍ରନ୍ଥ ଲେଖା ହୋଇଥିବ ବୋଲି ସ୍ୱର୍ଗତ କେଦାରନାଥ ମହାପାତ୍ର ସ୍ଥିର କରିଛନ୍ତି । (୧)

ଖ୍ରୀ ୧୭ଶ ଶତାବ୍ଦୀ ମଧ୍ୟରେ ଜନାର୍ଦ୍ଦନ ଦାସଙ୍କ ରଚିତ ଗୋପୀଭାଷା କ୍ଷୁଦ୍ର ପୁସ୍ତକ ହୋଇଥିଲେ ହେଁ ତାହା ଓଡ଼ିଶାର ପୁରପଲ୍ଲୀରେ ଆଦୃତ ହୋଇଥିଲା । କାରଣ ସେଥିରେ ଶ୍ରୀକୃଷ୍ଣ ମଥୁରା ଗମନ ପରେ ଗୋପପୁରର ଗୋପୀମାନେ ତାଙ୍କର ଗୁଣାବଳୀ ସ୍ମରଣ କରି ଶୋକପ୍ରକାଶ କରିବା ପ୍ରସଙ୍ଗ ଅତି ସରଳ ଭାଷାରେ ବର୍ଣ୍ଣିତ ହୋଇଅଛି ।

ଖ୍ରୀ: ୧୭ଶ ଶତାବ୍ଦୀ ଦ୍ୱିତୀୟାର୍ଦ୍ଧରେ କବି ଭୂପତି ପଣ୍ଡିତଙ୍କ 'ପ୍ରେମ ପଞ୍ଚାମୃତ' କାବ୍ୟର ନିମ୍ନୋକ୍ତ ପଦରୁ ଜଣାଯାଇଛି ଯେ 'ଚୌତିଶା' ଓ "ଚୌପଦୀ ଗୀତ" ରଚନା କରିଥିଲେ ଏବଂ ସେଥିରେ "ଗୋବିନ୍ଦ-ଚରିତ" ଭୂପତି ପଣ୍ଡିତଙ୍କୁ ଶୁଣାଇ ପ୍ରଶଂସିତ ହେଉଥିଲେ ।

ତହିଁ ତ ଗୋବିନ୍ଦ ଚରିତ, ଚୌତିଶା ଉପପଦୀ ଗୀତ ।
କରନ୍ତି ବୁଦ୍ଧି ଅନୁସାରେ, ଶୁଣାନ୍ତି ତାହାଙ୍କ ଗ୍ରାମୁରେ ।
ସେ ପୁଣି ହୁଅନ୍ତି ପ୍ରସନ୍ନ, ଆନନ୍ଦେ ଦିଅନ୍ତି ଆଲିଙ୍ଗନ । (୨)

କବିଙ୍କ ସମୟରେ ତାଙ୍କ ପୃଷ୍ଠପୋଷକ ଖୋର୍ଦ୍ଧାରାଜା ଦିବ୍ୟସିଂହଦେବ (୧ମ) ରାଜତ୍ୱ କରୁଥିଲେ । ରାଜା ଶ୍ରୀକୃଷ୍ଣଙ୍କ ପଦାଶ୍ରିତ ବୈଷ୍ଣବଭାବେ ଦୀକ୍ଷା ଗ୍ରହଣ କରି ସଙ୍ଗୀତ ବିଦ୍ୟାରେ ପାରଦର୍ଶିତା ଲାଭ କରି ଶ୍ରୀକୃଷ୍ଣଙ୍କ ପ୍ରେମରସାତ୍ମକ କାବ୍ୟ ଓ ଗୀତ ଗାନ କରୁଥିବା ପ୍ରସଙ୍ଗ ପ୍ରେମ ପଞ୍ଚାମୃତର ନିମ୍ନୋକ୍ତ ପଦଗୁଡ଼ିକରୁ ପରିସ୍ଫୁଟ ହୁଏ:—

"ଶ୍ରୀଗଜପତି ଗୌଡ଼େଶ୍ୱର, ଉତ୍କଳ ଦେଶର ଠାକୁର,
× ×
ଏ ବୀରବର ବୈଷ୍ଣବ, ନାମ ଶ୍ରୀଦିବ୍ୟସିଂହଦେବ ।
ଲକ୍ଷେ ରାଜାଙ୍କ ମୌଳିମଣି, ସୁନ୍ଦର ପଣେ ଅଗ୍ରଗଣି ।
× ×
ପଣ୍ଡିତ, ଧାର୍ମିକ ବିବେକ, ସଙ୍ଗୀତ ବିଦ୍ୟା ସୁରସିକ
କାମ ଶାସ୍ତ୍ର ଅନୁଭବ, ଶ୍ରୀକୃଷ୍ଣରସ ବାକ୍ୟ କବି ।"

---

(୧) 'ଖୋର୍ଦ୍ଧା ଇତିହାସ', ପୃ ୧୧୨
(୨) 'ପ୍ରେମପଞ୍ଚାମୃତ', ପ୍ରାଚୀ ପ୍ରକାଶନ

ଏ ଗ୍ରନ୍ଥଟି ଖ୍ରୀ: ୧୭୧୪ ରେ ଏବଂ ଦିବ୍ୟସିଂହଦେବ (୧ମ)ଙ୍କ ଆଠ ଅଙ୍କରେ ସମ୍ପୂର୍ଣ୍ଣ ହୋଇଥିଲା । (୧) ରାଜା ଦିବ୍ୟସିଂହଙ୍କ ରାଜତ୍ୱ କାଳରେ ଲୋକନାଥ ବିଦ୍ୟାଧର, ଜଳେଶ୍ୱର ନିବାସୀ ଦୀନକୃଷ୍ଣଦାସ ବହୁ ଗ୍ରନ୍ଥ ରଚନା କରି ଓଡ଼ିଆ ସାହିତ୍ୟର ଉତ୍ତରୋତ୍ତର ବିକାଶ କରିଥିଲେ । ଦୀନକୃଷ୍ଣ ଦାସଙ୍କ 'ରସ କଲ୍ଲୋଳ' ଏକ ସୁବିଖ୍ୟାତ ଗ୍ରନ୍ଥ କିନ୍ତୁ ଖ୍ରୀ ୧୮ଶ ଶତାବ୍ଦୀ ଅନ୍ତିମରେ ଓଡ଼ିଶାର "କବିସମ୍ରାଟ" ଉପେନ୍ଦ୍ରଭଞ୍ଜ ବହୁ ରସାତ୍ମକ କାବ୍ୟମାନଙ୍କରେ ବିଭିନ୍ନ ରାଗ-ରାଗିଣୀ ପ୍ରୟୋଗ କରି ପାରିଥିଲେ । ସେ ମଧ୍ୟ ଓଡ଼ିଆଭାଷାରେ ବିଭିନ୍ନ ଛନ୍ଦଗୁଡ଼ିକର ସମାବେଶରେ 'ଛନ୍ଦ ଭୂଷଣ' ନାମକ ଗ୍ରନ୍ଥ ରଚନା କରିଥିଲେ । ଘୁମୁସରସ୍ଥ ଯେଉଁ ଭଞ୍ଜ ରାଜବଂଶରେ ତାଙ୍କର ଜନ୍ମ ହୋଇଥିଲା, ସେଠାରେ ବହୁ ସଙ୍ଗୀତଜ୍ଞ ରହି ଶାସ୍ତ୍ରୀୟ ପଦ୍ଧତିରେ ଓଡ଼ିଶୀ-ସଙ୍ଗୀତ (କଳିଙ୍ଗ-ସଙ୍ଗୀତ)ର ପ୍ରସାର ଆଗରୁ କରି ଗ୍ରନ୍ଥମାନ ରଚନା କରିଥିଲେ । ପାରଳାଖେମୁଣ୍ଡି ରାଜସଭାରେ ସଙ୍ଗୀତ ବିଶାରଦ ପୁରୁଷୋତ୍ତମ ମିଶ୍ର ତାଙ୍କ ପୃଷ୍ଠପୋଷକ ରାଜା ଜଗନ୍ନାଥ ନାରାୟଣ ଦେବଙ୍କ ନାମରେ "ସଙ୍ଗୀତ ନାରାୟଣ" ନାମକ ଯେଉଁ ଗ୍ରନ୍ଥଟି ଲେଖିଥିଲେ, ତାହାହିଁ ଓଡ଼ିଶାରେ ସର୍ବତ୍ର ଅନୁସୃତ ହେଉଥିଲା । ତେଣୁ ସେହି ଗ୍ରନ୍ଥଟି 'ଓଡ଼ିଶୀ ସଙ୍ଗୀତ'ର ମୌଳିକ ଆଧାର ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । କବି ଜୟଦେବଙ୍କ 'ଗୀତଗୋବିନ୍ଦ'ରେ ବ୍ୟବହୃତ ରାଗ ଓ ତାଳଗୁଡ଼ିକର ସନ୍ଧାନ ସେହି "ସଙ୍ଗୀତ-ନାରାୟଣ" ଗ୍ରନ୍ଥରୁ ଉପଲବ୍ଧ ହେବା ଉଚିତ ବୋଲି କହିବାକୁ ହେବ । ଉପେନ୍ଦ୍ର ଭଞ୍ଜଙ୍କ ପିତାମହ ଘୁମୁସରର ରାଜା ଧନଞ୍ଜୟ ଭଞ୍ଜ ମଧ୍ୟ ବହୁ କବିତା ରଚନା କରି ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିଥିଲେ ।

ଖୋର୍ଦ୍ଧା ରାଜା ଦିବ୍ୟସିଂହଦେବଙ୍କ ରାଜତ୍ୱ ୨୫ ଅଙ୍କ (ଖ୍ରୀ.୧୭୦୮-୯)ରେ ପୁରୀ ନିବାସୀ ବିଶ୍ୱନାଥ ଖୁଣ୍ଟିଆ 'ବିଚିତ୍ର ରାମାୟଣ' ଲେଖିବାକୁ ଯାଇ ସେଥିରେ ବିଭିନ୍ନ ରାଗର ଛନ୍ଦ ଓଡ଼ିଆରେ ରଚନା କରି ଓଡ଼ିଶୀ ସଙ୍ଗୀତର ମହତ୍ତ୍ୱ ବଢ଼ାଇଥିଲେ ।

ଭକ୍ତ ହରିଦାସଙ୍କ ରଚିତ 'ମୟୂର ଚନ୍ଦ୍ରିକା' ନାମକ କାବ୍ୟରେ ବାଲ କୃଷ୍ଣଲୀଳା ବିଶେଷଭାବରେ ବର୍ଣ୍ଣିତ ହୋଇଅଛି । ଏ ଗ୍ରନ୍ଥର ବଂଶଚନ୍ଦ୍ରିକାରେ ଲେଖିଅଛି ଯେ, ଶ୍ରୀ ଚୈତନ୍ୟ ଶ୍ରୀ ରାଧାଙ୍କର ଅବତାର ଅର୍ଥାତ୍ ମାଧୁର୍ଯ୍ୟ ପ୍ରେମରେ ସେ କୃଷ୍ଣଙ୍କୁ ଭକ୍ତି କରୁଥିଲେ । କବିଙ୍କ ଜୀବିତ କାଳ ବାଦସା ଔରଙ୍ଗଜେବଙ୍କ ସମସାମୟିକ ବୋଲି ଧାର୍ଯ୍ୟ ହୋଇଛି । (୨)

---

(୧) ଖୋର୍ଦ୍ଧା ଇତିହାସ, ପୃ ୧୩୮-୯

(୨) ସ୍ୱର୍ଗତ ପଣ୍ଡିତ ବିନାୟକ ମିଶ୍ରଙ୍କ "ଓଡ଼ିଶା ସାହିତ୍ୟର ଇତିହାସ" ପୃ ୮୦-୮୩
କେଦାରନାଥ ମହାପାତ୍ରଙ୍କ 'ଖୋର୍ଦ୍ଧା ଇତିହାସ', ପୃ ୧୫୫

ବିପ୍ର ନୀଳାମ୍ବର ଦାସ ତାଙ୍କ 'ହରିଭକ୍ତ ଚନ୍ଦ୍ରମାଳା' ନାମକ ଗ୍ରନ୍ଥରେ ଲେଖିଥିବା ନିମ୍ନୋକ୍ତ ଗ୍ରନ୍ଥଗୁଡ଼ିକର ନାମୋଲ୍ଲେଖ କରିଅଛନ୍ତି ଏବଂ 'ରାମଲୀଳା' ଓ 'କୃଷ୍ଣଲୀଳା'କୁ ଛାନ୍ଦରେ ରଚନା କରିଥିବା ପ୍ରସଙ୍ଗ ଜଣାଯାଏ :—

"ଆଦର କଲଇ ଜାଣ ଜୈମିନି ଭାରତ,
ଦଶ ଅବତାର କଲି କଳଙ୍କି ସହିତ ।
ହିତ ଉପଦେଶ କଲି ରସିକ ମଞ୍ଜରୀ,
ରାମଲୀଳା, କୃଷ୍ଣଲୀଳା ଛାନ୍ଦରୂପେ କରି ।
ଶ୍ରୀ ହରି ଭକତ ହେ ରସିକ ଜନେ ଶୁଣ,
ଗାୟନେ ମୋହର ଦୋଷ ନ ଧରିବ ପୁଣ ।"

ସମ୍ଭବତଃ ଦୁଇଜଣ କବିଙ୍କ ନାମ ନୀଳାମ୍ବର ଦାସ ଥିବା ଅନୁମେୟ । ସେଥି ମଧ୍ୟରୁ ଜଣେ ନୀଳଗିରି (ପୁରୀ) ବାସୀ ଓ ଅନ୍ୟ ଜଣେ ଗଞ୍ଜାମ ଜିଲ୍ଲା ଗୋପାଳପୁର ବନ୍ଦର ନିକଟସ୍ଥ କୁମ୍ଭିଗ୍ରାମ ନିବାସୀ, ଯେ କି 'ଦାଢ଼୍ୟତାଭକ୍ତି ରସାମୃତ' ନାମକ ଗ୍ରନ୍ଥ ଓଡ଼ିଆରେ (୧୮୦୦) ଦୁଇହଜାରରେ ରଚନା କରିଥିଲେ । ଏହି ଗ୍ରନ୍ଥଟି ହିନ୍ଦି ଲେଖକ ନାଭାଜୀଙ୍କ 'ଭକ୍ତମାଳା' ଗ୍ରନ୍ଥର ଅନୁକରଣରେ ଲେଖା ହୋଇଥିଲା । ଭକ୍ତ ଜୟଦେବଙ୍କ ଜୀବନ ଚରିତ ଲେଖାଅଛି ଖ୍ରୀ ୧୮ଶ ଶତାବ୍ଦୀ ଆରମ୍ଭରେ ରାମଦାସ ନାମକ ଜଣେ କବି କୋରାପୁଟ ଜିଲ୍ଲା ନନ୍ଦପୁର ରାଜବଂଶରେ ପୀତାମ୍ବର ଦେଙ୍କ ନାମରେ ଅଖିଳ 'ରସ ଚନ୍ତାମଣି' ନାମକ ଗ୍ରନ୍ଥ ଓଡ଼ିଆ ଛାନ୍ଦରେ ରଚନା କରିଥିଲେ ।

ଗଞ୍ଜାମର ଚିକିଟି ବଂଶରେ ରାଜକବି ଯଦୁମଣି ରାଉତରାୟ ଜନ୍ମଲାଭ କରି ସଂସ୍କୃତ ଅଳଙ୍କାର 'ସାହିତ୍ୟ ଦର୍ପଣ'କୁ ଓଡ଼ିଆରେ ଭାଷାନ୍ତର କରି 'କବି କଳ୍ପଦ୍ରୁମ' ନାମକ ଗ୍ରନ୍ଥ ରଚନା କରିଥିଲେ । ସେଥିରେ 'ନୃତ୍ୟ ନିରୂପଣ' ପ୍ରସଙ୍ଗରେ ଖ୍ରୀ ୧୬ଶ ଶତାବ୍ଦୀର କବି କୃଷ୍ଣଦାସ କେନା ମହାପାତ୍ରଙ୍କ ରଚିତ 'ଗୀତ ପ୍ରକାଶ' ଏବଂ ଓଡ଼ିଆରେ ରଚିତ 'ସଙ୍ଗୀତ କୌମୁଦୀ' ଗ୍ରନ୍ଥକୁ ଅନୁସରଣ କରି 'କବି କଳ୍ପଦ୍ରୁମ' ଗ୍ରନ୍ଥଟି ଆଠଟି ପ୍ରକାଣ୍ଡରେ ବିଭକ୍ତ କରି ସେଥିରୁ ଅଷ୍ଟମ ପ୍ରକାଣ୍ଡରେ ଓଡ଼ିଶାରେ ପ୍ରଚଳିତ ମଙ୍ଗଳ ଗୁଜ୍ଜରୀ, ବସନ୍ତ, ଚୋଖି, କଳୀନ୍ଦ ଗୌଡ଼ା, ବଙ୍ଗଳାଶ୍ରୀ ଓ ଚକ୍ରକେଳୀ ଛାନ୍ଦଗୁଡ଼ିକର ପ୍ରୟୋଗ ଭେଦ ବିଶେଷ ନିରୂପଣ, ଗୀତ ନିରୂପଣ ଓ ନୃତ୍ୟ ନିରୂପଣ କରାଯାଇଛି । ବୋଧହୁଏ ସେ ଖୁରୁଧା ରାଜା ଦିବ୍ୟସିଂହ ଦେବ (୧ମ) ଙ୍କ ରାଜତ୍ୱ (ଖ୍ରୀ ୧୬୮୮-୧୭୧୬) କାଳରେ କିମ୍ବା ତାଙ୍କ ପୂର୍ବବର୍ତ୍ତୀ ଗଜପତି ମୁକୁନ୍ଦଦେବ (୧ମ) (ଖ୍ରୀ ୧୬୦୭-୧୬୮୯)ଙ୍କ ରାଜତ୍ୱ କାଳରେ ଉପରୋକ୍ତ ଗ୍ରନ୍ଥ 'କବି କଳ୍ପଦ୍ରୁମ' ଲେଖା ଆରମ୍ଭ ହେବା ସମ୍ଭବ । ତେଣୁ ପରବର୍ତ୍ତୀ କାଳରେ ଯେଉଁ ସଙ୍ଗୀତ ଓ ନୃତ୍ୟ ଓଡ଼ିଶାରେ ପ୍ରବର୍ତ୍ତିତ ହୋଇଥିଲା

ତାହା ଏହି ଗ୍ରନ୍ଥକୁ ଭିତ୍ତି କରାଯାଇଥିବା ସମ୍ଭବ । ଯଦୁମଣି ରାଉତରାୟ ଏ ଗ୍ରନ୍ଥ ଲେଖିବାକୁ ଗଦାଧର ଦାସ ନାମକ ଜଣେ ଅଳଙ୍କାର ଶାସ୍ତ୍ରଜ୍ଞ ପଣ୍ଡିତ ତାଙ୍କୁ ସାହାଯ୍ୟ କରିଥିଲେ ।

ଗଞ୍ଜାମ ଜିଲ୍ଲା ଖାନଖେମୁଣ୍ଡିର ରାଜଧାନୀ ଥିଲା ବିଜୟନଗର । ଖେମୁଣ୍ଡି ରାଜାଙ୍କ ସଭା ପଣ୍ଡିତ ପରମେଶ୍ୱର ହାମଲ୍ଲରାୟ ବହୁଶାସ୍ତ୍ରରେ ସୁପଣ୍ଡିତ ଥିଲେ । ରାଜାଙ୍କର ଅନୁରୋଧ କ୍ରମେ ସେ 'ମଥୁରା ପ୍ରସ୍ଥାଣ' ନାମକ ଗୋଟିଏ ଖଣ୍ଡକାବ୍ୟ ଲେଖି ସେଥିରେ ରାଧା-କୃଷ୍ଣ ଲୀଳା ସେ ବିଶଦ୍ ଭାବେ ବର୍ଣ୍ଣନା କରିଥିବା ଦେଖାଯାଏ । ତାଙ୍କ ପୁତ୍ର କବିରତ୍ନ ହରସେବକ ହାମଲ୍ଲରାୟ ସଂସ୍କୃତ 'ଗୋବିନ୍ଦ ଲୀଳାମୃତ' ନାମକ ଗ୍ରନ୍ଥର 'ବୈଷ୍ଣବାହ୍ଲାଦନୀ-ଟୀକା * ଲେଖି ପ୍ରଶଂସିତ ହୋଇଥିଲେ ।

ଭୋଇବଂଶୀୟ ଖୋର୍ଦ୍ଧା ରାଜା ଗୋପୀନାଥ ଦେବଙ୍କ ତନଅଙ୍କ ଖ୍ରୀ ୧୭୬୦ ରେ ସିଷ୍ଟକରଣ କବି ଦାସରଥି 'ଦାସ 'ବ୍ରଜ-ବିହାର' ନାମକ ଗୋଟିଏ କାବ୍ୟ ( ବଡ଼ ) ଶ୍ରୀ କୃଷ୍ଣ ଏବଂ ଶ୍ରୀ ରାଧା ଓ ଗୋପୀମାନଙ୍କ ଲୀଳା ବିସ୍ତୃତ ଭାବେ ଲେଖିଥିଲେ ।

ଖୋର୍ଦ୍ଧା ରାଜା ବୀରକେଶରୀ ନିଜେ ଜଣେ କବିଥିଲେ । ତେଣୁ ତାଙ୍କ ରାଜତ୍ୱ କାଳରେ ବହୁତ ଗୁଡ଼ିଏ ଓଡ଼ିଆ କାବ୍ୟ ଛନ୍ଦୋବଦ୍ଧ ହୋଇ ରଚିତ ହୋଇଥିଲା । ଓଡ଼ିଶାର ବିଭିନ୍ନ ଅଞ୍ଚଳର ରାଜା ଓ ଜମିଦାରମାନଙ୍କ ଉତ୍ସାହରେ ରାଧା-କୃଷ୍ଣଲୀଳା ଭକ୍ତିକ ଗ୍ରନ୍ଥମାନ ଲେଖା ହୋଇଥିବା ଜଣାଯାଏ ।

କବି କୃପାସିନ୍ଧୁ ଦାସଙ୍କ 'ବ୍ରଜ ବିହାର' ନାମକ ଗ୍ରନ୍ଥ ରାଧା-କୃଷ୍ଣ କେଳି ଭକ୍ତିକ ଗୋଟିଏ ଉପାଦେୟ କାବ୍ୟ, ଯାହାକି ଜୟଦେବଙ୍କ 'ଗୀତ-ଗୋବିନ୍ଦ' ଆଦର୍ଶରେ ରଚିତ ହୋଇଥିଲା । ରାଜା ବୀରକେଶରୀ ଦେବଙ୍କ ୧୩ ଅଙ୍କ (ଖ୍ରୀ ୧୭୪୭)ରେ ଏ ଗ୍ରନ୍ଥଟିର ଲେଖା ପୂର୍ଣ୍ଣ ହୋଇଥିଲା ।

ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ବୀରକେଶରୀ ଦେବଙ୍କ ୫୫ ଅଙ୍କ (ଖ୍ରୀ ୧୭୮୦-୧) ରେ 'ଯୁଗଳ ରସାମୃତ' ଲହରୀ ନାମକ କାବ୍ୟ ଲେଖିଥିଲେ । ଏ ଗ୍ରନ୍ଥଟି ସେ ମଧୁପୁର (କଟକ ଜିଲ୍ଲା) ରେ ମଠର ମହନ୍ତ ରୂପେ ରାଜାଙ୍କ ଆଶ୍ରୟରେ ରହୁଥିଲାବେଳେ ରଚନା କରିଥିଲେ । (୧) ସେ ମଧ୍ୟ ଓଡ଼ିଶାର ସୁପ୍ରସିଦ୍ଧ କବି ଅଭିମନ୍ୟୁ

---

* Descriptive catalogue of Sanskrit manuscripts, Vol-II Preface P. CLXXII—CLXXIII P 51 and 54

(୧) ଖୋର୍ଦ୍ଧା ଇତିହାସ, ପୃ-୨୧୧

ସାମନ୍ତ ସିଂହାରଙ୍କ ଶିକ୍ଷାଗୁରୁ ରୂପେ ତାଙ୍କ ଯୌବନ କାଳରେ ବୈଷ୍ଣବ ଦୀକ୍ଷା ନେଇଥିଲେ । ସଦାନନ୍ଦ ବ୍ରହ୍ମା ବହୁ ବୈଷ୍ଣବ ଗ୍ରନ୍ଥ ଲେଖି ବୀରକେଶରୀ' ଦେବଙ୍କ ଠାରୁ 'କବିସୂର୍ଯ୍ୟ ବ୍ରହ୍ମା' ଉପାଧି ପାଇଥିବା ବିଷୟ ତାଙ୍କ 'ପ୍ରେମ ତରଙ୍ଗିଣୀ'-ଗ୍ରନ୍ଥରେ ଉଲ୍ଲେଖ ଅଛି ।

ଖ୍ରୀ ୧୫ଶ ଶତାବ୍ଦୀ ଓ ତା' ପୂର୍ବରୁ ଓଡ଼ିଶାର ବୈଷ୍ଣବଧର୍ମାବଲମ୍ବୀମାନେ ମୁଖ୍ୟତଃ ଗୋପାଳ ଏବଂ ଗୋପୀନାଥଙ୍କ ଉପାସନା କରୁଥିଲେ । ତେଣୁ ଶ୍ରୀକ୍ଷେତ୍ରଠାରୁ ବାଲେଶ୍ୱର ଜିଲ୍ଲା ପର୍ଯ୍ୟନ୍ତ ଓଡ଼ିଶାରେ, ବିଶେଷତଃ ଉପକୂଳବର୍ତ୍ତୀ ଅଞ୍ଚଳରେ 'ଗୋପୀନାଥ'ଙ୍କ ମନ୍ଦିର ମାନ ଥିବା ଦେଖାଯାଏ । ସେଥିରେ ରାଧାଙ୍କ ବିଗ୍ରହ ନଥିଲା । କିନ୍ତୁ ଚୈତନ୍ୟଙ୍କ ଆବିର୍ଭାବ କାଳରେ ଓଡ଼ିଶାରେ ବହୁ ରାଜା ଓ ଜମିଦାରଙ୍କ ସମେତ ପଣ୍ଡିତ ଓ ଲେଖକମାନେ ଗୌଡ଼ୀୟ ବୈଷ୍ଣବ ଧର୍ମରେ ଦୀକ୍ଷା ଗ୍ରହଣ କରି ରାଧା-କୃଷ୍ଣଙ୍କ ପ୍ରେମଲୀଳା ଛନ୍ଦୋବଦ୍ଧ କବିତାରେ ପ୍ରକାଶ କରି ଓଡ଼ିଆ ସାହିତ୍ୟକୁ ଖ୍ରୀ ୧୬ଶ-ଶତାବ୍ଦୀ-ଠାରୁ ୧୯ଶ ଶତାବ୍ଦୀ ମଧ୍ୟରେ ଯଥେଷ୍ଟ ସମୃଦ୍ଧ କରିଥିବା ଜଣାଯାଏ । ସେତେବେଳେ ଶ୍ରୀଚୈତନ୍ୟଙ୍କୁ ଦେବ ପ୍ରତିମା ରୂପେ କେତେକ ମନ୍ଦିରରେ ପ୍ରତିଷ୍ଠା କରି ତାଙ୍କୁ ପୂଜା କରିବା ମଧ୍ୟ ସମ୍ଭବ ହୋଇଥିଲା ।

କବି ଲକ୍ଷ୍ମଣ ମିଶ୍ରଙ୍କ ରଚିତ 'ଶ୍ରୀକୃଷ୍ଣ ଲୀଳାମୃତ' ନାମକ ଗ୍ରନ୍ଥ ବୀରକେଶରୀଙ୍କ ୫୩ ଅଙ୍କ (ଖ୍ରୀ ୧୭୮-୯) ରେ ଲେଖା ହୋଇଥିଲା ।

ପାରଳାଖେମୁଣ୍ଡି ରାଜା ଜଗନ୍ନାଥ ନାରାୟଣ ଦେବ ଗୌଡ଼ୀୟ ବୈଷ୍ଣବ ମତରେ ଦୀକ୍ଷା ଗ୍ରହଣ କରି ଶ୍ରୀ ବୃନ୍ଦାବନକୁ ଯାତ୍ରା କରିଥିଲେ । ସେଠାରେ ସେ ରାଧା-କୃଷ୍ଣଙ୍କ ଲୀଳାର ପୀଠଭୂମି ବନଗୁଡ଼ିକ ପରିକ୍ରମା କରି ନିଜ ଅନୁଭୂତି 'ନବ ବୃନ୍ଦାବନଚନ୍ଦ୍ର-ବିହାର' ନାମକ କାବ୍ୟ ଖ୍ରୀ ୧୭୬୬-୭ ରେ ସମ୍ପୂର୍ଣ୍ଣ କରିଥିଲେ ।

ସେଠାରେ ଜଣେ ଚିତ୍ରକାର କବି ହରିକୃଷ୍ଣ ମହାରଣା "ଗୋପୀନାଥ ଜଣାଣ" ଏବଂ "ଏକାଦଶୀ-ମାହାତ୍ମ୍ୟ" ନାମକ ଦୁଇଟି ଗ୍ରନ୍ଥ ନବାକ୍ଷରୀ ଛନ୍ଦରେ ପ୍ରଣୟନ କରିଛନ୍ତି । ସେ କୃଷ୍ଣଲୀଳା ଭିତ୍ତିକ ବହୁ ପଟ୍ଟଚିତ୍ର ପ୍ରତିବର୍ଷ ଅତି ଚମତ୍କାର ଭାବେ ଆଙ୍କି ରାଜାଙ୍କୁ ଉପହାର ଦେଇଥିବାରୁ ପାରଳାଖେମୁଣ୍ଡିରେ ପ୍ରତିଷ୍ଠିତ ଶ୍ରୀ ଜଗନ୍ନାଥଙ୍କ ଚିତ୍ର ପ୍ରତିବର୍ଷ ନେତ୍ରୋତ୍ସବରେ ସମ୍ପନ୍ନ କରି ଲକ୍ଷ୍ମୀପୁର ଗ୍ରାମରେ ପ୍ରତିଷ୍ଠିତ ରାଧାକୃଷ୍ଣଙ୍କ ଦାରୁ ପ୍ରତିମାମାନଙ୍କ ଚିତ୍ର ସକାଶେ ରାଜା ତାଙ୍କୁ 'ଲକ୍ଷ୍ମୀପୁର' ଗ୍ରାମ ଦାନ କରିଥିଲେ ।

ସେତେବେଳେ ବଡ଼ଖେମୁଣ୍ଡିର ରାଜା ପୁରୁଷୋତ୍ତମ ଅନଙ୍ଗଭୀମ ଦେବ ଗୌଡ଼ୀୟ ବୈଷ୍ଣବ ଧର୍ମ ଗ୍ରହଣ କରିଥିଲେ । 'କୃଷ୍ଣକେଳି-ତରଙ୍ଗିଣୀ' ନାମକ ଗୋଟିଏ ଓଡ଼ିଆ କାବ୍ୟ ରଚନା କରିଥିଲେ ।

ବନ୍ଦିବାକ ଚକ୍ରପାଣି ପଟ୍ଟନାୟକ ଗଞ୍ଜାମର ଜଣେ ବିଶିଷ୍ଟ ସଙ୍ଗୀତଜ୍ଞ କବି ରୂପେ ପରିଚିତ ହୋଇଛନ୍ତି । ତାଙ୍କ ରଚିତ 'ଗୁଣ୍ଡିଚ୍ଚ ଚମ୍ପୂ' ଓ 'କୃଷ୍ଣ ବିଳାସ' ନାମକ ଦୁଇଟି ଗ୍ରନ୍ଥ ଖ୍ରୀ: ୧୭୭୮ ରେ ଶେଷ ହୋଇଥିଲା । ତାଙ୍କ ଠାରୁ ଉତ୍ସାହ ପାଇଁ ପାରଳାଖିମୁଣ୍ଡିର ପରମ କୃଷ୍ଣଭକ୍ତ କବି ଗୋପାଳକୃଷ୍ଣ ବୋଧହୁଏ 'ଗୀତଗୋବିନ୍ଦ'ର ସୁଲଳିତ ସଙ୍ଗୀତକୁ ଅନୁଧ୍ୟାନ କରି ସହଜ ଓ ମଧୁର ଓଡ଼ିଆ ଭାଷାରେ ରାଧାକୃଷ୍ଣଙ୍କ ଲୀଳା ସଙ୍ଗୀତମାନ ରଚନା କରି ଓଡ଼ିଶୀ ସଙ୍ଗୀତ ସାହିତ୍ୟ ଅତି ଉଚ୍ଚ ଆସନ ପ୍ରତିଷ୍ଠା କରିଥିଲା । (୧) ଖ୍ରୀ ୧୮ଶ ଶତାବ୍ଦୀରେ ଢେଙ୍କାନାଳର କବି ବ୍ରଜନାଥ ବଡ଼ଜେନା ଚତୁର ବିନୋଦ, କୃଷ୍ଣଲୀଳା, ଗୋପୀ ବିଳାସ, ଗୁଣ୍ଡିଚ୍ଚ ବିଜେ ପ୍ରଭୃତି ଗ୍ରନ୍ଥ ରଚନା କରିଥିବା ଜଣାଯାଏ । ତାଙ୍କ ରଚିତ 'ସମର ତରଙ୍ଗ' ଓଡ଼ିଆ ସମର ସାହିତ୍ୟରେ ଏକ ଅଦ୍ୱିତୀୟ ଗ୍ରନ୍ଥରୂପେ ସ୍ୱୀକୃତ ହୋଇଛି ।

ଅଭିମନ୍ୟୁ ସାମନ୍ତ ସିଂହାରଙ୍କ ରଚିତ ରାଧାକୃଷ୍ଣ ଲୀଳାତ୍ମକ 'ବିଦଗ୍ଧ ଚିନ୍ତାମଣି' କାବ୍ୟ ଓଡ଼ିଶାରେ ସର୍ବଜ ପରିଚିତ । ସେଥିରେ ଯେଉଁ ଛାନ୍ଦଗୁଡ଼ିକ ରାଗ ଓ ତାଳ ନିୟମରେ ସୁଲଳିତ ପଦାବଳୀରେ ରଚିତ ହୋଇଛି, ତାହା ନିଶ୍ଚିତ ଭାବେ ଜୟଦେବଙ୍କ 'ଗୀତଗୋବିନ୍ଦ' ଆଦର୍ଶରେ ଲେଖା ହୋଇଥିବା ଜଣାଯାଏ । ତାଙ୍କର ଜୀବିତ କାଳ ଖ୍ରୀ ୧୮ଶ ଶତାବ୍ଦୀର ଶେଷ ଏବଂ ୧୯ଶ ଶତାବ୍ଦୀର ଆରମ୍ଭରେ ବୋଲି ଜଣାଯାଇଛି ।

ବାସ୍ତବରେ କହିବାକୁ ଗଲେ ଦୀନକୃଷ୍ଣ ଦାସ, ଗୋପାଳକୃଷ୍ଣ ପଟ୍ଟନାୟକ, ଅଭିମନ୍ୟୁ ସାମନ୍ତ ସିଂହାର ଥିଲେ ପରମ କୃଷ୍ଣଭକ୍ତ କବି । ସେମାନେ 'ଗୀତ ଗୋବିନ୍ଦ'କୁ ଆଶ୍ରୟ କରି ସଙ୍ଗୀତକୁ ରୁଚିସମ୍ପନ୍ନ କରି ସରଳ-ସହଜ ଭାଷାରେ ରଚନା କରିଥିଲେ । କିନ୍ତୁ ତାଙ୍କର ପ୍ରାୟ ସମ ସାମୟିକ କବି ଗଞ୍ଜାମ ଆଠଗଡ଼ ରାଜାଙ୍କ ଆଶ୍ରୟରେ ସ୍ୱନାମଧନ୍ୟ କବିସୂର୍ଯ୍ୟ ବଳଦେବ ରଥ ସଙ୍ଗୀତ ମାଧ୍ୟମରେ "କିଶୋରଚନ୍ଦ୍ରାନନ୍ଦ ଚମ୍ପୂ" କାବ୍ୟ ଲେଖିଥିଲେ, ଯଦିଚ ତାଙ୍କର ଭାଷା ଓ ଭାବକୁ ଆମ୍ଭେ ଉପେନ୍ଦ୍ରଭଞ୍ଜ ଏବଂ ଅଭିମନ୍ୟୁ ସାମନ୍ତସିଂହାରଙ୍କ ଭାଷା ଓ ଲାଳିତ୍ୟର ଏକ ଉତ୍କୃଷ୍ଟ ସଂଯୋଜନା ବୋଲି କହିପାରୁ । କବିସୂର୍ଯ୍ୟ ତାଙ୍କର ସେହି ଚମ୍ପୂକାବ୍ୟରେ ରାଧାକୃଷ୍ଣ ପ୍ରେମ ସଙ୍ଗୀତର ମହତ୍ତ୍ୱ ଦୃଷ୍ଟିରୁ ତାହା ସର୍ବଜ ବରେଣ୍ୟ ହୋଇପାରିଛି ।

ବାରକେଶରୀ ରାଜାଙ୍କ ପୃଷ୍ଠପୋଷକତାରେ କବି ବନମାଳୀ ବହୁତଗୁଡ଼ିଏ ରାଧାକୃଷ୍ଣଙ୍କ ଲୀଳାକୁ ଭିତ୍ତିକରି ରଚନା କରିଥିବା ଦେଖାଯାଏ ।

---

(୧) ଗୋପାଳକୃଷ୍ଣ ପଦ୍ୟାବଳୀ—ପାରଳା ଗଜପତି ପ୍ରେସ୍ ପ୍ରକାଶନ ଦ୍ରଷ୍ଟବ୍ୟ

ପିପ୍ପିଳି ଶ୍ରୀଚନ୍ଦନ ପୁରୀ ଜିଲ୍ଲା ବୋଲଗଡ଼ରେ ଜନ୍ମଲାଭ କରି 'ବସନ୍ତ ରାସ' ନାମକ କୃଷ୍ଣ ଲୀଳାତ୍ମକ କାବ୍ୟ ରଚନା କରିଥିଲେ । ପୂର୍ବରୁ ଶିଶୁ ବନମାଳୀ ଦାସ 'ରାସ'କୁ ଛନ୍ଦ-ଖଣ୍ଡରେ ବିଭକ୍ତ କରି ରଚନା କରିଥିଲେ । ସେ ଉଭୟ ଗ୍ରନ୍ଥରେ ଶ୍ରୀ ରାଧାକୃଷ୍ଣଙ୍କ 'ରାସଲୀଳା' ଅଭିନୟ କରିବା ଉଦ୍ଦେଶ୍ୟରେ ଲେଖାଯାଇଛି । ଶ୍ରୀଚନ୍ଦନଙ୍କ 'ବସନ୍ତ ରାସ' ଯାହା ବା ଯୁଆଙ୍ଗ ହୋଇଥିବାରୁ ତାହା ଗୀତଗୋବିନ୍ଦ ଗ୍ରନ୍ଥରେ ରଚିତ ହୋଇଥିବ ବୋଲି ସ୍ୱର୍ଗତ କେଦାରନାଥ ମହାପାତ୍ର କହନ୍ତି । କବି ଶ୍ରୀଚନ୍ଦନ ଚୈତନ୍ୟପନ୍ଥୀ ହୋଇଥିବାରୁ 'ବସନ୍ତ ରାସ'ରେ ଓଡ଼ିଆ ସଙ୍ଗେ ବଙ୍ଗଳା ଭାଷାର ଶବ୍ଦ ମିଶିଥିବା ସମ୍ଭବ ହୋଇଛି । ଏ ସମ୍ବନ୍ଧରେ ଶ୍ରୀ ମହାପାତ୍ର ଲେଖିଛନ୍ତି—

ଶ୍ରୀଚୈତନ୍ୟଙ୍କ ମତ ପ୍ରଚାରକମାନଙ୍କ ମଧ୍ୟରେ ଅଧିକାଂଶ ବଙ୍ଗାଳି ଥିବାରୁ ଏବଂ ବଙ୍ଗଳାରେ ଲିଖିତ 'ନବଦ୍ୱୀପ-କୀର୍ତ୍ତନ' ଦ୍ୱାରା ଧର୍ମପ୍ରଚାର ହେଉଥିବାରୁ ଓଡ଼ିଆ ଭାଷା ଅଲକ୍ଷିତ ଭାବେ ବଙ୍ଗଳା ଭାଷାଦ୍ୱାରା ପ୍ରଭାବିତ ହେଉଥିଲା । (୧)

ଖ୍ରୀ ୧୭ଶ ଶତାବ୍ଦୀରେ କବି ଭକ୍ତଚରଣ ଦାସ ମଥୁରା ମଙ୍ଗଳ ନାମକ ଗୋଟିଏ ସୁପରିଚିତ ଗ୍ରନ୍ଥ ରଚନା କରିଥିଲେ । (୨) ସେତେବେଳେ ଅନ୍ୟ ଜଣେ କବି ହରିବଂଶ ରାୟ 'ଶ୍ରୀ ରାଧାମାଧବ କୁତୂହଳ ଲୀଳା' ନାମକ ଗ୍ରନ୍ଥ ରଚନା କରି ସେଥିରେ "ଶରଦ୍ ରାସ-ଲୀଳା" ବର୍ଣ୍ଣନା କରିଛନ୍ତି । କିନ୍ତୁ ଗ୍ରନ୍ଥଟି ଅଦ୍ୟାପି ଅପ୍ରକାଶିତ ହୋଇ ରହିଛି । ଖ୍ରୀ ୧୭୪୭ ରେ ବାଲେଶ୍ୱରସ୍ଥ ଜଳେଶ୍ୱରଠାରେ କବି ଭାଗୀରଥ ମନ୍ଦରଧର 'ରାଧାବିଳାସ' ନାମକ ଗୋଟିଏ କାବ୍ୟ ଉପେନ୍ଦ୍ରଭଞ୍ଜଙ୍କ କାବ୍ୟରେ ବିବିଧ ଆଲଙ୍କାରିକ ଭାଷାରେ ରଚନା କରିଥିଲେ । ଖ୍ରୀ ୧୭୭୮ରେ 'ସଙ୍ଗୀତ ସର୍ବସ୍ୱ' ନାମକ ସଙ୍ଗୀତ ଗ୍ରନ୍ଥ ପ୍ରଣେତା କବିଭୂଷଣ ଗୋବିନ୍ଦ ସାମନ୍ତରାୟ ରୂପଗୋସ୍ୱାମୀଙ୍କ "ବିଦଗ୍ଧ ମାଧବ" ନାଟକ ଅନୁକରଣରେ ପୁଣି ଗୀତଗୋବିନ୍ଦ ଆଦର୍ଶରେ "ସମୁଦ୍ଧ-ମାଧବ" ନାମକ ଗୋଟିଏ ସଂସ୍କୃତ ନାଟକ ଲେଖିଥିଲେ । (୩) ଏ ନାଟକଟି ପୁରୀ ଶ୍ରୀମନ୍ଦିରରେ ପ୍ରଥମେ ଅଭିନୀତ ହୋଇଥିଲା ।

ତାଙ୍କ ପୌତ୍ର ଓ କୃଷ୍ଣ ଖଡ଼୍ଗରାୟଙ୍କ ପୁତ୍ର କବିଚନ୍ଦ୍ର କମଳଲୋଚନ ଖଡ଼୍ଗରାୟ ନାଗପୁର ଭୋଁସଲାଙ୍କ ସଭାରେ ରହି 'ଗୀତ ଗୋବିନ୍ଦ' ଅନୁକରଣରେ

---

(୧) 'ଖୁରଧା ଇତିହାସ', ପୃ-୨୪୦
(୨) ପ୍ରାଚୀ ସମିତି ପ୍ରକାଶନ ଦ୍ୱାରା ସ୍ୱର୍ଗତ ଅଧ୍ୟାପକ ଆର୍ତ୍ତବଲ୍ଲଭଙ୍କ 'ମୁଖବନ୍ଧ' ସହ ମୁଦ୍ରିତ ହୋଇଛି ।
(୩) O. H. R. J. Vol-I Pt I and II; ଝଙ୍କାର ୨ୟ ବର୍ଷ ୭ମ ସଂଖ୍ୟା

'ଗୀତ ମୁକୁନ୍ଦ' ନାମକ ଗୋଟିଏ ଉଚ୍ଚକୋଟୀର ସଂସ୍କୃତ ନାଟକ ରଚନା କରିଥିଲେ । ସେ ଗୋବିନ୍ଦ କବିଭୂଷଣଙ୍କ ପୁତ୍ର ବୋଲି ସେହି ନାଟକରେ ଲେଖିଛନ୍ତି ।

ଯଃ କୃଷ୍ଣଗଡ଼୍‌ଗଗଜ୍ୟୋତିଭୂତ୍ ଗୋବିନ୍ଦ କବି ଭୂଷଣାତ୍ । କବି କମଲଲୋଚନ ଗଡ଼୍‌ଗଗଜଙ୍କ ସମ୍ବନ୍ଧେ ଅଧିକ ଜ୍ଞାତବ୍ୟ ବିଷୟ ଏଥିର ଦ୍ୱିତୀୟ ପରିଚ୍ଛେଦରେ ଆମ୍ଭେ ଉଲ୍ଲେଖ କରିଛୁ ।

ଗଂଜାମ ଜିଲ୍ଲା ସାନଖିମୁଣ୍ଡିର ବିଜୟନଗର ରାଜସଭାରେ ରହି 'କବିରତ୍ନ' ଉପାଧିଧାରୀ ପଣ୍ଡିତ ହରିସେବକ ସାମନ୍ତରାୟ 'ମଥୁରା ପ୍ରସ୍ଥାଣ' ନାମକ ଗୋଟିଏ ଖଣ୍ଡକାବ୍ୟ ସଂସ୍କୃତରେ ରଚନା କରି ସେଥିରେ ରାଧାକୃଷ୍ଣଙ୍କ ଲୀଳା ବର୍ଣ୍ଣନା କରିଛନ୍ତି । ଆଉ ମଧ କୃଷ୍ଣଦାସ ଗୋସ୍ୱାମୀଙ୍କ କୃତ ସଂସ୍କୃତ 'ଗୋବିନ୍ଦ ଲୀଳାମୃତ' ନାମକ ପ୍ରସିଦ୍ଧ ବୈଷ୍ଣବ ଗ୍ରନ୍ଥର 'ବୈଷ୍ଣବାହ୍ଲାଦନୀ ଟୀକା' ଲେଖିଥିଲେ ।



# ପରିଶିଷ୍ଟ

ଶ୍ରୀ ଚୈତନ୍ୟଙ୍କ ପ୍ରସ୍ତାରିତ ନାମ ସଙ୍କୀର୍ତ୍ତନ ଏବଂ ଗୌଡ଼ୀୟ ବୈଷ୍ଣବ ସମ୍ପ୍ରଦାୟଙ୍କ ପ୍ରବର୍ତ୍ତିତ ଚଣ୍ଡୀ ଦାସ ଓ ବିଦ୍ୟାପତିଙ୍କ ରଚିତ ବଙ୍ଗଳା ଗାନ ସଙ୍କୀର୍ତ୍ତନ ମାଧ୍ୟମରେ ମୃଦଙ୍ଗ ବା ଖୋଲ ତାଳ ସାହାଯ୍ୟରେ ଓଡ଼ିଶାରେ ପରିବେଶିତ ହେଉଥିଲେ ହେଁ ଓଡ଼ିଆ ସାହିତ୍ୟରେ ଯେଉଁ ବୈଷ୍ଣବ କବିମାନେ କୃଷ୍ଣଲୀଳାକୁ ଭିତ୍ତି କରି ଗାନ-ଗୁଡ଼ିକ ରଚନା କରି ଓଡ଼ିଶୀ ସଙ୍ଗୀତକୁ ପ୍ରାଚୀନ 'ଗୀତ ଗୋବିନ୍ଦ'ର ରଚନା କାଳରୁ ଉଜ୍ଜୀବିତ ପୂର୍ବକ ବଙ୍ଗୀୟ ଗାନ ପଦ୍ଧତିରୁ ସ୍ୱତନ୍ତ୍ର କରି ରକ୍ଷା କରିଥିଲେ । ତେଣୁ ସେଥିର ଏକ ସ୍ୱତନ୍ତ୍ର ଗବେଷଣା ଓଡ଼ିଶାର ସଙ୍ଗୀତ ବିଶାରଦମାନେ କରି ଏହି ପରିଚ୍ଛେଦରେ କବି ଜୟଦେବଙ୍କ 'ଶ୍ରୀ ଗୀତଗୋବିନ୍ଦ'ରେ ସଂଯୁକ୍ତ ହୋଇଥିବା ଗୀତଗୁଡ଼ିକ ଏବଂ ସେଥିରେ ପ୍ରବର୍ତ୍ତିତ ରାଗ-ତାଳ ପ୍ରଭୃତି ଏହି ପରିଶିଷ୍ଟ ପରିଚ୍ଛେଦରେ ଉଦ୍ଧୃତ ହେଲା ।

[ ୧ ]

## ମାଳବ ଗୌଡ଼ା ରାଗ—ରୂପକ ତାଳ

("ନିତମ୍ବ ନିଚୁମ୍ବିତ ବକ୍ଷପଦ ଶୁକ ଦ୍ୟୁତିଃ କୁଣ୍ଡଳବାନ୍ ପ୍ରମତ୍ତଃ ।
ସଙ୍ଗୀତଶାଳା ପ୍ରବିଶନ୍ ପ୍ରଦୋଷେ ମାଳାଧରୋ ମାଳବରାଗଃ ରାଜଃ ॥")

ପ୍ରଳୟ ପୟୋଧିଜଳେ ଧୃତବାନସି ବେଦଂ
ବିହିତ ବହିତ୍ର ଚରିତ୍ର ମଖେଦଂ,
କେଶବ ଧୃତ, ମୀନ ଶରୀର, ଜୟ ଜଗଦୀଶ ହରେ ॥ ଧ୍ରୁବ ॥

କ୍ଷିତି ରତି ବିପୁଳତରେ ତବ ତିଷ୍ଠତି ପୃଷ୍ଠେ,
ଧରଣି ଧରଣ କିଣ ଚକ୍ର ଗରିଷ୍ଠେ,
କେଶବ ଧୃତ, କଚ୍ଛପ ରୂପ, ଜୟ ଜଗଦୀଶ ହରେ ॥ ୨ ॥

ବସତି ଦଶନ ଶିଖରେ ଧରଣୀ ତବ ଲଗ୍ନା,
ଶଶିନି କଳଙ୍କ କଳେବ ନିମଗ୍ନା,
କେଶବ ଧୃତ, ଶୂକର ରୂପ, ଜୟ ଜଗଦୀଶ ହରେ ॥ ୩ ॥

ତବ କରକମଳବରେ ନଖମଦ୍‌ଭୁତ-ଶୃଙ୍ଗମ୍‌
ଦଳିତ ହିରଣ୍ୟ କଶ୍ୟପତନୁ ଭୃଙ୍ଗଂ,
କେଶବ ଧୃତ, ନରହରି ରୂପ, ଜୟ ଜଗଦୀଶ ହରେ ॥ ୪ ॥

ଛଳୟସି ବିକ୍ରମଣେ ବଲିମଦ୍‌ଭୁତ ବାମନ
ପଦନଖ ନୀର ଜନିତ ଜନପାବନ,
କେଶବ ଧୃତ, ବାମନ ରୂପ, ଜୟ ଜଗଦୀଶ ହରେ ॥ ୫ ॥

କ୍ଷତ୍ରିୟ ରୁଧିର ମୟେ ଜଗଦପଗତ ପାପଂ,
ସ୍ନପୟସି ପୟସି ଶମିତ ଭବତାପଂ
କେଶବ ଧୃତ, ଭୃଗୁପତି ରୂପ
ଜୟ ଜଗଦୀଶ ହରେ ॥ ୬ ॥

ବିତରସି ଦିକ୍ଷୁରଣେ ଦିକ୍‌ପତି କମନୀୟଂ
ଦଶ ମୁଖମୌଳି ବଳିଂ ରମଣୀୟଂ
କେଶବ ଧୃତ, ରାମ ଶରୀର, ଜୟ ଜଗଦୀଶ ହରେ ॥ ୭ ॥

ବହସି ବପୁସି ବିଶଦେ ବସନଂ ଜଳଦାଭଂ
ହଳହତି ଭୀତି ମିଳିତ ଯମୁନାଭଂ
କେଶବ ଧୃତ, ହଳଧର ରୂପ, ଜୟ ଜଗଦୀଶ ହରେ ॥ ୮ ॥

ନିନ୍ଦସି ଯଜ୍ଞ ବିଧେର୍ବ୍ୱ ରହହ ଶ୍ରୁତି ଜାତଂ
ସଦୟ ହୃଦୟ ଦର୍ଶିତ ପଶୁଘାତଂ
କେଶବ ଧୃତ, ବୁଦ୍ଧ ଶରୀର, ଜୟ ଜଗଦୀଶ ହରେ ॥ ୯ ॥

ମ୍ଳେଚ୍ଛ ନିବହ ନିଧନେ କଳୟସି କରବାଳଂ,
ଧୂମକେତୁମିବ କିମପି କରାଳଂ
କେଶବ ଧୃତ, କଲ୍‌କି ଶରୀର, ଜୟ ଜୟଦୀଶ ହରେ ॥ ୧୦ ॥

[ ୨ ]

## ମଙ୍ଗଳ-ଗୁର୍ଜ୍ଜରୀ ରାଗ – ନିଃସାର ତାଳ

(''ଶ୍ୟାମା ସୁକେଶୀ ମାଳୟା ଭ୍ରମାଣଂ
ମୃଦୁଲ ସତ୍ୱ ପଲ୍ଲବ ତଲ୍ପଯାତା
ଶ୍ରୁତେଃ ସ୍ୱରାଣା ଦଧତୀ ସ୍ୱରାଗଂ
ତନ୍‌ ତନ୍‌ ମୃଣୀ ମଙ୍ଗଳ ଗୁର୍ଜ୍ଜରୀୟମ୍‌'')

ଶ୍ରିତ କମଳା କୁଚମଣ୍ଡଳ, ଧୃତ କୁଣ୍ଡଳ,
କଳିତ ଲଳିତ ବନମାଳ, ଜୟ ଜୟ ଦେବ ହରେ ॥ ଧ୍ରୁବ ॥
ଦିନମଣି ମଣ୍ଡଳ ମଣ୍ଡନ, ଭବ ଖଣ୍ଡନ,
ମୁନି ଜନ ମାନସହଂସ, ଜୟ ଜୟ ଦେବ ହରେ ॥ ୨ ॥
କାଳିୟ ବିଷଧର ଗଞ୍ଜନ, ଜନରଞ୍ଜନ,
ଯଦୁକୁଳ ନଳିନ ଦିନେଶ, ଜୟ ଜୟ ଦେବ ହରେ ॥ ୩ ॥

ମଧୁ ମୁର ନରକ ବିନାଶନ, ଗରୁଡ଼ାସନ,
ସୁର କୁଳକେଳି ନିଦାନ, ଜୟ ଜୟ ଦେବ ହରେ ॥ ୪ ॥

ଅମଳ କମଳ ଦଳ ଲୋଚନ, ଭବ ମୋଚନ,
ତ୍ରିଭୁବନ ଭବନ ନିଧାନ, ଜୟ ଜୟ ଦେବ ହରେ ॥ ୫ ॥

ଜନକ ସୁତା କୃତ ଭୂଷଣ, ଜିତ ଦୂଷଣ,
ସମର ଶମିତ ଦଶକଣ୍ଠ, ଜୟ ଜୟ ଦେବ ହରେ ॥ ୬ ॥

ଅଭିନବ ଜଳଧର ସୁନ୍ଦର, ଧୃତ ମନ୍ଦର,
ଶ୍ରୀମୁଖଚନ୍ଦ୍ର ଚକୋର, ଜୟ ଜୟ ଦେବ ହରେ ॥ ୭ ॥

ତବ ଚରଣେ ପ୍ରଣତା, ବୟମିତି ଭାବୟ,
କୁରୁକୁଶଳଂ ପ୍ରଣତେଷୁ, ଜୟ ଜୟ ଦେବ ହରେ ॥ ୮ ॥

ଶ୍ରୀ ଜୟଦେବ କବେରିଦଂ, କୁରୁତେ ମୁଦଂ ※
ମଙ୍ଗଳମୁଜ୍ଜ୍ୱଳ ଗୀତ, ଜୟ ଜୟ ଦେବ ହରେ ॥ ୯ ॥

[ ୩ ]

**ବସନ୍ତରାଗ—ତାଳ ଯତି**

( "ଶିଖଣ୍ଡ ବାଦୋଚୟ ବଦ୍ଧ ଚୂଡ଼ଃ ପୁଷ୍ଣନ୍ ପିକଂ ଚୂତ ନବାଙ୍କୁରେଣ ।
ଭ୍ରମନ୍ ମୁଦା କାମ୍ମନଙ୍ଗ ମୂର୍ତ୍ତିର୍ମିର୍ବେ ମତଙ୍ଗୋଽୟ ବସନ୍ତ ରାଗଃ ।" )

ଲଳିତ ଲବଙ୍ଗ ଲତା ପରିଶୀଳନ କୋମଳ ମଳୟ ସମୀରେ,
ମଧୁକର ନିକର କରମ୍ବିତ କୋକିଳ କୂଜିତ କୁଞ୍ଜ କୁଟୀରେ

---

※ ଉପଧା ମିଳନର ଅଭାବ ଥିବା ଦେଖାଯାଏ ।

ବିହରତି ହରିରିହ ସରସ ବସନ୍ତେ,
ନୃତ୍ୟତି ଯୁବତି ଜନେନ ସମଂ ସଖି ବିରହି ଜନସ୍ୟ ଦୁରନ୍ତେ ॥ ଧ୍ରୁବ ॥

ଉନ୍ମଦ ମଦନ ମନୋରଥ ପଥିକ ବଧୂଜନ ଜନିତ ବିଳାପେ
ଅଳିକୁଳ ସଙ୍କୁଳ କୁସୁମ ସମୂହ ନିରାକୁଳ ବକୁଳ କଳାପେ ॥ ୨ ॥

ମୃଗମଦ ସୌରଭ ରଭସ ବଶମ୍ବଦ ନବଦଳ ମାଳ ତମାଳେ ।
ଯୁବଜନ ହୃଦୟ ବିଦାରଣ ମନସିଜ ନଖରୁଚି କିଂଶୁକ ଜାଲେ ॥ ୩ ॥

ମଦନ ମହୀପତି କନକ ଦଣ୍ଡରୁଚି କେଶର କୁସୁମ ବିକାଶେ ।
ମିଳିତ ଶିଳୀମୁଖ ପାଟଳି ପଟଳ କୃତ ସ୍ମରଣ ତୂଣ ବିଳାସେ ॥ ୪ ॥

ବିଗଳିତ ଲଜ୍ଜିତ ଜଗଦବଲୋକନ ତରୁଣ କରୁଣ କୃତ ହାସେ ।
ବିରହିନ କୃନ୍ତନ କୁନ୍ତ ମୁଖାକୃତି କେତକି ଦନ୍ତୁରିତାଶେ ॥ ୫ ॥

ମାଧବିକା ପରିମଳ ଲଳିତେ ନବ ମାଳତି ଜାତି ସୁଗନ୍ଧୌ ।
ମୁନି ମନସାମପି ମୋଦନକାରିଣୀ ତରୁଣ କରୁଣା ବନ୍ଧୌ ॥ ୬ ॥

ସ୍ଫୁରଦତି ମୁକ୍ତଲତା ପରିରମ୍ଭଣ ପୁଲକିତ ମୁକୁଳିତ ଚୂତେ ।
ବୃନ୍ଦାବନ ବିପିନେ କେସର ପରିଗତ ଯମୁନା ଜଳ ପୂତେ ॥ ୭ ॥

ଶ୍ରୀ ଜୟଦେବ ଭଣିତମିଦ ମୁଦୟତି ହରିଚରଣ ସ୍ମୃତି ସାରଂ ।
ସରସ ବସନ୍ତ ସମୟ ବନ ବର୍ଣ୍ଣନ ମନୁଗତ ମଦନ ବିକାରମ୍ ॥ ୮ ॥

[ ୪ ]

## ରାମକେରୀ ରାଗ—ଯତି ତାଳ

("ସ୍ୱର୍ଣ୍ଣପ୍ରଭ ଈଶ୍ୱର ଭୂଷଣା ଚ ନୀଳଂ ନିଚୋଳଂ ବପୁଷାବହନ୍ତୀ ।
କାନ୍ତେ ପ୍ରଦୋଷାନ୍ତ ମଧୂଶ୍ରିତେଽପି ମାନୋନ୍ନତା' ରାମକିରୀସ୍ୟ ମିଷ୍ଟମ୍ ।")

ଚନ୍ଦନ ଚର୍ଚ୍ଚିତ ନୀଳକଳେବର
ପୀତବସନ ବନମାଳୀ ।
କେଳି ଚଳନ୍ମଣି କୁଣ୍ଡଳ ମଣ୍ଡିତ
ଗଣ୍ଡ ଯୁଗ ସ୍ମିତଶାଳୀ
ହରିରିହ ମୁଗ୍ଧବଧୂନିକରେ ॥ ଧ୍ରୁବ ॥

ପୀନ ପୟୋଧର ଭାରଭରେଣ ହରିଂ ପରିରଭ୍ୟ ସରାଗଂ
ଗୋପବଧୂରନୁଗାୟତି କାଚି ଦୁଦଞ୍ଚିତ ପଞ୍ଚମ ରାଗମ୍ ॥ ୧ ॥

କାପି ବିଲାସ ବିଲୋଲ ବିଲୋଚନ ଖେଲନ ଜନିତ ମନୋଜଂ
ଧ୍ୟାୟତି ମୁଗ୍ଧବଧୂରଧିକଂ ମଧୁସୂଦନ ବଦନ ସରୋଜମ୍ ॥ ୩ ॥

କାପି କପୋଳ ତଳେ ମିଳିତା ଲପିତୁଂ କିମପି ଶ୍ରୁତି ମୂଲେ ।
ଚାରୁ ଚୁଚୁମ୍ବ ନିତମ୍ବବତୀ ଦୟିତଂ ପୁଲକୈ ରନୁକୂଳେ ॥ ୪ ॥

କେଳିକଳା କୁତୁକେନ ଚ କାଚିଦମୁଂ ଯମୁନା ବନକୂଳେ ।
ମଞ୍ଜୁଳ ବଞ୍ଜୁଳ କୁଞ୍ଜଗତଂ ବିଚକର୍ଷ କରେଣ ଦୁକୂଳେ ॥ ୫ ॥

କରତଳ ତାଳ ତରଳ ବଳୟାବଳି କଳିତ କଳସ୍ୱନ ବଂଶେ ।
ରାସରସେ ସହ ନୃତ୍ୟପରା ହରିଣା ଯୁବତୀ ପ୍ରଶଶଂସେ ॥ ୬ ॥

ଶ୍ଳିଷ୍ୟତି କାମପି ଚୁମ୍ବତି କାମପି କାମପିରମୟତି ରାମାଂ ।
ପଶ୍ୟତି ସସ୍ମିତଚାରୁପରାମ ପରାମନୁ ଗଚ୍ଛତି ବାମାମ୍ ॥ ୭ ॥

ଶ୍ରୀଜୟଦେବ ଭଣିତମିଦମଦ୍ଭୁତ କେଶବ କେଳି ରହସ୍ୟଂ
ବିପିନ ବିନୋଦ କଳାବଳିତଂ ବିତନୋତୁ ଶୁଭାନି ଯଶସ୍ୟମ୍ ॥ ୮ ॥

(ପ୍ରଥମ ସର୍ଗ ସମାପ୍ତ)

[ ୫ ]

## ଗୁର୍ଜ୍ଜରୀ ରାଗ—ଯତି ତାଳ

ସଞ୍ଚର ଦଧର-ସୁଧା-ମଧୁର ଧ୍ୱନି ମୁଖରିତ ମୋହନ ବଂଶଂ ।
ଚଳିତ ଦୃଗଞ୍ଚଳ ଚଞ୍ଚଳ ମୌଳି କପୋଳ ବିଲୋଳବତଂସମ୍ ॥

ରାସେ, ହରମିହ ବିହିତ ବିଳାସଂ ।
ସ୍ମରତି ମନୋ ମମକୃତ ପରିହାସମ୍ । ଧ୍ରୁବ ॥

ଚନ୍ଦ୍ରକ ଚାରୁ ମୟୂର ଶିଖଣ୍ଡକ ମଣ୍ଡଳ ବଳୟିତ କେଶଂ
ପ୍ରଚୁର ପୁରନ୍ଦର ଧନୁ ରଞ୍ଜିତ ମେଦୁର ମୁଦିର ସୁବେଶମ୍ ॥ ୨ ॥

ଗୋପ କଦମ୍ବ ନିତମ୍ବବତୀ ମୁଖ ଚୁମ୍ବନ ଲମ୍ଭିତ ଲୋଭଂ
ବନ୍ଧୁଜୀବ ମଧୁରାଧର ପଲ୍ଲବ ମୁଲ୍ଲସିତ ସ୍ମିତ ଶୋଭମ୍ ॥ ୩ ॥

ବିପୁଳ ପୁଲକ ଭୁଜ ପଲ୍ଲବ ବଳୟିତ ବଲ୍ଲବ ଯୁବତୀ ସହସ୍ରଂ ✱
କର ଚରଣେ ଉରସି ମଣିଗଣ ଭୂଷଣ କିରଣ ବିଭିନ୍ନ ତମିସ୍ରମ୍ ॥ ୪ ॥

---

✱ ଉପଧା ମିଳନର ଅଭାବ ଦେଖାଯାଏ ।

ଜଳଦ ପଟଳ ଚଳଦିନ୍ଦୁ ବିନିନ୍ଦକଚନ୍ଦନ ତିଳକ ଲଲାଟଂ ।
ପୀନପୟୋଧର ପରିସର ମର୍ଦ୍ଦନ ନିର୍ଦ୍ଦୟ ହୃଦୟ କପାଟଂ ॥ ୫ ॥

ମଣିମୟ ମକର ମନୋହର କୁଣ୍ଡଳ ମଣ୍ଡିତ ଗଣ୍ଡ ମୁଦାରଂ
ପୀତବସନ ମନୁଗତ ମୁନି ମନୁଜ ସୁରାସୁର ବର ପରିବାରମ୍ ॥ ୬ ॥

ବିଶଦ କଦମ୍ବ ତଳେ ମିଳିତଂ କଲିକଳୁଷ ଭୟଂ ଶମୟନ୍ତଂ ।
ମାମ ପିକମପି ତରଙ୍ଗ ଦନଙ୍ଗ ଦୃଶାମନସା ରମୟନ୍ତମ୍ ॥ ୭ ॥

ଶ୍ରୀଜୟଦେବ ଭଣିତମତି ସୁନ୍ଦର ମୋହନ ମାଧୁରି ରୂପଂ ।
ହରିଚରଣ ସ୍ମରଣଂ ପ୍ରତି ସମ୍ପ୍ରତି ପୁଣ୍ୟବତାମନୁରୂପମ୍ ॥ ୮ ॥

## [ ୬ ]

## ଗୁଣ୍ଡକିରୀ—ରାଗ

("ଗତୋ ହରିକାନ୍ତ ପଥ ପ୍ରତୀକ୍ଷା ମାଲାପୟନ୍ତ ମୃଦୁ ପୁଷ୍ପ ତଳ୍ପେ
ଇତସ୍ତତଃ ପ୍ରେରିତ ଦୃଷ୍ଟିରାର୍ଦ୍ଧ ଶ୍ୟାମାତନୁର୍ଗୁଣ୍ଠିକୟା ପ୍ରଦସ୍ତା)

ନିଭୃତ ନିକୁଞ୍ଜ ଗୃହଂ ଗତୟା ନିଶି ରହସି ନିଲୀୟ ବସନ୍ତଂ ।
ଚକିତ ବିଲୋକିତ ସକଳ ଦିଶା ରତି ରଭସ ରସେନ ହସନ୍ତମ୍ ।
ସଖି ହେ, କେଶିମଥନ ମୁଦାରମ୍ ।
ରମୟ ମୟା ସହ ମଦନ ମନୋରଥ ଭାବିତ ତୟା ସବିକାରମ୍ ॥ ଧ୍ରୁବ ॥

ପ୍ରଥମ ସମାଗମ ଲଜ୍ଜିତୟା ପଟୁଚାଟୁ ଶତୈରନୁକୂଳଂ
ମୃଦୁ ମଧୁରସ୍ମିତ ଭାଷିତୟା ଶିଥିଳୀକୃତ ଜଘନ (ଜଳନ ?) ଦୁକୂଳମ ॥ ୨ ॥

କିଶଳୟ ଶୟନ ନିବେଶିତୟା ଚିରମୁରସିମ ମୈବ ଶୟାନାଂ
କୃତ ପରିରମ୍ଭଣ ଚୁମ୍ବନୟା ପରିରଭ୍ୟ କୃତାଧର ପାନମ୍ ॥ ୩ ॥

ଅଳସ ନିମୀଳିତ ଲୋଚନୟା ପୁଲକାବଳି ଲଳିତ କପୋଲଂ ।
ଶ୍ରମଜଳସିକ୍ତ କଲେବରୟା ବର ମଦନ ମଦାଦତି ଲୋଲମ୍ ॥ ୪ ॥

କୋକିଳ କଳରବ କୂଜିତୟା ଜିତମନସିଜ ପନ୍ତ୍ରବଗୁରଂ ।
ଶ୍ଲଥ କୁସୁମାକୁଳ କୁନ୍ତଳୟା ନଖଲିଖିତ ଘନ ସ୍ତନଭାରମ୍ ॥ ୫ ॥

ଚରଣ ରଣିତ ମଣି ନୂପୁରୟା ପରିପୂରିତ ସୁରତ ବିତାନଂ ।
ମୁଖର ବିଶୃଙ୍ଖଳ ମେଖଳୟା ସକଚ ଗ୍ରହ ଚୁମ୍ବନ ଦାନମ୍ ॥ ୬ ॥

ରତି ସୁଖ ସମୟ ରସାଳସୟାସ୍ୟ ଦର ମୁକୁଳିତ ନୟନ ସରୋଜଂ
ନିଃସହ ନିପତିତ ତନୁଲତୟା ମଧୁସୂଦନ ମୁଦିତ ମନୋଜମ୍ ॥ ୭ ।

ଶ୍ରୀ ଜୟଦେବ ଭଣିତମିଦ ମତିଶୟ ମଧୁରିପୁ ନିଧୁବନ ଶୀଳଂ
ସୁଖମୁତ୍କଣ୍ଠିତ ଗୋପବଧୂ କଥିତଂ ବିତନୋତୁ ସଲୀଳମ୍ ॥ ୮ ।
(ଦ୍ୱିତୀୟଃ ସର୍ଗଃ)

[ ୭ ]

## ଗୁର୍ଜରୀ ରାଗ—ଯତି ତାଳ

ମାମିୟଂ ଚଳିତା ବିଲୋକ୍ୟ ବୃତଂ ବଧୂନିଚୟେନ ।
ସାପରାଧତୟା ମୟାପି ନ ନିବାରିତାତି ଭୟେନ
ହରି ହରି ହତାଦରତୟା ଗତା ସା କୁପିତେବ ॥ ଧ୍ରୁବ ।

କିଂ କରିଷ୍ୟତି କିଂ ବଦିଷ୍ୟତି ସା ଚିରଂ ବିରହେଣ ।
କିଂ ଧନେନ ଜନେନ କିଂ ମମ ସୁଖେଣ ଗୃହେଣ ॥ ୨ ।

ଚିନ୍ତୟାମି ତଦାନନଂ କୁଟିଳଭ୍ରୁ କୋପଭରେଣ ।
ଶୋଣ ପଦ୍ମମିବୋପରି ଭ୍ରମତା କୁଳଂ ଭ୍ରମରେଣ ॥ ୩ ।

ତାମହଂ ହୃଦିସଙ୍ଗତାମନିଶଂ ରମୟାମି ।
କିଂ ବନେଽନୁସରାମି ତାମିହ କିଂ ବୃଥା ବିଲପାମି ॥ ୪ ।

ତନ୍ୱି ଖିନ୍ନମସୂୟୟା ହୃଦୟଂ ତବାକଳୟାମି ।
ତନ୍ନ ବେଦ୍ମି କୁତୋ ଗତାସି ନ ତେନ ତେଽନୁନୟାମି ॥ ୫ ।

ଦୃଶ୍ୟସେ ପୁରତୋ ଗତାଗତମେବ ମେ ବିଦଧାସି ।
କିଂ ପୁରେବ ସସଂଭ୍ରମଂ ପରିରମ୍ଭଣଂ ନ ଦଦାସି ॥ ୬ ।

କ୍ଷମ୍ୟତାମପରଂ କଦାପି ତବେଦୃଶଂ ନ କରୋମି ।
ଦେହି ସୁନ୍ଦରି ଦର୍ଶନଂ ମମ ମନ୍ମଥେନ ଦୁନୋମି ॥ ୭ ।

ବର୍ଣ୍ଣିତଂ ଜୟଦେବକେନ ହରେରିଦଂ ପ୍ରବଣେନ
କେନ୍ଦୁବିଲ୍ୱ ସମୁଦ୍ର ସମ୍ଭବ ରୋହିଣୀ ରମଣେନ ॥ ୮ ।
(ଇତି ତୃତୀୟ ସର୍ଗଃ)

[ ୮ ]

## କର୍ଣ୍ଣାଟ ରାଗ—ଯତି ତାଳ

("କୃପାଣ ପାଣିର୍ଜଳଦାନ୍ତ ପକ୍ଷମେବଂ ବହନ୍ ଦକ୍ଷିଣ କର୍ଣ୍ଣପୂରେ
ସଂସ୍ତୂୟମାନଃ ସୁରଚାରଣାଦ୍ୟୈ କର୍ଣ୍ଣାଟ ରାଗଃ ଶିଖିକଣ୍ଠ ନୀଳଃ")

ନିନ୍ଦତି ଚନ୍ଦନ ଇନ୍ଦୁ କିରଣମନୁ ବିନ୍ଦତି ଖେଦମଧୀରଂ
ବ୍ୟାଳନିଳୟ ମିଳନେନ ଗରଳମିବ କଳୟତି ମଳୟ ସମୀରମ୍ ।
ସା ବିରହେ ତବ ଦୀନା
ମାଧବ ମନସିଜ ବିଶିଖଭୟାଦିବ ଭାବନୟା ତ୍ୱୟି ଲୀନା ॥ ଧ୍ରୁବ ।

ଅବିରତ ନିପତିତ ମଦନ ଶରାଦିବ ଭବଦବନାୟ ବିଶାଳଂ
ସ୍ୱହୃଦୟ ମର୍ମ୍ମଣି ବର୍ମ୍ମ କରୋତି ସଜଳ ନଳିନୀ ଦଳଜାଳମ୍ ॥ ୨ ।

କୁସୁମ ବିଶିଖର ଶର ତଳ୍ପ ମନଳ୍ପ ବିଳାସ କଳା କମନୀୟମ୍ ।
ବ୍ରତମିବ ତବ ପରିରମ୍ଭ ସୁଖାୟ କରୋତି କୁସୁମ ଶୟନୀୟମ୍ ॥ ୩ ।

ବହତି ଚ ବଳିତ ବିଲୋଚନ ଜଳଧର ମାନନ କମଳ ମୁଦାରଂ
ବିଧୁମିବ ବିକଟ ବିଧୁନ୍ତୁ ଦଦନ୍ତ ଦଳନ ଗଳିତାମୃତଧାରମ୍ ॥ ୪ ।

ବିଲିଖତି ରହସି କୁରଙ୍ଗ ମଦେନ ଭବନ୍ତମ ସମଶରଭୂତଂ ।
ପ୍ରଣମତି ମକର ମଧୋବିନିଧାୟ କରେ ଚ ଶରଂ ନବ ଚୂତମ୍ ॥ ୫ ।

ପ୍ରତିପଦମିଦ-ମପି ନିଗଦତି ମାଧବ ତବଚରଣେ ପତିତାହଂ
ତ୍ୱୟି ବିମୁଖେ ମୟି ସପଦି ସୁଧାନିଧିରପି ତନୁତେ ତନୁଦାହମ୍ ॥ ୬ ।

ଧ୍ୟାନ ଲୟେନ ପୁରଃ ପରିକଳ୍ପ୍ୟ ଭବନ୍ତାମତୀବ ଦୁରାପଂ
ବିଲପତି ହସତି ବିଷିଦତି ରୋଦିତି ଚଞ୍ଚତି ମୁଞ୍ଚତି ତାପମ୍ ॥ ୭ ।

ଶ୍ରୀ ଜୟଦେବ ଭଣିତ ମିଦମଧିକଂ ଯଦି ମନସା ନଟନୀୟଂ ।
ହରି ବିରହାକୁଳ ବଲ୍ଲବ ଯୁବତୀ ସଖି ବଚନଂ ଶଠନୀୟମ୍ ॥ ୮ ।

[ ୯ ]

## ଦେଶାକ୍ଷ ରାଗ—ଏକ ତାଳ

(ଆସ୍ଫୋଟାନାବିଷ୍କୃତ ନୈମପୈ
ନିବଦ୍ଧ ସନ୍ନ୍ୟାହ ବିଶାଳ ବାହୁଃ ।
ପଣ୍ଟ ପ୍ରଚଣ୍ଡଦ୍ୟୁତ ଶନ୍ଦ୍ରୌରୋ
ଦେଶାକ୍ଷ ରାଗଃ କିଲ ମଲ୍ଲରାଜ ॥)

ସ୍ତନ ବିନିହିତମପି ହାର ମୁଦାରଂ ।
ସା ମନୁତେ କୃଶତନୁରିବ ଭାରମ୍ ।।
ରାଧିକା, ତବ ବିରହେ କେଶବ ।। ଧ୍ରୁବ ।

ସରସ ମସୃଣମପି ମଲୟଜ ପଙ୍କଂ
ପଶ୍ୟତି ବିଷମିବ ବପୁଷି ସଶଙ୍କମ୍ ।। ୨ ।

ଶ୍ୱସିତ ପବନ ମନୁପମ ପରିଣାହଂ ।
ମଦନ ଦହନମିବ ବହତି ସଦାହମ୍ ।। ୩ ।

ଦିଶି ଦିଶି କିରତି ସଜଳ କଣା ଜାଲଂ
ନୟନ ନଳିନମିବ ବିଗଳିତ ନାଳମ୍ ।। ୪ ।

ନୟନ ବିଷୟମପି କିଶଳୟ ତଳ୍ପଂ
ଗଣୟତି ବିହିତ ହୁତାଶନ କଳ୍ପମ୍ ।। ୫ ।

ତ୍ୟଜତି ନ ପାଣି ତଳେନ କପୋଳଂ
ବାଳଶଶିନମିବ ସାୟମ ଲୋଳମ୍ ।। ୬ ।

ହରି ରିତି ହରି ରିତି ଜପତି ସକାମଂ ।
ବିରହ ବିହିତ ମରଣେବ ନିକାମମ୍ ।। ୭ ।

ଶ୍ରୀ ଜୟଦେବ ଭଣିମିତି ଗୀତଂ ।
ସୁଖୟତୁ କେଶବପଦ ମୁପନୀତମ୍ ।। ୮ ।

(ଚତୁର୍ଥ ସର୍ଗଃ ସମାପ୍ତ)

[ ୧୦ ]

## ଦେଶବରାଡ଼ି—ରୂପକ ତାଳ

("ବିନୋଦୟନ୍ତୀ ଦୟିତଂ ସୁକେଶୀ
ସୁକଂ କଣା ଭ୍ରମର ଭ୍ରୂଲନେନ
କଣ୍ଠେ ଦଧାନା ହରି ପୁଷ୍ପଗୁଚ୍ଛଂ
ବରାଙ୍ଗନେୟଂ କଥିତା ବରାଡ଼ି ।।")

ବହତି ମଲୟ ସମୀରେ ମଦନ ମୁପନିଧାୟ ।
ସ୍ଫୁଟତି କୁସୁମ ନିକରେ ବିରହି ହୃଦୟ ଦଳନାୟ ।
ସଖି ହେ, ସୀଦତି ତବ ବିରହେ ବନମାଳୀ ।। ଧ୍ରୁବ ।

ଦହତି ଶିଶିର ମୟୂଖେ ମରଣମନୁ କରୋତି
ପତତି ମଦନ ବିଶିଖେ ବିଲପତି ବିକଳ ତରୋଽତି ॥ ୨ ।

ଧ୍ୱନତି ମଧୁପ ସମୂହେ ଶ୍ରବଣ ମପି ଦଧାତି ।
ମନସି ବଳିତ ବିରହେ ନିଶି ନିଶି ରୁଜ ମୁପଯାତି ॥ ୩

ବସତି ବିପିନ ବିତାନେ ତ୍ୟଜତି ଲଳିତମପିଧାମ ।
ଲୁଠତି ଧରଣି ଶୟନେ ବହୁ ବିଲପତି ତବନାମ ॥ ୪ ।

ଭଣତି କବି ଜୟଦେବେ ବିରହି ବିଳସିତେନ ।
ମନସି ରଭସ ବିଭବେ ହରି ରୁଦୟତୁ ସୁକୃତେନ ॥ ୫ ।

## [ ୧୧ ]

### ଗୁର୍ଜ୍ଜରୀ ରାଗଃ—ଏକ ତାଳ

ରତି ସୁଖ ସାରେ ଗତମଭିସାରେ ମଦନ ମନୋହର ବେଶଂ ।
ନ କୁରୁ ନିତମ୍ବିନି ଗମନ ବିଳମ୍ବନ ମନୁ ସରତଂ ହୃଦୟେଶମ୍ ।

ଧୀର ସମୀରେ ଯମୁନାତୀରେ ବସତି ବନେ ବନମାଳୀ ।
ପୀନ ପୟୋଧର ପରିସର ମର୍ଦ୍ଦନ ଚଞ୍ଚଳକର ଯୁଗଶାଳୀ ॥ ଧ୍ରୁବ ।

ନାମ ସମେତଂ କୃତ ସଂକେତଂ ବାଦୟତେ ମୃଦୁବେଣୁଂ ।
ବହୁ ମନୁତେ ନନୁ ତେ ତନୁ ସଙ୍ଗତ ପବନ ଚଳିତମପି ରେଣୁମ୍ ॥ ୨ ।

ପତତି ପତତ୍ରେ ବିଚଳିତ ପତ୍ରେ ଶଙ୍କିତ ଭବ ଦୁପ ଯାନଂ ।
ରଚୟତି ଶୟନଂ ସଚକିତ ନୟନଂ ପଶ୍ୟତି ତବ ପନ୍ଥାନମ୍ ॥ ୩ ।

ମୁଖରମଧୀରଂ ତ୍ୟଜ ମଞ୍ଜୀରଂ ରିପୁମିବ କେଳିଷୁ ଲୋଳଂ
ଚଳ ସଖି କୁଞ୍ଜଂ ସତିମିର ପୁଞ୍ଜଂ ଶୀଳୟ ନୀଳନିଚୋଳମ୍ ॥ ୪ ।

ଉରସି ମୁରାରେ ରୁପହିତ ହାରେ ଘନଇବ ତରଳ ବଳାକେ ।
ତଡ଼ିଦିବ ପୀତେ ରତିବିପରୀତେ ରାଜସି ସୁକୃତ ବିପାକେ ॥ ୫ ।

ବିଗଳିତ ବସନଂ ପରିହୃତରସନଂ ଘଟୟ ଜଘନମପିଧାନମ୍ ।
କିଶଳୟ ଶୟନେ ପଙ୍କଜ ନୟନେ ନିଧିମିବ ହର୍ଷନିଧାନମ୍ ॥ ୬ ।

ହରିରଭିମାନୀ ରଜନୀରିଦାନୀ ମିୟମପି ଯାତି ବିରାମଂ ।
କୁରୁ ମମ ବଚନଂ ସତ୍ୱର ରଚନଂ ପୂରୟ ମଧୁରିପୁ କାମମ୍ ॥ ୭ ।

ଶ୍ରୀ ଜୟଦେବେ କୃତ ହରି ସେବେ ଭଣିତ ପରମ ରମଣୀୟଂ ।
ପ୍ରମୁଦିତ ହୃଦୟଂ ହରିମତି ସଦୟଂ ନମତ ସୁକୃତ କମନୀୟମ୍ ।। ୮ ।
(ପଞ୍ଚମ ସର୍ଗ ସମାପ୍ତ)

[ ୧୨ ]

ଗୁଣ୍ଡକିରି ରାଗ—ରୂପକ ତାଳ

(ଅଥୋ ସ୍ତୁ ବାକାନ୍ତା ପଥ ପ୍ରତୀକ୍ଷା
ସମ୍ପାଦୟନ୍ତୀ ମୃଦୁ ପୁଷ୍ପତଳ୍ପଂ ।
ଇତସ୍ତତଃ ପ୍ରେରିତ ଦୃଷ୍ଟି ଗର୍ତ୍ତା
ଶ୍ୟାମାତନୁ ଗୁଣ୍ଡକିରି ପ୍ରଦିଷ୍ଟା ।")

ପଶ୍ୟତି ଦିଶି ଦିଶି ରହସି ଭବନ୍ତଂ
ତ୍ୱଦଧର ମଧୁର ମଧୂନି ପିବନ୍ତମ୍ ।
ନାଥହରେ ସୀଦତି ରାଧା ବାସ ଗୃହେ ।। ଧ୍ରୁବ ।

ତ୍ୱଦଭି ସରଣ ରଭସେନ ବଲନ୍ତୀ
ପତତି ପଦାନି କିୟନ୍ତି ଚଲନ୍ତୀ ।। ୨ ।

ମୃଣ୍ଡର ବଲୟ ରଚିତ ମଣ୍ଡନ ମାଳା
ମଧୁର ପୃରିହମିତ ସ୍ତବକଶୀଳା ।। ୩ ।

ହରିର ମୁସୈତି ନ କଥମଭିସାରଂ ।
ହରିରିତି ବଦତି ସଖିମନୁବାରମ୍ ।। ୪ ।।

ବିହିତ ବିଶଦ ବିଶ କିଶଳୟ ବଳୟା
ଜୀବତି ପରମିହ ତବ ରତିକଳୟା ।। ୫ ।

ଶ୍ଳିଷ୍ୟତି ଚୁମ୍ବତି ଜଳଧର କଳ୍ପଂ ।
ହରି ରୂପ ଗତ ଇତ ତମିର ମନଳ୍ପମ୍ ।। ୬ ।

ଭବତି ବିଳମ୍ବିନି ବିଗଳିତ ଲଜ୍ଜା
ବିଲପତି ରୋଦିତି ବାସକ ସଜ୍ଜା ।। ୭ ।

ଶ୍ରୀ ଜୟଦେବ କବେରିଦ ମୁଦିତଂ
ରସିକ ଜନଂ ତନୁତାମତି ମୁଦିତମ୍ ।। ୮ ।
(ଷଷ୍ଠ ସର୍ଗ ସମାପ୍ତ)

## [ ୧୩ ]

### ମାଳବ ରାଗ—ଯତି ତାଳ

କଥିତ ସମୟେଽପି ହରିରହହ ନ ଯଯୌ ବନଂ ।
ମମ ବିଫଳମିଦ ମମଲମପି ରୂପ ଯୌବନଂ ॥
ଯାମି ହେ କମିହ ଶରଣଂ ସଖୀଜନ ବଚନ ବଞ୍ଚିତା ॥ ଧ୍ରୁବ ।

ଯଦନୁଗମନାୟ ନିଶି ଗହନମପି ଶୀଳିତଂ ।
ତେନ ମମ ହୃଦୟମିଦମ ସମଶର କୀଳିତମ୍ ॥ ୨ ।

ମମ ମରଣମେବ ବରମିତି ବିତଥ କେତନା ।
କମିହ ବିଷହାମି ବିରହାନଳମ ଚେତନା ॥ ୩ ।

ମାମହହ ବିଧୁରୟତି ମଧୁର ମଧୁ ଯାମିନୀ ।
କାପି ହରିମନୁ ଭବତି କୃତ ସୁକୃତ କାମିନୀ ॥ ୪ ।

ଅହହ କଲୟାମି ବଲୟାଦି ମଣି ଭୂଷଣଂ ।
ହରି ବିରହ ଦହନ ବହନେନ ବହୁ ଦୂଷଣମ୍ ॥ ୫ ।

କୁସୁମ ସୁକୁମାର ତନୁ ମତନୁ ଶରଲୀଳୟା
ସ୍ରଗପି ହୃଦହନ୍ତି ମାମତି ବିଷମ ଶୀଳୟା ॥ ୬ ।

ଅହମିହ ନିବସାମି ନ ଗଣିତ ବନ ବେତସା ।
ସ୍ମରତି ମଧୁସୂଦନୋ ମମାପି ନାଚେତସା ॥ ୭ ।

ହରି ଚରଣ ଶରଣ ଜୟଦେବ କବି ଭାରତୀ ।
ବସତୁ ହୃଦି ଯୁବତୀରିବ କୋମଳ କଳାବତୀ ॥ ୮ ।

## [ ୧୪ ]

### ବସନ୍ତ ରାଗ—ଯତି ତାଳ

ସ୍ମର ସମରୋଚିତ ବିରଚିତ ବେଶା ।
ଗଳିତ କୁସୁମ ଦରବିଲୁଳିତ କେଶା ।
କାପି ମଧୁରିପୁଣା, ବିଳସତି ଯୁବତି ରଧିକଗୁଣା ॥ ଧ୍ରୁବ ।

ହରି ପରିରମ୍ଭଣ ବଳିତ ବିକାରା ।
କୁଚ କଳଶୋ ପରି ତରଳିତ ହାରା ॥ ୨ ।

ବିଚଳ ଦଳକ ଲଳିତା ନନଚନ୍ଦ୍ରା ।
ତଦଧର ପାନ ରଭସ କୃତତନ୍ଦ୍ରା ॥ ୩ ॥

ଚଞ୍ଚଳ କୁଣ୍ଡଳ ଲଳିତ କପୋଳା ।
ମୁଖରିତ ରସନ ଜଘନ ଗତି ଲୋଲା ॥ ୪ ॥

ଦୟିତ ବିଲୋକିତ ଲଜ୍ଜିତ ହସିତା ।
ବହୁବିଧ କୂଜିତ ରତିରସ ରସିତା ॥ ୫ ॥

ବିପୁଳ ପୁଲକ ପୃଥୁ ବେପଥୁ ଭଙ୍ଗା ।
ଶ୍ୱସିତ ନିମୀଳିତ ବିକସଦ ନଙ୍ଗା ॥ ୬ ॥

ଶ୍ରମ ଜଳ କଣଭର ସୁଭଗ ଶରୀର ।
ପରିପତି ତୋରସି ରତି ରଣଧୀର ॥ ୭ ॥

ଶ୍ରୀ ଜୟଦେବ ଭଣିତ ହରିରମିତଂ ।
କଳି କଳୁଷଂ ଜନୟତୁ ପରିଶମିତମ୍ ॥ ୮ ॥

[ ୧୫ ]

## ଗୁର୍ଜ୍ଜରୀ ରାଗ—ଏକ ତାଳ

ସମୁଦିତ ମଦନେ ରମଣୀ ବଦନେ ଚୁମ୍ବନ ବଳିତା ଧରେ ।
ମୃଗମଦ ତିଳକଂ ଲିଖିତ ସପୁଲକଂ ମୃଗମିବ ରଜନୀ କରେ ।
ରମତେ ଯମୁନା ପୁଳିନ ବନେ ବିଜୟୀ ମୁରାରିର ଧୁନା ॥ ଧ୍ରୁବ ॥

ଘନଚୟ ରୁଚିରେ ରଚୟତି ଚିକୁରେ ତରଳିତ ତରୁଣା ବନେ ।
କୁରୁବକ କୁସୁମଂ ଚପଳିତ ସୁଷମଂ ରତିପତି ମୃଗକାନନେ ॥ ୨ ॥

ଘଟୟତି ସୁଘନେ କୁଚଯୁଗ ଗଗନେ ମୃଗମଦରୁଚି ରୂଷିତେ ।
ମଣିସର ମମଳଂ ତାରକାପଟଳଂ ନଖପଦ ଶଶିଭୂଷିତେ ॥ ୩ ॥

ଜିତ ବିସଶକଳେ ମୃଦୁଭୁଜ ଯୁଗଳେ କରତଳ ନଳିନୀ ଦଳେ ।
ମରକତ ବଳୟଂ ମଧୁକର ନିଚୟଂ ବିତରତି ହିମ ଶୀତଳେ ॥ ୪ ॥

ରତି ଗୃହ ଜଘନେ ବିପୁଳାପଘନେ ମନସିଜ କନକାସନେ ।
ମଣିମୟ ରସନଂ ତୋରଣ ହସନଂ ବିକିରତି କୃତ ବାସନେ ॥ ୫ ॥

ଚରଣ କିଶଲୟେ କମଳା ନିଳୟେ ନଖମଣିଗଣ ପୂଜିତେ ।
ବହିରପବରଣଂ ଯାବକଭରଣଂ ଜନୟତି ହୃଦିଯୋଜିତେ ॥ ୬ ॥

ରମୟତି ସୁଭୃଶଂ କାମପି ସୁଦୃଶଂ ଖଳହଳଧର ସୋଦରେ ।
କିମଫଳମବଶଂ ଚିରମିହ ବିରସଂ ବଦ ସଖି ବିଟପୋଦରେ ॥ ୭ ॥

ଇହରସ ଭଣନେ କୃତ ହରି ଗୁଣନେ ମଧୁରିପୁପଦ ସେବକେ ।
କଳିଯୁଗ ଚରିତଂ ନ ବସତୁ ଦୁରିତଂ କବିନୃପ ଜୟଦେବକେ ॥ ୮ ॥

[ ୧୬ ]

## ଦେଶବରାଡ଼ୀ ରାଗ— ରୂପକ ତାଳ

ଅନିଳ ତରଳ କୁବଳୟ ନୟନେନ
ତପତି ନ ସା କିଶଲୟ ଶୟନେନ ।
ସଖି, ଯା ରମିତା ବନମାଳିନା ॥ ଧ୍ରୁବ ॥

ବିକସିତ ସରସିଜ ଲଳିତ ମୁଖେନ ।
ସ୍ଫୁଟତି ନ ସା ମନସିଜ ବିଶିଖେନ ॥ ୨ ॥

ଅମୃତ ମଧୁର ମୃଦୁତର ବଚନେନ ।
ଜ୍ୱଳତି ନ ସା ମଳୟଜ ପବନେନ ॥ ୩ ॥

ସ୍ଥଳ ଜଳରୁହ ରୁଚିକର ଚରଣେନ ।
ଲୁଠତି ନ ସା ହିମକର କିରଣେନ ॥ ୪ ॥

ସଜଳ ଜଳଦ ସମୁଦୟ ରୁଚିରେଣ ।
ଦଳତି ନ ସା ହୃଦି ବିରହ ଭରେଣ ॥ ୫ ॥

କନକ ନିକଷ ସୁଚି ବସନେନ
ଶ୍ୱସିତି ନ ସା ପରିଜନ ହସନେନ ॥ ୬ ॥

ସକଳ ଭୁବନ ଜନବର ତରୁଣେନ ।
ବହତି ନ ସା ରୁଜମତି କାରୁଣେନ ॥ ୭ ॥

ଶ୍ରୀ ଜୟଦେବ ଭଣିତ ବଚନେନ ।
ପ୍ରବିଶତୁ ହରିରପି ହୃଦୟମନେନ ॥ ୮ ॥

( ସପ୍ତମ ସର୍ଗ ସମାପ୍ତ )

## [ ୧୭ ]

### ଭୈରବୀ ରାଗ—ଯତି ତାଳ

( "ହରେରେବଗେଷ୍ଠେ ସ୍ଫଟିକସ୍ୟ ମଣ୍ଡପେ
ସଭ୍ୟରୁଦ୍ରୈଃ ଶଙ୍କର ମର୍ଚ୍ଚୟନ୍ତୀ
ତାଳ ପ୍ରୟୋଗେ ପ୍ରତିବନ୍ଧ ଗୀତା
ଗୌରୀ ତନ୍ନର୍ତ୍ତାରଦ ଭୈରବସ୍ୟମ୍ ।" )

ରଜନି ଜନିତ ଗୁରୁଜାଗର ରାଗ କଷାୟିତ ମଲ ସଦ ମେଷଂ ।
ବହତି ନୟନ ମନୁରାଗମିବ ସ୍ଫୁଟମୁଦିତ ରସାଭି ନିବେଶମ୍ ।।

ହରି ହରି ଯାହି ମାଧବ ଯାହି କେଶବ ମା ବଦ କୈତବ ବାଦଂ ।
ତାମନୁସର ସରସୀରୁହ ଲୋଚନଂ ଯାତେ ହରତି ବିଷାଦମ୍ ।। ଧ୍ରୁବ ।।

କଜ୍ଜଳ ମଳିନ ବିଲୋଚନ ଚୁମ୍ବନ ବିରଚିତ ନୀଳିମରୂପଂ
ଦଶନ ବସନ ମରୁଣଂ ତବ କୃଷ୍ଣ ତନୋତି ତନୋରନୁରୂପମ୍ ।। ୨ ।।

ବପୁରନୁହରତି ତବ ସ୍ମର ସଙ୍ଗର ଖର ନଖର କ୍ଷତ ରେଖମ୍ ।
ମରକତ ଶକଳ କଳିତ କଳ ଧୌତ ଲିପେରିବ ରତି ଜୟଲେଖମ୍ ।। ୩ ।।

ଚରଣ କମଳ ଗଳଦଲକ୍ତ ସିକ୍ତମିଦଂ ତବ ହୃଦୟ ମୁଦାରଂ
ଦର୍ଶୟତୀବ ବହିର୍ମଦନ ଦ୍ରୁମନବ କିଶଳୟ ପରିବାରମ୍ ।। ୪ ।।

ଦଶନ ପଦଂ ଭବଦଧର ଗତଂ ମମ ଜନୟତି ଚେତସି ଖେଦଂ ।
କଥୟତି କଥ ମଧୁନାପି ମୟା ସହ ତବ ବପୁରେତଦଭେଦମ୍ ।। ୫ ।।

ବହିରିବ ମଳିନ ତରଂ ତବ କୃଷ୍ଣ ମନୋଽପି ଭବିଷ୍ୟତି ନୂନଂ ।
କଥ ମଥ ବଞ୍ଚୟସେ ଜନମନୁଗତମ ସମଶର ଜ୍ୱରଦୂନମ୍ ।। ୬ ।।

ଭ୍ରମତି ଭବାନବଳା କବଳାୟ ବନେଷୁ କିମତ୍ର ବିଚିତ୍ରଂ ।
ପ୍ରଥୟତି ପୁତନିକୈବ ବଧୂବଧ ନିର୍ଦ୍ଦୟ ବାଲଚରିତ୍ରମ୍ ।। ୭ ।।

ଶ୍ରୀ ଜୟଦେବ ଭଣିତ ରତି ବଞ୍ଚିତ ଖଣ୍ଡିତ ଯୁବତି ବିଳାପଂ ।
ଶୃଣୁତ ସୁଧାମଧୁରଂ ବିବୁଧା ବିବୁଧାଳୟତୋଽପି ଦୁରାପମ୍ ।। ୮ ।।

( ଅଷ୍ଟମ ସର୍ଗ ସମାପ୍ତ )

[ ୧୮ ]

ରାମକେରୀ ରାଗ—ଝମ୍ପ ତାଳ

ହରି ରଭି ସରଭ ବହଭ ମୃଦୁ ପବନେ ।
କିମପରି ମଧୁର ସୁଖଂ ସଖିଭବନେ ।
ମାଧବେ ମା କୁରୁ ମାନିନୀ ମାନମୟେ ॥ ଧ୍ରୁବ ॥

ତାଲଫଲାଦ ଗୁରୁମତି ସରସଂ ।
କିମୁ ବିଫଲୀ କୁରୁଷେ କୁଚ କଲଶମ୍ ॥ ୨ ॥

କିତନ କଥିତମିଦ ମନୁପଦ ମଚିରଂ ।
ମା ପରିହାର ହରି ମତିଶୟ ରୁଚିରମ୍ ॥ ୩ ॥

କିମତି ବିଷୀଦସି ରୋଦିଷି ବିକଳା
ବିହସତି ଯୁବତୀ ସଭା ତବ ସକଳା ॥ ୪ ॥

ସଜଲ ନଲୀନ ଦଲଶୀଳିତ ଶୟନେ
ହରିମବ ଲୋକୟ ସଫଲୟ ନୟନେ ॥ ୫ ॥

ଜନୟସି ମନସି କିମିତି ଗୁରୁଖେଦଂ
ଶୃଣୁ ମମବଚନ ମନୀହିତ ଭେଦମ୍ ॥ ୬ ॥

ହରି ରୂପ ଯାତୁ ବଦତୁ ବହୁ ମଧୁରଂ ।
କିମିତି କରୋଷି ହୃଦୟମିତି ବିଧୁରମ୍ ॥ ୭ ॥

ଶ୍ରୀ ଜୟଦେବ ଭଣିତ ମତି ଲଳିତଂ ।
ସୁଖୟତୁ ରସିକଜନଂ ହରି ଚରିତମ୍ ॥ ୮ ॥

( ନବମ ସର୍ଗ ସମାପ୍ତ )

[ ୧୯ ]

ଦେଶ ବରାଡୀ ରାଗ—ଅଷ୍ଟ(ତ) ତାଳ

( "କୁନ୍ଦେନ୍ଦୁ କାନ୍ତି ତନୁ ଦେହବଲ୍ଲୀ
ଶୁକ୍ଳାମ୍ବର ସ ପଠତା ପ୍ରବେଶା
ଭର୍ତ୍ତୁଂ ସ୍ମରନ୍ତି ଶୟନେ ବିଦଗ୍ଧା
ଆଖିଦ୍ୟମାନା ନଶିବେଣି କେୟମ୍ ।" )

ବଦସି ଯଦି କିଞ୍ଚିଦପି ଦନ୍ତରୁଚି କୌମୁଦୀ ।
ହରତି ଦରତିମିର ମତି ଘୋରମ୍ ।
ସ୍ଫୁରଦଧର ସୀଲ ଧବେ ତବ ବଦନ ଚନ୍ଦ୍ରମା ।
ରୋଚୟତୁ ଲୋଚନ-ଚକୋର
ପ୍ରିୟେ, ଚାରୁଶୀଳେ, ମୁଞ୍ଚମୟି ମାନମନିଦାନଂ ।
ସପଦି ମଦନାନଲୋ ଦହତି ମମ ମାନସମ୍ ।
ଦେହି ମୁଖକମଳ ମଧୁପାନମ୍ ।। ଧ୍ରୁବ ।।

ସତ୍ୟ ମେ ବାସି ଯଦି ସୁଦତି ମୟି କୋପିନୀ ।
ଦେହି ଖର ନୟନ ଶରଘାତଂ
ଘଟୟ ଭୁଜବନ୍ଧନଂ ଜନୟ ରଦ ଖଣ୍ଡନମ୍
ଯେନ ବା ଭବତି ସୁଖ ଜାତମ୍ ।। ୨ ।।

ତ୍ୱମସି ମମ ଭୂଷଣଂ ତ୍ୱମସି ମମ ଜୀବନଂ
ତ୍ୱମସି ମମ ଭବଜଲଧି ରତ୍ନମ୍ ।
ଭବତୁ ଭବତୀହ ମୟି ସତତ ମନୁ ରୋଧିନୀ.
ତତ୍ର ମମ ହୃଦୟମତି ଯତ୍ନମ୍ ।। ୩ ।।

ନୀଳ ନଳିନାଭମପି ତନ୍ୱି ତବ ଲୋଚନଂ
ଧାରୟସି କୋକନଦ ରୂପମ୍ ।।
କୁସୁମ ଶର ବାଣଭାବେନ ଯଦି ରଞ୍ଜୟସି
କୃଷ୍ଣମିଦମେତ ଦନୁ ରୂପମ୍ ।। ୪ ।।

ସ୍ଫୁରତୁ କୁଚକୁମ୍ଭ ପୟୋରୁପରି ମଣିମଞ୍ଜରୀ ।
ରଞ୍ଜୟତୁ ତବ ହୃଦୟ ଦେଶଂ
ରସତୁ ରସନାପି ତବ ଘନ ଜଘନ ମଣ୍ଡଳେ ।
ଘୋଷୟତୁ ମନ୍ମଥ ନିଦେଶମ୍ ।। ୫ ।।

ସ୍ଥଳ କମଳ ଗଞ୍ଜନଂ ମମ ହୃଦୟ ରଞ୍ଜନଂ
ଜନିତ ରତିରଙ୍ଗ ପରଭାଗଂ
ଭଣ ମସୃଣବାଣୀ-କରବାଣି ଚରଣଦ୍ୱୟ
ସରସ ଲସଦଲକ୍ତ ରାଗମ୍ ।। ୬ ।।

ସ୍ମର ଗରଳ ଖଣ୍ଡନଂ ମମ ଶିରସି ମଣ୍ଡନଂ
ଦେହି ପଦ ପଲ୍ଲବ ମୁଦାରମ୍ ।

ଜ୍ୱଲତି ମର୍ପ୍ସି ଦାରୁଣୋ ମଦନ କଦନାନଲେ
ହରତୁ ତଦୁ ପାହିତ ବିକାରମ୍ ।। ୭ ।।
ଇତି ଚଟୁଲ ଚ୍ଚଟୁ ପଟୁ ଚ୍ଚରୁ ମୁର ବୈରଣୋ
ରାଧିକାଧିମ ବଚନ ଜାତଂ
ଜୟତି ପଦ୍ମାବତୀ ରମଣ ଜୟଦେବ କବି
ଭାରତୀ ଭଣିତମତି ଶାତମ୍ ।। ୮ ।।

( ଦଶମ ସର୍ଗ ସମାପ୍ତ )

[ ୨୦ ]

**ବସନ୍ତ ରାଗ—ଯତି ତାଳ**

ବିରଚିତ ଚ୍ଚଟୁ ବଚନ ରଚନଂ ଚରଣେ ରଚିତ ପ୍ରଣିପାତଂ ।
ସମ୍ପ୍ରତି ମଞ୍ଜୁଲ ବଞ୍ଜୁଲ ସୀମନି କେଲି ଶୟନ ମନୁଜାତମ୍ ।
ମୁଗ୍ଧେ, ମଧୁ ମଥନ ମନୁ ଗତମନୁ ମର ରାଧିକେ ।। ଧ୍ରୁବ ।।

ଘନ ଜଘନ ସ୍ତନଭାରଭରେ ଦରମନ୍ଥର ଚରଣ ବିହାରଂ ।
ମୁଖରିତ ମଣି ମଞ୍ଜୀର ମୁପୈହି ବିଧେହି ମରାଳ ବିକାରମ୍ ।। ୨ ।।

ଶୃଣୁ ରମଣୀୟତରଂ ତରୁଣୀ ଜନମୋହନ ମଧୁରିପୁ ରାବଂ
କୁସୁମ ଶରାସନ ଶାସନ ବନ୍ଦିନ ପିକନିକରେ ଭଜଭାବମ୍ ।। ୩ ।।

ଅନିଳ ତରଳ କିଶଳୟ ନିକରେଣ କରେଣ ଲତା ନିକୁରମ୍ବଂ ।
ପ୍ରେରଣମିବ କରଭୋରୁ କରୋତି ଗତିଂ ପ୍ରତି ମୁଞ୍ଚ ବିଳମ୍ବମ୍ ।। ୪ ।।
ସ୍ଫୁରିତ ମନଙ୍ଗ ତରଙ୍ଗ ବଶାଦିବ ସୂଚିତ ହରି ପରିରମ୍ଭଂ ।
ପୃଚ୍ଛ ମନୋହର ହାର ବିମଳ ଜଳଧାରମମୁଂ କୁଚ କୁମ୍ଭମ୍ ।। ୫ ।।

ଅଧିଗତ ମଖିଲ ସଖୀଭିରିଦଂ ତବ ବପୁରପି ରତିରଣ ସଜ୍ଜଂ ।
ଚଣ୍ଡିରଣିତ ରସନାରବ ଡିଣ୍ଡିମ ମଭିସର ସରସ ମଲଜ୍ଜମ୍ ।। ୬ ।।

ସ୍ମରଶର ସୁଭଗନଖେନ କରେଣ ସଖୀମବଲମ୍ବ୍ୟ ସଲୀଳଂ ।
ଚଳ ବଳୟ କ୍ୱଣିତୈରବବୋଧୟ ହରିମପି ନିଜଗତି ଶୀଳମ୍ ।। ୭ ।।

ଶ୍ରୀ ଜୟଦେବ ଭଣିତ ମଧରୀକୃତ ହାରମୁଦାସିତ ବାମଂ ।
ହରି ବିନିହିତ ମନ ସମାଧି ଉପତିଷ୍ଠ କଣ୍ଠ ତଟୀମ ବିରାମମ୍ ।। ୮ ।।

[ ୬୧ ]

## ରାଗ ବରାଡ଼ୀ—ରୂପକ ତାଳ

ରାଧାବଦନ ବିଲୋକନ ବିକସିତ ବିବିଧ ବିକାର ବିଭଙ୍ଗମ୍ ।
ଜଳନିଧିମିବ ବିଧୁମଣ୍ଡଳ ଦର୍ଶନ ତରଳିତ ତୁଙ୍ଗତରଙ୍ଗମ୍ ।।

ହରିମେକ ରସ ଚିରମଭିଲଷିତ ବିଳାସମ୍ ।
ସା ଦଦର୍ଶ ଗୁରୁ ହର୍ଷ ବଶମ୍ବଦ ବଦନମନଙ୍ଗ ନିବାସମ୍ ।।ଧ୍ରୁବ ।

ହାର ମମଳତର ତାରମୁରସି ଦଧତଂ ପରିଲମ୍ବ୍ୟ ବିଦୂରଂ ।
ସ୍ଫୁଟତର ଫେନ କଦମ୍ବ କରମ୍ବିତମିବ ଯମୁନା ଜଳପୂରମ୍ ।।୨ ।

ଶ୍ୟାମଳ ମୃଦୁଳ କଳେବର ମଣ୍ଡଳମଧିଗତ ଗୌର ଦୁକୂଳଂ ।
ନୀଳ ନଳିନମିବ ପୀତପରାଗ ପଟଳଭର ବଳୟିତ ମୂଳମ୍ ।। ୩ ।

ତରଳ ଦୃଗଞ୍ଚଳ ଚାଳ ମନୋହର ବଦନ ଜନିତ ରତି ରାଗମ୍ ।
ସ୍ଫୁଟକମଳୋଦର ଖେଳିତ ଖଞ୍ଜନ ଯୁଗମିବ ଶରଦି ତଡ଼ାଗମ୍ ।। ୪ ।

ବଦନ କମଳ ପରିଶୀଳନ ମିଳିତ ମିହିର ସମକୁଣ୍ଡଳ ଶୋଭଂ ।
ସ୍ମିତରୁଚି କୁସୁମ ସମୁଲ୍ଲସିତାଧର ପଲ୍ଲବ କୃତରତି ଲୋଭମ୍ ।। ୫ ।

ଶଶିକିରଣଚ୍ଛୁରିତୋଦର ଜଳଧର ସୁନ୍ଦର ସକୁସୁମ କେଶଂ ।
ତିମିରୋଦିତ ବିଧୁମଣ୍ଡଳ ନିର୍ମଳ ମଳୟଜ ତିଳକ ନିବେଶମ୍ ।। ୬ ।

ବିପୁଳ ପୁଲକ ଭର ଦନ୍ତୁରିତ ରତିକେଳି କଳାଭିର ଧୀରଂ ।
ମଣିଗଣ କିରଣ ସମୂହ ସମୁଜ୍ଜ୍ୱଳ ଭୂଷଣ ସୁଭଗ ଶରୀରମ୍ ।। ୭ ।

ଶ୍ରୀ ଜୟଦେବ ଭଣିତ ବିଭବ ଦ୍ୱିଗୁଣୀକୃତ ଭୂଷଣ ଭାରଂ ।
ପ୍ରଣମିତ ହୃଦି ବିନିଧାୟ ହରିଂ ସୁଚିରଂ ସୁକୃତୋଦୟ ସାରମ୍ ।। ୮ ।

(ଏକାଦଶ ସର୍ଗ ସମାପ୍ତ)

[ ୬୨ ]

## ବିଭାସ ରାଗ—ଏକ ତାଳ

କଥିତସମୟେଽପି ହରିରହହ ନ ଯଯୌ ବନଂ ।
ମମ ବିଫଳମିଦମମଳମପି ରୂପଯୌବନମ୍ ।।
ଯାମି ହେ କମିହ ଶରଣଂ ସଖୀଜନ ବଚନ ବଞ୍ଚିତା ।। ଧ୍ରୁବ ।

କର କମଲେନ କରୋମି ଚରଣ ମହମମା ଗମିତାସି ବିଦୂରଂ ।
କ୍ଷଣମପ କୁରୁ ଶୟନୋପରି ମାମିବ ନୂପୁର ମନୁଗତିଶୂରମ୍ ।। ୨ ।
ବଦନ ସୁଧାନିଧି ଗଳିତ ମମୃତମିବ ରଚୟ ବଚନମନୁକୂଲଂ ।
ବିରହ ମିବା ପନୟାମି ପୟୋଧର ରୋଧକ ମୁରସି ଦୁକୂଳମ୍ ।। ୩ ।
ପ୍ରିୟ ପରିରମ୍ଭଣ ରଭସ ବଳିତମିବ ପୁଲକିତମତି ଦୁରବାପଂ ।
ମଦୁରସି କୁଚ କଳଶଂ ବିନ ବେଶୟ ଶୋଷୟ ମନସିଜତାପମ୍ ।। ୪ ।
ଅଧର ସୁଧାରସ ମୁପନୟ ଭାମିନି ଜୀବୟ ମୃତମିବ ଦାସଂ ।
ତ୍ୱୟି ବିନିହିତ ମନସଂ ବିରହାନଳ ଦଗ୍ଧ ବପୁଷମ ବିଳାସମ୍ ।। ୫ ।
ଶଶିମୁଖି ମୁଖରୟ ମଣି ରସନା ଗୁଣମନୁଗୁଣକଣ୍ଠ ନିନାଦଂ ।
ଶ୍ରୁତି ପଟ ଯୁଗଳେ ପିକରୁତ ବିକଳେ ଶମୟ ଚିରାଦବ ସାଦମ୍ ।। ୬ ।
ମାମତି ବିଫଲରୁଷା ବିକଳୀକୃତମବଲୋକ ମଧୁନେଦଂ ।
ମୀଳତି ଲଜ୍ଜିତମିବ ନୟନଂ ତବ ବିରମ ବିସୃଜ ରତି ଖେଦମ୍ ।। ୭ ।
ଶ୍ରୀ ଜୟଦେବ ଭଣିତମିଦମନୁପଦ ନିଗଦିତ ମଧୁରିପୁ ମୋଦଂ ।
ଜନୟତୁ ରସିକ ଜନେଷୁ ମନୋରମତି ରସ ଭାବବିନୋଦମ୍ ।। ୮ ।
(ଏକାଦଶ ସର୍ଗ ସମାପ୍ତ)

[ ୨୩ ]

**ରାମକରୀ ରାଗ -- ଯତି ତାଳ**

କୁରୁ ଯଦୁନନ୍ଦନ ଚନ୍ଦନ ଶିଶିରତରେଣ କରେଣ ପୟୋଧରେ ।
ମୃଗମଦ ପତ୍ର କମତ୍ର ମନୋଭବ ମଙ୍ଗଳ କଳଶ ସହୋଦର ।।
ନିଜ ଗାଦ ସା ଯଦୁନନ୍ଦନେ କ୍ରୀଡ଼ତି ହୃଦୟାନନ୍ଦନେ ।। ଧ୍ରୁବ ।
ଅଳିକୁଳ ଗଞ୍ଜନ ସଞ୍ଜନକଂ ରତି ନାୟକ ଶାୟକ ମୋଚନେ ।
ତ୍ୱଦଧର ଚୁମ୍ବନ ଲମ୍ବିତ କଜ୍ଜଳ ମୁଜ୍ଜ୍ୱଳୟ ପ୍ରିୟ ଲୋଚନେ ।। ୨ ।
ନୟନ କୁରଙ୍ଗ ତରଙ୍ଗ ବିକାଶନ ନିରାସ କରେ ଶ୍ରୁତିମଣ୍ଡଳେ ।
ମନସିଜ ପାଶ ବିଳାସ ଧରେ ଶୁଭବେଶ ନିବେଶୟ କୁଣ୍ଡଳେ ।। ୩ ।
ଭ୍ରମରଚୟ ରଚୟନ୍ତ ମୁପରି ରୁଚିରଂ ସୁଚିରଂ ମମ ସମ୍ମୁଖେ ।
ଜିତକମଳେ ବିମଳେ ପରିକର୍ମି ପୁନର୍ମଜନ କମଲକଂ ମୁଖେ ।। ୪ ।
ମୃଗମଦ ରସ ବଳିତଂ ଲଳିତଂ କୁରୁ ତିଳକ ମଳିକ ରଜନୀ କରେ ।
ବିହିତ କଳଙ୍କକଳଂ କମଳାନନ ବିଶ୍ରମିତ ଶ୍ରମ ଶୀକରେ ।। ୫ ।

ମମ ରୁଚିରେ ଚିକୁରେ କୁରୁ ମାନଦମାନ ସଜ ଧ୍ୱଜ ଭ୍ରମରେ ।
ରଚୟ ପଲକେ ଲଲିତେ କୁସୁମାନି ଶିଖଣ୍ଡି ଶିଖଣ୍ଡକ ଡାମରେ ॥ ୬ ।

ସରସ ଘନେ ଜଘନେ ମମ ସମ୍ବର ଦାରଣ ବାରଣ କନ୍ଦରେ
ମଣିରସନା ବସନା ଭରଣାନି ଶୁଭସସ୍ଥ ବାସୟ ସୁନ୍ଦରେ ॥ ୭ ।

ଶ୍ରୀ ଜୟଦେବ ବଚସି ଜୟଦେ ହୃଦୟଂ ସଦୟଂ କୁରୁମଣ୍ଡନେ ।
ହରିଚରଣ ସ୍ମରଣାମୃତ କୃତ କଲିକଳୁଷ ଜ୍ୱର ଖଣ୍ଡନେ ॥ ୮ ।
(ଦ୍ୱାଦଶ ସର୍ଗ ସମାପ୍ତ)

"ଶ୍ରୀ ଭୋଜଦେବ ପ୍ରଭବସ୍ୟ ବାମାଦେବି ସୁତ ଶ୍ରୀଜୟଦେବସ୍ୟ ପରାଶରାଦି ପ୍ରିୟ ବନ୍ଧୁ କଣ୍ଠ ଶ୍ରୀ ଗୀତଗୋବିନ୍ଦ କବିତ୍ୱମସ୍ତୁ ।

ଇତି ଜୟଦେବ କୃତୌ ଗୀତଗୋବିନ୍ଦେ ମହାକାବ୍ୟେ ସୁପ୍ରୀତ ପୀତାମ୍ବରୋ ନାମ ଦ୍ୱାଦଶ ସର୍ଗଃ ।"



# ପରିଶିଷ୍ଟ—୬

ଶ୍ରୀ ଜଗନ୍ନାଥ ମନ୍ଦିର ଜୟବିଜୟ ଦ୍ୱାର ନିକଟରେ ଥିବା ମିଳପତ୍ର ମହାରାଜା ପ୍ରତାପରୁଦ୍ର ଦେବଙ୍କ ଓଡ଼ିଆ ଲିପି—

"ବୀର ଶ୍ରୀ ଗଜପତି ଗଉଡ଼େଶ୍ୱର ନବକୋଟି କର୍ଣ୍ଣାଟ କଲେବରଗେଶ୍ୱର ବୀରବର ଶ୍ରୀ ପ୍ରତାପରୁଦ୍ରଦେବ ମାହାରାଜଙ୍କର ସମସ୍ତ ୪ ଅଙ୍କ ପ୍ର ହ୍ମ କକଡା ସୁ ୧୦ ବୁଧବାର ଅବଧାରିତ ଅଢ଼ଂଗା (ଆଜ୍ଞା) ପ୍ରମାଣେ ବଡ଼ ଠାକୁରଙ୍କ ଗୀତଗୋବିନ୍ଦ ଠାକୁର ଭୋଗବେଳେ ଏ ନାଟ ହୋଇବ । ସଂଝ (ସନ୍ଧ୍ୟା) ଧୂପ ସରିଲଠାରୁ ବଡସିଙ୍ଗାର ପରଯନ୍ତେ ଏ ନାଟ ହୋଇବ । ବଡ଼ ଠାକୁରଙ୍କ ସମ୍ପରଦା (ସମ୍ପ୍ରଦାୟ) କପିଲେଶ୍ୱର ଠାକୁରଙ୍କ ବନ୍ଦା ନାଚଣୀମାନ ପୁରୁଣା ସମରଦା, ତେଲିଙ୍ଗି ସମ୍ପରଦା ଏମାନେ ସବହେଂ (ସମସ୍ତେ) ବଡଠାକୁରଙ୍କ ଗୀତଗୋବିନ୍ଦ ହୁଁ (ଠାରୁ) ଆନ ଗୀତ ନ ଶିଖିବେ । ଆନ ଗୀତ ନ ଗାଇବେ । ଆନ ନାଟ ହୋଇ ପରମେଶ୍ୱରଙ୍କ ଶ୍ରୀମୁରେ ନ ହବ ଏ ନାଟ ବିତରକେ (ବ୍ୟତିରେକ) ବଇଷ୍ଣମ (ବୈଷ୍ଣବ) ଗୃଣଜନ (ଗୁଣଜଣ) ଅଛନ୍ତି, ଏମାନେ ଗୀତ-ଗୋବିନ୍ଦ ଗୀତ ହିଁ ସେ ଗାଇବେ । ଏହାଙ୍କଠାରୁ ଅଶିକ୍ଷିତମାନେ ଏକସ୍ୱରରେ ଶୁଣି

ଗୀତଗୋବିନ୍ଦ ଗୀତହିଁ ସେ ଶିଖିବେ । ଆନ ଗୀତ ନ ଶିଖିବେ । ଏହା ପରୀକ୍ଷା, ଆନ ଗୀତ ନାଟ କରାଇଲେ ଜାଣି (ଜାଣି) ସେ ଜଗନ୍ନାଥଙ୍କ ଦ୍ରୋହ କରଇ ।" ※



# ପରିଶିଷ୍ଟ—୩

ଶ୍ରୀ ଲିଙ୍ଗରାଜ ମନ୍ଦିର (ଭୁବନେଶ୍ୱର) ରାଘବ ଦେବଙ୍କ ସମୟର ଶିଳାଲେଖ—

ପଂକ୍ତି

(୧) ସ୍ୱସ୍ତି ଶ୍ରୀରାଘବଦେବସ୍ୟ......

(୨) ସ୍ତୁ. ଦ. ୧୦ ବାରେ ବୃଦ୍ଧ (ଧେ) ଶ୍ରୀ କୀର୍ତ୍ତିବାସେସ୍ୱ (ଶ୍ୱ)ରସ୍ୟ ପ୍ରୀତୟେ ମେଡ଼ମ ଦେ(ବ୍ୟା)

(୩) ଯଦାଦ୍ୟାଦଣ୍ଡଣ୍ଡାକ୍ଷ (ଶ୍ୟ) ବର୍ତ୍ତିସ୍ୟା ମାତା ପିତରେ କୋମିନାୟକାନ୍ କୃ-

(୪) ତ୍ତିବାସେସ୍ୱ (ଶ୍ୱ)ରସ୍ୟ ପ୍ରୀତୟେ ଧୂପଂ ଦଦ୍ୟାତ୍ ୧୧ କର୍ମ୍ମପାଟକ ପ (ପ୍ର) ବ-

(୫) ର ସାଧୁ ପ୍ରଧାନ ଜୟଦେବ ସମବାୟ ଦେବଧର ଗ୍ରାମ ଦାସପୁର ସ୍ରେ(ଶ୍ରେ)ଠି

(୬) ହସ୍ତାନ୍ତ୍ ନୀତା (ତ୍ୱା) ବାହେଡ଼ା ଖଣ୍ଡକେ (କ୍ଷେ)ତ ସ୍ୱଚକ୍ କୀର୍ତ୍ତିବାସେ ସ୍ୱ (ଶ୍ୱ) ରସ୍ୟ ଧୀ (ଲ) (।।) (୧)

---

※ J. A. S. B., 1893, P. 96 ff.

(୧) O.H.R.J., Vol V No. 4, PP. 179-182 [illegible], Vol. III Pt. II P. 294.

---

ମୁଦ୍ରଣ : ସନ୍ତୋଷ ପ୍ରିଣ୍ଟର୍ସ, ପୁରୁଣା [illegible] ଭୁବନେଶ୍ୱର-୯ (୫୩-୫୪)